# ଉତ୍କଳ ପ୍ରସଙ୍ଗ

୭୬ ଭାଗ ୪ର୍ଥ ସଂଖ୍ୟା କାର୍ତ୍ତିକ-ମାର୍ଗଶିର ନଭେମ୍ବର - ୨୦୧୯



---


ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪-୨୫୩୦୨୧୧

ପ୍ରତିଖଣ୍ଡ : ଟ. ୫.୦୦

# ସୂଚୀ

ନଭେମ୍ବର – ୨୦୧୯



❖ ❖ ❖

# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି



ଲକ୍ଷ୍ମଣ ନାଏକ



ବିର୍ସା ମୁଣ୍ଡା



ଜୟୀ ରାଜଗୁରୁ



ପଣ୍ଡିତ ଜବାହରଲାଲ ନେହେରୁ

# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି



ହରେକୃଷ୍ଣ ମହତାବ







ନବକୃଷ୍ଣ ଚୌଧୁରୀ

# ଓଡ଼ିଶା ଉପରେ ଡାକଟିକଟ




ଉତ୍କଳମଣି ଗୋପବନ୍ଧୁ ଦାସ
(୧୮୭୭–୧୯୨୮)




ମଧୁସୂଦନ ଦାସ
(୧୮୪୮–୧୯୩୪)




ଫକୀରମୋହନ ସେନାପତି
(୧୮୪୩–୧୯୧୮)




କୃଷ୍ଣଚନ୍ଦ୍ର ଗଜପତି
(୧୮୯୨–୧୯୭୪)






















ବାଘା ଯତୀନ୍–(୧୮୭୯–୧୯୧୫)

ସୁଭାଷ ଚନ୍ଦ୍ର ବୋଷ–(୧୮୯୭–୧୯୯୭)




ବିର୍ସା ମୁଣ୍ଡା–(୧୮୭୫–୧୯୦୦)




ବିଜୁ ପଟ୍ଟନାୟକ –(୧୯୧୬–୧୯୯୭)




ବିଜୁ ପଟ୍ଟନାୟକ

# “ମୋର ସ୍ୱପ୍ନ ହେଉଛି ଓଡ଼ିଶାର ପ୍ରତ୍ୟେକ ଜନସାଧାରଣ ସୁଲଭ ତଥା ଗୁଣାତ୍ମକ ମାନର ସ୍ୱାସ୍ଥ୍ୟସେବା ପାଆନ୍ତୁ”

**ନବୀନ ପଟ୍ଟନାୟକ**
**ମୁଖ୍ୟମନ୍ତ୍ରୀ**

ଦୁଇ ଶହ ବର୍ଷ ତଳେ ସ୍ଥାପିତ ହୋଇଥିବା ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜ ଓ ହସ୍‌ପିଟାଲ ଦୀର୍ଘ ଦିନ ଧରି ଓଡ଼ିଶାବାସୀଙ୍କୁ ସ୍ୱାସ୍ଥ୍ୟ ସେବା ଯୋଗାଇ ଦେଇଆସିଛି ।

ଏଠାରୁ ଅନେକ ବିଶିଷ୍ଟ ଡାକ୍ତର ବାହାରିଛନ୍ତି, ଯେଉଁମାନେ କି କେବଳ ଓଡ଼ିଶା ନୁହେଁ, ସାରା ପୃଥିବୀରେ ଲୋକମାନଙ୍କୁ ଚିକିତ୍ସା ସେବା ଦେଇ ଆସୁଛନ୍ତି । ସେମାନେ ଆମ ରାଜ୍ୟର ଗୌରବ । ବର୍ତ୍ତମାନ ଆମର ଦାୟିତ୍ୱ ହେଉଛି ଏହି ଅନୁଷ୍ଠାନର ଗୁରୁତ୍ୱକୁ ଆହୁରି ବୃଦ୍ଧି କରି ଏହାକୁ ଏକ ବିଶ୍ୱସ୍ତରୀୟ ଚିକିତ୍ସା କେନ୍ଦ୍ରରେ ପରିଣତ କରିବା ।




ମୋର ସ୍ୱପ୍ନ ହେଉଛି ଓଡ଼ିଶାର ପ୍ରତ୍ୟେକ ଜନସାଧାରଣ ସୁଲଭ ତଥା ଗୁଣାତ୍ମକ ମାନର ସ୍ୱାସ୍ଥ୍ୟସେବା ପାଆନ୍ତୁ । ଏଥିପାଇଁ ରାଜ୍ୟ ସରକାର ସ୍ୱାସ୍ଥ୍ୟ କ୍ଷେତ୍ର ପ୍ରତି ଗୁରୁତ୍ୱ ଦେଇ ଏଥିରେ ଅଧିକ ସମ୍ବଳ ବିନିଯୋଗ କରୁଛନ୍ତି ।

ମାତ୍ର ୩ଟି ମେଡିକାଲ କଲେଜରୁ ଆଜି ଆମେ ଦଶଟିରୁ ଅଧିକ ମେଡିକାଲ କଲେଜ କରିବା ସ୍ତରରେ ପହଞ୍ଚି ପାରିଛୁ । ସୁଲଭ, ଗୁଣାତ୍ମକ ଚିକିତ୍ସା ସେବା ପ୍ରଦାନ କ୍ଷେତ୍ରରେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜ ଆମ ପରିକଳ୍ପନାର କେନ୍ଦ୍ରରେ ରହିଛି ।

- ଏସ୍‌ସିବି ଭେଷଜ ମହାବିଦ୍ୟାଳୟକୁ ଏମ୍‌ସ ପ୍ଲସ୍ ଅନୁଷ୍ଠାନ ଭାବରେ ଗଢିତୋଳିବାକୁ ମୁଖ୍ୟମନ୍ତ୍ରୀଙ୍କ ଘୋଷଣା ।
- ଶଯ୍ୟା ସଂଖ୍ୟା ୩୦୦୦ ହେବ ।
- ଏକ ହଜାର କୋଟିରୁ ଅଧିକ ଅର୍ଥ ଖର୍ଚ୍ଚ ହେବ ।

ଏଥିପାଇଁ ଆମେ ଏକ ଅତ୍ୟାଧୁନିକ ତିନି ହଜାର ଶଯ୍ୟା ବିଶିଷ୍ଟ ସମନ୍ୱିତ ହସ୍ପିଟାଲ ନିର୍ମାଣ କରିବୁ । ଏଥିରେ ସମସ୍ତ ପ୍ରକାର ଅତ୍ୟାଧୁନିକ ସୁବିଧା ରହିବ । ଦେଶର ଶ୍ରେଷ୍ଠ ଚିକିତ୍ସା ସେବା ଅନୁଷ୍ଠାନ ସହିତ ତୁଳନୀୟ ହେବା ପାଇଁ ଆମେ ସକ୍ଷମ ହେବା ଉଚିତ । ବାସ୍ତବରେ ଆମ ପରିବର୍ତ୍ତନର ଲକ୍ଷ୍ୟ ଏମ୍ସ ପ୍ଲସ୍ ହେବା ଉଚିତ ।

ହସ୍ପିଟାଲର ଉନ୍ନତି ସହିତ ଡାକ୍ତର ଓ ଛାତ୍ରମାନଙ୍କ ରହିବା ଓ ମନୋରଞ୍ଜନ ପାଇଁ ଆମେ ଏକ ଉତ୍ତମ ପରିବେଶ ମଧ୍ୟ ସୃଷ୍ଟି କରିବୁ । ଏହି ସୁଯୋଗ ଏପରି ହେବା ଉଚିତ ଯେପରି ଓଡ଼ିଶା ବାହାରେ ରହୁଥିବା ଚିକିତ୍ସକମାନେ ମଧ୍ୟ ଏଠାକୁ ଆସି ଲୋକଙ୍କ ସେବା କରିବାକୁ ପସନ୍ଦ କରିବେ ।

ଏହାଦ୍ୱାରା ଆମ ରାଜ୍ୟର ଜନସାଧାରଣଙ୍କୁ ବହୁତ କିଛି ଆର୍ଥିକ ଖର୍ଚ୍ଚ ବହନ କରିବାକୁ ହେବ । ପ୍ରାୟ ଏକ ହଜାର କୋଟିରୁ ଅଧିକ– ତେବେ ଏହାଦ୍ୱାରା ଏପରି ଏକ ପରିବର୍ତ୍ତନ ଆସିପାରିବ ଯେ ଓଡ଼ିଶାରୁ କୌଣସି ବ୍ୟକ୍ତି ନିଜ ଚିକିତ୍ସା ପାଇଁ ଓଡ଼ିଶା ବାହାରକୁ ଯିବା ଆବଶ୍ୟକ ହେବ ନାହିଁ ।

ରାଜ୍ୟ ଚିକିତ୍ସା କ୍ଷେତ୍ରର ଶ୍ରେଷ୍ଠ ବ୍ୟକ୍ତିମାନେ ସେମାନଙ୍କର ଯୌବନ ଏହି ମେଡିକାଲ କଲେଜ ପାଇଁ ସମର୍ପିତ କରିଛନ୍ତି । ମୁଁ ଭାବୁଛି ଯେ ସାରା ଦେଶରେ ଏସ୍‌ସିବିର ର୍‍ୟାଙ୍କ୍ ୧୪ ଅଛି । ମୁଁ ନିଶ୍ଚିତ ଯେ ଆପଣମାନଙ୍କର ତ୍ୟାଗ, ପରିଶ୍ରମ ଓ ସମର୍ପିତ ଭାବ ସହିତ ରାଜ୍ୟ ସରକାରଙ୍କ ସହଯୋଗରେ ଏହାକୁ ଆମେ ଦେଶର ଶ୍ରେଷ୍ଠ ୩ ଅନୁଷ୍ଠାନ ମଧ୍ୟରେ ରଖିପାରିବୁ ।

ଓଡ଼ିଶା ବିଭିନ୍ନ କ୍ଷେତ୍ରରେ ବିଶ୍ୱସ୍ତରୀୟ ମର୍ଯ୍ୟାଦା ହାସଲ କରିପାରିଛି । ବର୍ତ୍ତମାନ ସମୟ ଆସିଛି, ସାରା ବିଶ୍ୱ ଓଡ଼ିଶାକୁ ତା'ର ସୁଲଭ, ଗୁଣାତ୍ମକ ଚିକିତ୍ସା ସେବା ପାଇଁ ମାନ୍ୟତା ଦେବ ।



# ବୁଲ୍‌ବୁଲ୍ କ୍ଷୟକ୍ଷତି ସମୀକ୍ଷା ସହ ପ୍ୟାକେଜ୍ ଘୋଷଣା କଲେ ମୁଖ୍ୟମନ୍ତ୍ରୀ



ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଲୋକସେବା ଭବନରେ ବୁଲ୍‌ବୁଲ୍ କ୍ଷୟକ୍ଷତି ସମ୍ପର୍କରେ ସମୀକ୍ଷା କରି ନଭେମ୍ବର ୧୮ ତାରିଖ ସୁଦ୍ଧା କ୍ଷୟକ୍ଷତି ରିପୋର୍ଟ ସ୍ୱତନ୍ତ୍ର ରିଲିଫ୍ କମିଶନରଙ୍କୁ ପ୍ରଦାନ କରିବା ପାଇଁ ପ୍ରଭାବିତ ଜିଲ୍ଲାର ଜିଲ୍ଲାପାଳମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ଏହାସହ ନଭେମ୍ବର ୨୪ ତାରିଖ ସୁଦ୍ଧା ସହାୟତା ବଣ୍ଟନ କରିବା ପାଇଁ ମଧ୍ୟ ନିର୍ଦ୍ଦେଶ ଦେଇଛନ୍ତି ।

ଭିଡିଓ କନ୍‌ଫରେନ୍‌ସିଂ ଜରିଆରେ କ୍ଷତିଗ୍ରସ୍ତ ଜିଲ୍ଲାର ଜିଲ୍ଲାପାଳମାନଙ୍କ ସହ ଆଲୋଚନା ସମୟରେ କ୍ଷୟକ୍ଷତିର ଆକଳନ ଓ ସହାୟତା ବଣ୍ଟନ ପ୍ରକ୍ରିୟାରେ ସମ୍ପୂର୍ଣ୍ଣ ସ୍ୱଚ୍ଛତା ଅବଲମ୍ବନ କରାଯିବା ଉପରେ ମୁଖ୍ୟମନ୍ତ୍ରୀ ଗୁରୁତ୍ୱ ପ୍ରଦାନ କରିଥିଲେ । ଏ ସଂକ୍ରାନ୍ତୀୟ ସମସ୍ତ ବିବରଣୀ ଗ୍ରାମପଞ୍ଚାୟତ କାର୍ଯ୍ୟାଳୟରେ ସର୍ବସାଧାରଣଙ୍କ ଅବଗତି ନିମନ୍ତେ ପ୍ରଦର୍ଶନ କରିବା ଏବଂ ସହାୟତା ରାଶି କ୍ଷତିଗ୍ରସ୍ତଙ୍କ ଆକାଉଣ୍ଟକୁ ସିଧାସଳଖ ପ୍ରଦାନ କରିବା ସହ ଜିଲ୍ଲା ପ୍ରଶାସନ ୱେବ୍‌ସାଇଟ୍‌ରେ ଯେପରି ସମସ୍ତ ତଥ୍ୟ ଉପଲବ୍ଧ ହେବ ସେ ଦିଗରେ ପଦକ୍ଷେପ ନେବା ପାଇଁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଥିଲେ ।

- ୧୮ ସୁଦ୍ଧା କ୍ଷୟକ୍ଷତି ରିପୋର୍ଟ ।
- ୨୪ ସୁଦ୍ଧା ସହାୟତା ବଣ୍ଟନ ପାଇଁ ନିର୍ଦ୍ଦେଶ ।
- ମୁଖ୍ୟମନ୍ତ୍ରୀଙ୍କ ସହାୟତା ପ୍ୟାକେଜ ଘୋଷଣା ।

ସୂଚନାଯୋଗ୍ୟ ଯେ ବୁଲ୍‌ବୁଲ ବାତ୍ୟାରେ ଭଦ୍ରକ, ବାଲେଶ୍ୱର, କେନ୍ଦ୍ରାପଡା, ଜଗତସିଂହପୁର, ଯାଜପୁର ଏବଂ ମୟୂରଭଞ୍ଜ ସମେତ ୬ଟି ଜିଲ୍ଲାର ସରକାରୀ ଓ ଘରୋଇ ସମ୍ପତ୍ତିର ବ୍ୟାପକ କ୍ଷତି ଘଟିଛି । ଘର, ଫସଲର କ୍ଷତି ହେବା ସହିତ ଲୋକଙ୍କ ଜୀବିକା କ୍ଷତିଗ୍ରସ୍ତ ହୋଇଛି । ଅନେକ ସ୍ଥାନରେ ବିଦ୍ୟୁତ୍ ଭିତ୍ତିଭୂମି କ୍ଷତିଗ୍ରସ୍ତ ହୋଇଛି ।

ଆଗାମୀ ଦୁଇଦିନ ମଧ୍ୟରେ ଭିତ୍ତିଭୂମିର ପୁନରୁଦ୍ଧାର ସହିତ ବିଦ୍ୟୁତ୍ ସଂଯୋଗ ନ ଆସିବା ପର୍ଯ୍ୟନ୍ତ ଜେନେରେଟର ବ୍ୟବହାର କରି ଜଳଯୋଗାଣ ଚାଲୁ ରଖିବା ଏବଂ ଆବଶ୍ୟକସ୍ଥଳେ ପାଣି ଟ୍ୟାଙ୍କର ଯୋଗେ ପାଣି ଯୋଗାଇ ଦେବା ପାଇଁ

ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଛନ୍ତି । ବାତ୍ୟା ସମୟରେ ଅଗ୍ନିଶମ ଏବଂ ଓଡ୍ରାଫ ଟିମ୍‌ର ଉଦ୍ଧାର ଯୋଗାଯୋଗ ବ୍ୟବସ୍ଥାର ପୁନଃସ୍ଥାପନ କାର୍ଯ୍ୟର ମୁଖ୍ୟମନ୍ତ୍ରୀ ଉଚ୍ଚ ପ୍ରଶଂସା କରିଥିଲେ ।

ବୈଠକରେ ମୁଖ୍ୟମନ୍ତ୍ରୀ ବୁଲ୍‌ବୁଲ୍ କ୍ଷତିଗ୍ରସ୍ତଙ୍କ ପାଇଁ ଏକ ପ୍ୟାକେଜ୍ ମଧ୍ୟ ଅନୁମୋଦନ କରିଛନ୍ତି । ଏହି ପ୍ୟାକେଜ୍ ଅନୁଯାୟୀ–

୧) ଅଣ–ଜଳସେଚିତ ଜମି ପାଇଁ ୩୩ ପ୍ରତିଶତ ବା ତଦୂର୍ଦ୍ଧ୍ୱ ଫସଲ କ୍ଷତିରେ କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ହେକ୍ଟର ପିଚ୍ଛା ୬୮୦୦ ଟଙ୍କା ଇନ୍‌ପୁଟ ସବ୍‌ସିଡି, ଜଳସେଚିତ ଜମିରେ ଏହି ସହାୟତା ପରିମାଣ ହେକ୍ଟର ପିଛା ୧୩,୫୦୦ ଟଙ୍କା ଏବଂ ସବୁଦିନିଆ ଫସଲ ପାଇଁ ହେକ୍ଟର ପିଚ୍ଛା ୧୮,୦୦୦ ଟଙ୍କା ପ୍ରଦାନ କରାଯିବ ।

୨) କୌଣସି କ୍ଷେତ୍ରରେ ସବୁଦିନିଆ ଫସଲ ପାଇଁ ଇନ୍‌ପୁଟ ସବ୍‌ସିଡି ପରିମାଣ ୨୦୦୦ ଟଙ୍କାରୁ କମ୍ ଏବଂ ଅନ୍ୟାନ୍ୟ ଫସଲ କ୍ଷେତ୍ରରେ ୧୦୦୦ ଟଙ୍କା କମ୍ ହେବ ନାହିଁ ।

୩) ରବି ଫସଲ ୨୦୧୯–୨୦ ପାଇଁ କ୍ଷତିଗ୍ରସ୍ତ ଚାଷୀମାନଙ୍କୁ ଡାଲି ଓ ତୈଳ ଜାତୀୟ ଫସଲ ପାଇଁ ୫୦ ହଜାର ବିହନ ମିନି କିଟ୍ ପ୍ରଦାନ କରାଯିବ ।

୪) କ୍ଷତିଗ୍ରସ୍ତ ଜିଲ୍ଲାରେ ୪୫ ହଜାର ଏକର ଜମିରେ ଡେମୋନେଷ୍ଟ୍ରେସନ କାର୍ଯ୍ୟକ୍ରମ କରାଯିବ ।

୫) କ୍ଷତିଗ୍ରସ୍ତ ଚାଷୀମାନଙ୍କୁ ୫୦ ପ୍ରତିଶତ ରିହାତିରେ ୩୦୦୦ ସ୍ପ୍ରେୟର ପ୍ରଦାନ କରାଯିବ । ବ୍ୟାଟେରୀ ଚାଳିତ ସ୍ପ୍ରେୟର କ୍ଷେତ୍ରରେ ସର୍ବାଧିକ ରିହାତି ୩୮୦୦ ଟଙ୍କା ଏବଂ ହସ୍ତଚାଳିତ ସ୍ପ୍ରେୟର ପାଇଁ ସର୍ବାଧିକ ରିହାତି ୭୫୦ ଟଙ୍କା ।

୬) ରବି ୨୦୧୯–୨୦ ପାଇଁ ୧୦ ହଜାର ପରିବା ମିନି କିଟ୍ ପ୍ରଦାନ କରାଯିବ ।

୭) ପ୍ରତ୍ୟେକ ଚାଷୀଙ୍କୁ ୩୦ ୟୁନିଟ୍ ପର୍ଯ୍ୟନ୍ତ ପାନବରଜର ପୁନରୁଦ୍ଧାର ପାଇଁ ୧୫ ହଜାର ଟଙ୍କା ଦିଆଯିବ ।

୮) ୫୦ ୟୁନିଟ୍ ପର୍ଯ୍ୟନ୍ତ କ୍ଷତି ପାଇଁ ଛତୁ ଚାଷୀଙ୍କୁ ୪୦ ହଜାର ଟଙ୍କା ଦିଆଯିବ ।

୯) ରବି ପାଇଁ ତୁରନ୍ତ ଉନ୍ନତ ବିହନ ଓ ଅନ୍ୟ କୃଷିସାମଗ୍ରୀ ଦେବା ପାଇଁ ପଦକ୍ଷେପ ନିଆଯିବ ।

୧୦) ଫସଲ ବୀମା ଯୋଜନାର ସୁବିଧା ଚାଷୀଙ୍କୁ ଶୀଘ୍ର ଦେବା ପାଇଁ ଫସଲ କଟା ପରୀକ୍ଷଣ କରାଯାଇ ବୀମା ପରିମାଣ ଚୂଡାନ୍ତ କରାଯିବ ।

୧୧) ୩୩ ପ୍ରତିଶତ ବା ତଦୂର୍ଦ୍ଧ୍ୱ କ୍ଷତି ହୋଇଥିବା ଚାଷୀଙ୍କୁ ରବି ୨୦୧୯ ପାଇଁ ଦିଆଯାଇଥିବା ସ୍ୱଳ୍ପମିଆଦୀ ଋଣକୁ ମଧ୍ୟମ ମିଆଦୀ ଋଣରେ ପରିଣତ କରାଯିବ ।

୧୨) କ୍ଷୀର ଦେଉଥିବା ଗାଈ, ମଇଁଷି ପାଇଁ ସହାୟତା ପ୍ରତି ପ୍ରାଣୀ ପାଇଁ ୩୦ ହଜାର ଟଙ୍କା ଏବଂ କ୍ଷୀର ଦେଉନଥିବା ପ୍ରାଣୀ ପାଇଁ ୨୫ ହଜାର ଟଙ୍କା ଲେଖାଏଁ (୩ଟି ପ୍ରାଣୀ), ବାଛୁରୀ ପାଇଁ ୧୬ ହଜାର (୬ଟା ପ୍ରାଣୀ ପର୍ଯ୍ୟନ୍ତ), ଛେଳି–ମେଣ୍ଢା ପାଇଁ ୩୦୦୦ ଟଙ୍କା (୩୦ଟି ପ୍ରାଣୀ ପର୍ଯ୍ୟନ୍ତ), କୁକୁଡା ପାଇଁ ମୁଣ୍ଡପିଛା ୫୦ ଟଙ୍କା (ସର୍ବୋଚ୍ଚ ୫ ହଜାର ଟଙ୍କା) ଦିଆଯିବ ।

୧୩) ଆଂଶିକ କ୍ଷତି ହୋଇଥିବା ଡଙ୍ଗା ପାଇଁ ୪୧୦୦ ଟଙ୍କା, ଆଶିଂକ କ୍ଷତି ହୋଇଥିବା ଜାଲ ପାଇଁ ୨୧୦୦ ଟଙ୍କା, ସମ୍ପୂର୍ଣ୍ଣ କ୍ଷତିଗ୍ରସ୍ତ ଡଙ୍ଗା ପାଇଁ ୯୬୦୦ ଟଙ୍କା ଏବଂ ସମ୍ପୂର୍ଣ୍ଣ ନଷ୍ଟ ହୋଇଥିବା ଜାଲ ପାଇଁ ୨୬୦୦ ଟଙ୍କା ସହାୟତା ଦିଆଯିବ ।

୧୪) ମାଛ ଚାଷୀଙ୍କ ପାଇଁ ହେକ୍ଟର ପିଚ୍ଛା ୧୨,୨୦୦ ଟଙ୍କା ଏବଂ ଇନ୍‌ପୁଟ ସବ୍‌ସିଡି ଭାବରେ ହେକ୍ଟର ପିଚ୍ଛା ୮୨୦୦ ଟଙ୍କା ସହାୟତା ପ୍ରଦାନ କରାଯିବ ବୋଲି ମୁଖ୍ୟମନ୍ତ୍ରୀ ଘୋଷଣା କରିଥିଲେ ।






# ମୋ ସରକାର

ଜନସାଧାରଣ ହେଉଛନ୍ତି ଗଣତନ୍ତ୍ରର ଆତ୍ମା। ଗଣତନ୍ତ୍ରରେ ପ୍ରତିଟି ଅନୁଷ୍ଠାନ ଲୋକଙ୍କ କଲ୍ୟାଣ ପାଇଁ, ଲୋକଙ୍କ ପଇସାରେ, ଲୋକଙ୍କ ସେବା ଓ ସଶକ୍ତିକରଣ ପାଇଁ ସୃଷ୍ଟି କରାଯାଇଛି।

ପୋଲିସ ଥାନା/ଡାକ୍ତରଖାନା/ ସରକାରୀ କାର୍ଯ୍ୟାଳୟ ଲୋକଙ୍କ ସେବା ପାଇଁ ଅଛି। ଲୋକମାନେ ହିଁ ଏହାର ପ୍ରକୃତ ମାଲିକ।

ଏହି ସବୁ କାର୍ଯ୍ୟାଳୟକୁ ଆସୁଥିବା ପ୍ରତ୍ୟେକ ବ୍ୟକ୍ତିଙ୍କୁ ଉତ୍ତମ ବ୍ୟବହାର ପ୍ରଦର୍ଶନ କରାଯିବା ସହ ବୃତ୍ତିଗତ ଏବଂ ସେବା ମନୋଭାବ ନେଇ ସେମାନଙ୍କ ସମସ୍ୟା ସମାଧାନ ପାଇଁ ପଦକ୍ଷେପ ଗ୍ରହଣ କରାଯିବ।

ଲୋକମାନେ ହେଉଛନ୍ତି ପ୍ରକୃତ ସରକାର ଏବଂ ଏଠାରେ କାମ କରୁଥିବା ସମସ୍ତ କର୍ମଚାରୀ ଲୋକଙ୍କ ପଇସାରେ ହିଁ ବେତନ ପାଉଛନ୍ତି।

ନବୀନ ପଟ୍ଟନାୟକ

 CMO.Odisha  @CMO_Odisha

# ନବ୍ୟ ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ଜନନେତା ନବୀନ ପଟ୍ଟନାୟକ

ଡକ୍ଟର ଲେନିନ୍ ମହାନ୍ତି

ଅନନ୍ୟ ପ୍ରତିଭାଧାରୀ ଜଣେ ରାଷ୍ଟ୍ରନେତା, ଦୃଢ଼ ନିଷ୍ପତ୍ତି ନେଇପାରୁଥିବା ଜନନେତା ତଥା ସଭିଙ୍କ ନିମନ୍ତେ ପ୍ରେରଣାର ଉତ୍ସ ନବୀନ ପଟ୍ଟନାୟକଙ୍କ ଭୂମିକା, ଓଡିଶାରେ ପରିବର୍ତ୍ତନର ଏକ ନୂତନ ଯୁଗ ଆରମ୍ଭ କରିପାରିଛି । ତାଙ୍କ ଦୂରଦୃଷ୍ଟିସଂପନ୍ନ ନେତୃତ୍ୱ ଓଡିଶାକୁ ନିରବଚ୍ଛିନ୍ନ ପ୍ରଗତି ପଥରେ ଆଗେଇ ନେଉଛି ଏବଂ ପ୍ରତ୍ୟେକ କ୍ଷେତ୍ରରେ ଗୌରବର ନୂତନ ଶିଖର ଛୁଉଁଛି ।

> "ଓଡିଶାର ସାଢେ ଚାରି କୋଟି ଜନସାଧାରଣ ମୋର ପରିବାର । ଶେଷ ନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ମୁଁ ତାଙ୍କର ସେବା କରିଚାଲିବି ।"
>
> – ନବୀନ ପଟ୍ଟନାୟକ



ଓଡିଶାର ସର୍ବାଧିକ ସଫଳ ତଥା ଜନପ୍ରିୟ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ନିଜର ସ୍ୱଚ୍ଛ ଭାବମୂର୍ତ୍ତି, ଦୁଇ ଦଶନ୍ଧି ଧରି ଦୁର୍ନୀତିମୁକ୍ତ ତଥା ସ୍ୱଚ୍ଛ ପ୍ରଶାସନ ନିମନ୍ତେ କୋଟି କୋଟି ଜନତାଙ୍କ ଦ୍ୱାରା ଆଦୃତ ହୋଇପାରିଛନ୍ତି । ଜନସାଧାରଣଙ୍କ ହିତ ସାଧନ ନିମନ୍ତେ ତାଙ୍କର ନିରୋଳା ପ୍ରତିଶ୍ରୁତି ମାଧ୍ୟମରେ ସେ ଲୋକଙ୍କର ମନ ଓ ହୃଦୟ ଜିଣି ପାରିଛନ୍ତି ଏବଂ ଜନତା ଜନାର୍ଦ୍ଦନଙ୍କଠାରୁ ଅତୁଳନୀୟ ସମର୍ଥନ ତଥା ସ୍ନେହ ପାଇପାରିଛନ୍ତି ।

ସାମାଜିକ-ଅର୍ଥନୈତିକ ବିକାଶର ଜଣେ ଦୃଢ ପ୍ରବର୍ତ୍ତକ ଭାବେ ତାଙ୍କର ଜନହିତୈଷୀ ତଥା କଲ୍ୟାଣକାରୀ ଯୋଜନାଗୁଡିକ ଓଡିଶାକୁ ଦେଶର ଅନ୍ୟତମ ଦ୍ରୁତ ବିକାଶଶୀଳ ରାଜ୍ୟ ରୂପେ ଗଢି ତୋଳିଛି ।

ପ୍ରାୟ ଦୁଇ ଦଶନ୍ଧି ଧରି ରାଜ୍ୟର ଶାସନଭାର ସମ୍ଭାଳି ଥିବା ନବୀନ ପଟ୍ଟନାୟକ ସାଧାରଣ ଜୀବନରେ ବେଶ୍ ନିରାଡମ୍ବର ଜୀବନ ବିତାଇଥାନ୍ତି ଏବଂ ଧଳା କୁର୍ତ୍ତା ପାଇଜାମା ସହ ହଳେ ଚପଲ ପିନ୍ଧି ସଂଯମୀ ଜୀବନ ଜୀଇଁଥାନ୍ତି । ତାଙ୍କର ଜୀବନୀରୁ ନୀରବ ସାଧନା, ଭରପୂର ଆତ୍ମବିଶ୍ୱାସ ଓ ଆତ୍ମଶକ୍ତିର ଅନୁପମ ଆଭାସ ମିଳିଥାଏ । ଲଗାତର ନିର୍ବାଚନୀ ସଫଳତା ତାଙ୍କୁ ଅଧିକ ନମ୍ର ଓ ମିତଭାଷୀ କରିଛି ମାତ୍ର ।

## ଓଡ଼ିଶା ରାଜନୀତିରେ ଏକ ନୂତନ ଯୁଗର ଅୟମାରମ୍ଭ




କ୍ରମବର୍ଦ୍ଧିଷ୍ଣୁ ରାଜନୈତିକ ଅସ୍ଥିରତା ଓ ବ୍ୟାପକ ଦୁର୍ନୀତି ସହ ୧୯୯୫ରୁ ୨୦୦୦ ମସିହା ମଧ୍ୟରେ ଓଡିଶା ଏହାର ରାଜନୈତିକ ଇତିହାସରେ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲା । ପାଞ୍ଚ ବର୍ଷରୁ କମ୍ ସମୟ ମଧ୍ୟରେ ୩ ଜଣ ମୁଖ୍ୟମନ୍ତ୍ରୀ ରାଜ୍ୟକୁ ଶାସନ କରିଥିଲେ । ପରିସ୍ଥିତି ଆହୁରି ବିଗିଡି ଯାଇଥିଲା ଯେତେବେଳେ ୧୯୯୯ ମସିହାରେ ଓଡିଶାରେ ଭୟଙ୍କର ମହାବାତ୍ୟା ସଂଘଟିତ ହୋଇଥିଲା । ଏହି ବାତ୍ୟା ରାଜ୍ୟର ଅର୍ଥନୀତିକୁ ଏକ ରକମ ଧ୍ୱଂସ କରିଦେଇଥିଲା ଓ ଲୋକମାନଙ୍କୁ ଅସହାୟ କରିଦେଇଥିଲା । ଏକ ଦୃଢ ରାଜନୈତିକ ନେତୃତ୍ୱର ଅଭାବ ଯୋଗୁଁ ଏହି ପରିସ୍ଥିତି ନିୟନ୍ତ୍ରଣ ବାହାରକୁ ଚାଲିଯାଇଥିଲା । ଏପରି ସନ୍ଧିକ୍ଷଣରେ, ରାଜ୍ୟର ଭାଗ୍ୟ ବଦଳାଇବାକୁ ବିଜୁ ପଟ୍ଟନାୟକଙ୍କ ପରିବାରର ଜଣେ ସଦସ୍ୟ ଆଗକୁ ଆସିଥିଲେ ଏବଂ ଏହି ନେତା ହେଉଛନ୍ତି ନବୀନ ପଟ୍ଟନାୟକ ।

''କୌଣସି ସୁବିଧା ସୁଯୋଗ ନୁହେଁ, ମୁଁ ମୋ' ବାପାଙ୍କର ଦାୟବଦ୍ଧତାକୁ ଉତ୍ତରାଧିକାରୀ ସୂତ୍ରରେ ଗ୍ରହଣ କରିଥିଲି । ପରିବାରର ସଦସ୍ୟମାନଙ୍କ ମଧ୍ୟରୁ ଜଣକୁ ପିତାଙ୍କର ସାମାଜିକ ଦାୟିତ୍ୱ ରୂପକ ଆଦର୍ଶକୁ ବଜାୟ ରଖିବାର ଥିଲା ।'' କିମ୍ବଦନ୍ତୀ ପୁରୁଷ ପିତା ବିଜୁ ପଟ୍ଟନାୟକଙ୍କ ମୃତ୍ୟୁ ପରେ ଓଡିଶା ରାଜନୀତିରେ ପାଦ ଥାପିବାକୁ ଯିବାବେଳେ ନବୀନ ପଟ୍ଟନାୟକ ଏହା



କହିଥିଲେ ଏବଂ ୨୦ ବର୍ଷ ପରେ, ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କର ଦର୍ଶନ ଏବଂ ସ୍ୱପ୍ନ ସ୍ପଷ୍ଟ ଭାବେ ପ୍ରତିଭାତ ହୋଇଥିଲା ତୃଣମୂଳ ସ୍ତରରେ ।

ନବୀନଙ୍କର ରାଜନୀତିରେ ପ୍ରବେଶ ଦ୍ୱାରା ୧୯୯୭ ମସିହାରେ ମହାନ୍ କିମ୍ବଦନ୍ତୀ ପୁରୁଷ ବିଜୁ ପଟ୍ଟନାୟକଙ୍କ ବିୟୋଗରେ ସୃଷ୍ଟି ହୋଇଥିବା ରାଜନୈତିକ ଶୂନ୍ୟତାର ଅବସାନ ଘଟିଥିଲା । ଜଣେ ନୂଆ ନେତା ଉପରେ ଲୋକଙ୍କର ଆଶା ଅତି ଉଚ୍ଚରେ ଥିଲା ଏବଂ ସେତେବେଳେ ନବୀନ ଥିଲେ ରାଜନୀତିରେ ନୂଆ । ସେ ଆହ୍ୱାନର ସମ୍ମୁଖୀନ ହେବାକୁ ଦୃଢ ଇଚ୍ଛାଶକ୍ତି ପ୍ରଦର୍ଶନ କରିଥିଲେ ।

କେବଳ ଗୋଟିଏ ଆଞ୍ଚଳିକ ଦଳ ଲୋକଙ୍କର ସ୍ୱାର୍ଥରକ୍ଷା କରିପାରିବ ଓ ରାଜ୍ୟକୁ ବିକାଶ ଯାତ୍ରାରେ ଆଗେଇ ନେଇପାରିବ ବୋଲି ଅନୁଭବ କରି ନବୀନ ପଟ୍ଟନାୟକ ୧୯୯୭ ମସିହାରେ ବିଜୁ ଜନତା ଦଳ (ବିଜେଡି) ଗଠନ କରିଥିଲେ । ଦଳର ଏପରି ନାମକରଣ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କର ଆଦର୍ଶ ଓ ଆଭିମୁଖ୍ୟକୁ ଇଙ୍ଗିତ କରିଥାଏ । ବିଜେଡି ଦଳର ସର୍ବସମ୍ମତ ନେତା ଭାବେ ସେ ୨୦୦୦ ମସିହାରେ କ୍ଷମତାକୁ ଆସିଲେ ଓ ସେବେଠାରୁ ରାଜ୍ୟରେ ଶାସନ ଡୋରି ସମ୍ଭାଳି ଆସୁଛନ୍ତି । ତାଙ୍କର ନେତୃତ୍ୱ ଅଧୀନରେ ପରିଚାଳିତ ଦଳ ପ୍ରତିଦ୍ୱନ୍ଦ୍ୱୀ ଶିବିରରୁ ଅନେକ ନେତା ଓ କର୍ମୀଙ୍କୁ ଆକର୍ଷିତ କରିଚାଲିଛି ।

## ଯୋଜନାର ମୂଳରେ ଜନସାଧାରଣ

ଯେଉଁ ଗୋଟିଏ ବିଷୟ ନବୀନ ପଟ୍ଟନାୟକଙ୍କ ଜନପ୍ରିୟତାର ପ୍ରମୁଖ କାରଣ ତାହା ହେଉଛି, ସମସ୍ତ ସରକାରୀ କ୍ଷେତ୍ରରେ ତାଙ୍କର ଦୃଷ୍ଟିଭଙ୍ଗୀ–'ଯୋଜନାର ମୂଳରେ ଜନସାଧାରଣ' । ଏପରି ଦୃଷ୍ଟିଭଙ୍ଗୀ ତାଙ୍କୁ କେବଳ ଭାରତରେ ସର୍ବାଧିକ ସମୟ ଶାସନ ଦାୟିତ୍ୱରେ ଥିବା ମୁଖ୍ୟମନ୍ତ୍ରୀମାନଙ୍କ ମଧ୍ୟରୁ ଅନ୍ୟତମ ଭାବେ ପ୍ରତିଷ୍ଠିତ କରିନାହିଁ, ତା' ସହିତ ଦେଶର ଆଦର୍ଶ ମୁଖ୍ୟମନ୍ତ୍ରୀ ଭାବେ ଗଣା ହେବାରେ ଅନୁକୂଳ ସାବ୍ୟସ୍ତ ହୋଇଛି ।




ନବୀନ ପଟ୍ଟନାୟକଙ୍କ ଚିନ୍ତାଧାରାରେ, ''ଯଦି ତୁମେ ତୁମ ଲୋକମାନଙ୍କୁ ଭଲ ପାଅ, ତୁମେ ଧାରଣ କରିଥିବା ପଦବୀଟି ଗୋଟିଏ ପଦବୀ ମାତ୍ର ନ ମଣି ଏହାକୁ ଲୋକଙ୍କର ସେବା କରିବାର ମାଧ୍ୟମ ଭାବେ ଗ୍ରହଣ କର । କ୍ଷମତାକୁ କେବଳ କ୍ଷମତା ଦୃଷ୍ଟିରେ ନ ଦେଖି ଜନସାଧାରଣଙ୍କ ଜୀବନରେ ପରିବର୍ତ୍ତନ ଆଣିବାର ମାଧ୍ୟମ ରୂପେ ବିଚାର କର । ରାଜନୀତିର କୁପୋଷଣରେ ଅର୍ଜିତ କ୍ଷମତା, ସଂପତ୍ତି ଏବଂ ପ୍ରତିଷ୍ଠା ଉଭେଇ ଯାଏ– ଏହା ଜନସାଧାରଣଙ୍କୁ ଜଣଙ୍କ ଭଲ ପାଇବା ଆଗରେ କିଛି ନୁହେଁ । ଯଦି ତୁମେ ତୁମ ଲୋକଙ୍କୁ ଭଲ ପାଉଛ, ତୁମେ ନିର୍ବାଚନ ପାଇଁ ରଣାଙ୍ଗନରେ ଅବତୀର୍ଣ୍ଣ ହୁଅ ନାହିଁ । ତୁମେ






ପରିବର୍ତ୍ତନ ନିମନ୍ତେ ସଂଗ୍ରାମ କର । ଯଦି ତୁମେ ତୁମର ଲୋକଙ୍କୁ ଭଲ ପାଅ ..... ତେବେ ପ୍ରତିଟି ଅଭିଳାଷରେ, ପ୍ରତିଟି ପଦକ୍ଷେପରେ, ପ୍ରତିଟି କାର୍ଯ୍ୟରେ ଓ ପ୍ରତିଟି ନିଃଶ୍ୱାସ ପ୍ରଶ୍ୱାସରେ.....ତୁମେ ସେମାନଙ୍କ ପାଇଁ କାମ କରିଚାଲିଥିବ ।''

ନବୀନ ପଟ୍ଟନାୟକ ନିଜର ମନୋବୃତ୍ତି, ଉଦ୍ୟମ ଏବଂ ପଦକ୍ଷେପରେ ଜନସାଧାରଣଙ୍କୁ ଏହାର କେନ୍ଦ୍ରରେ ରଖି ସାଧାରଣ ଜୀବନରେ ସମସ୍ତ ଅଡୁଆ ପରିସ୍ଥିତିକୁ ଦୂର କରିବାରେ ସମର୍ଥ ହୋଇଛନ୍ତି ।

୧୯୯୯ ମସିହାର ଧ୍ୱଂସକାରୀ ମହାବାତ୍ୟା ଓ ତଦ୍‌ଜନିତ ଉତ୍ପନ୍ନ ପରିସ୍ଥିତିକୁ ସମ୍ଭାଳିବାରେ ତତ୍‌କାଳୀନ ସରକାରର ସଂପୂର୍ଣ୍ଣ ବିଫଳତା ପରିପ୍ରେକ୍ଷୀରେ ଯେତେବେଳେ ସେ ପ୍ରଥମ ଥର ପାଇଁ ୨୦୦୦ ମସିହାରେ ମୁଖ୍ୟମନ୍ତ୍ରୀ ଭାବେ ଅଭିଷିକ୍ତ ହୋଇଥିଲେ ସେତେବେଳେ ମହାବାତ୍ୟା ପ୍ରପୀଡ଼ିତ ଗରିବ ଜନସାଧାରଣ ତଥା ବଂଚିତ ଶ୍ରେଣୀ ମୁଖରେ ହସ ଫେରାଇ ଆଣିବା ତାଙ୍କ ନିମନ୍ତେ ଏକ ପ୍ରମୁଖ ଆହ୍ୱାନ ଥିଲା । ନବୀନ ପଟ୍ଟନାୟକଙ୍କ ସରକାର ହୃଦୟଙ୍ଗମ କରିଥିଲେ ଯେ, ଗରିବ ଜନସାଧାରଣଙ୍କୁ ତାଙ୍କର ଦାରିଦ୍ର୍ୟର ପରିସୀମା ମଧ୍ୟରୁ ବାହାର କରି ନ ଆଣିଲେ ଓଡ଼ିଶାର ବିକାଶ ସମ୍ଭବ ନୁହେଁ । ସରକାର ଏହି ବର୍ଗର ଜନସାଧାରଣଙ୍କ ନିମନ୍ତେ ଅନେକଗୁଡ଼ିଏ ଅଭିବୃଦ୍ଧିକାରକ ଯୋଜନା ପ୍ରସ୍ତୁତ କଲେ । ଏତଦ୍ ବ୍ୟତୀତ, ରାସ୍ତା, ପୋଲ ଏବଂ ଅନ୍ୟାନ୍ୟ ଆନୁଷଙ୍ଗିକ ପ୍ରକଳ୍ପର ନିର୍ମାଣ ସହ ରାଜ୍ୟର ଭିତ୍ତିଭୂମି ବିକାଶ ନିମନ୍ତେ ସେ ଅକ୍ଳାନ୍ତ ପରିଶ୍ରମ




କରିଚାଲିଲେ । ଦାରିଦ୍ର୍ୟ ଦୂରୀକରଣ ଉପରେ ଧ୍ୟାନ କେନ୍ଦ୍ରୀଭୂତ କରିବା ସହ ଜନମଙ୍ଗଳ ଆଧାରିତ ଯୋଜନାଗୁଡ଼ିକର କାର୍ଯ୍ୟକାରିତା ନିମନ୍ତେ ସେ ବୃହତ୍ ପଦକ୍ଷେପ ଗ୍ରହଣ କଲେ । ସେ ଗରିବ ଲୋକଙ୍କର ଖାଦ୍ୟ ନିରାପତ୍ତା ସୁନିଶ୍ଚିତ କରିବାକୁ ତଥା ଅନାହାର ମୃତ୍ୟୁ ରୋକିବାକୁ '୧ ଟଙ୍କାରେ କିଲେ ଚାଉଳ' ଯୋଜନା ମଧ୍ୟ କାର୍ଯ୍ୟକାରୀ କଲେ ।

**''ମହିଳାମାନଙ୍କ ସଶକ୍ତିକରଣ ବିନା କୌଣସି ପରିବାର, ସମାଜ, ରାଜ୍ୟ ବା ଦେଶ ଆଗକୁ ବଢ଼ିବା ସମ୍ଭବ ନୁହେଁ ।''**

ତାଙ୍କ କିମ୍ବଦନ୍ତୀ ପିତାଙ୍କ ପଦାଙ୍କ ଅନୁସରଣ କରି ନବୀନ ପଟ୍ଟନାୟକ ଓଡ଼ିଶାର ସାମାଜିକ-ଅର୍ଥନୈତିକ ତଥା ମହିଳାମାନଙ୍କ ରାଜନୈତିକ ସଶକ୍ତିକରଣ ନିମନ୍ତେ ଅବିଶ୍ରାନ୍ତ ଭାବେ କାର୍ଯ୍ୟ କରିଚାଲିଛନ୍ତି । ମିଶନ ଶକ୍ତି,




ମମତା ଯୋଜନା, ବାଳିକା ଶିକ୍ଷା, ୧ ଟଙ୍କା ସୁଧରେ ଋଣ, ୫ ଲକ୍ଷ ଜନଜାତି ବର୍ଗର ବାଳିକାମାନଙ୍କ ପାଇଁ ହଷ୍ଟେଲ୍ ସୁବିଧା, ରାଜ୍ୟର ନିଜସ୍ୱ ସ୍ୱାସ୍ଥ୍ୟ ସୁରକ୍ଷା ବୀମା ଅଧୀନରେ ମହିଳାମାନଙ୍କ ନିମନ୍ତେ ୭ ଲକ୍ଷ ଟଙ୍କାର ଚିକିତ୍ସା ସୁବିଧା ଓ ମହିଳାମାନଙ୍କୁ ଭୂମି ଅଧିକାର ପ୍ରଦାନ ପରି ରାଜ୍ୟ ସରକାରଙ୍କ ଯୁଗାନ୍ତକାରୀ ପଦକ୍ଷେପ ଓଡିଶାରେ ଲକ୍ଷ ଲକ୍ଷ ମହିଳାମାନଙ୍କ ସାମାଜିକ-ଅର୍ଥନୈତିକ ଅବସ୍ଥାରେ ଉନ୍ନତି ଆଣିବାରେ ସହାୟକ ହୋଇପାରିଛି । ଏହା ସହିତ, ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାରେ ମହିଳାମାନଙ୍କ ନିମନ୍ତେ ୫୦ ପ୍ରତିଶତ ସଂରକ୍ଷଣ ଏବଂ ମହିଳା ଏମ୍‌ପି ପ୍ରାର୍ଥୀ ନିମନ୍ତେ ଦଳୀୟ ଟିକେଟ୍‌ରେ ୩୩ ପ୍ରତିଶତ ସଂରକ୍ଷଣ ପରି କେତେକ ପଦକ୍ଷେପ, ମହିଳା ସଶକ୍ତିକରଣ ଇତିହାସରେ କେବଳ ଓଡିଶାରେ ନୁହେଁ ସମଗ୍ର ଭାରତବର୍ଷରେ ଉଦାହରଣ ଯୋଗ୍ୟ ଅଟେ ।

## ଆଖିଦୃଶିଆ ଅର୍ଥନୈତିକ ଅଭିବୃଦ୍ଧି

ଓଡିଶାକୁ ଏକ ସଶକ୍ତ ରାଜ୍ୟରେ ପରିବର୍ତ୍ତିତ କରିବାର ଗୁରୁଦାୟିତ୍ୱ ମୁଣ୍ଡେଇ ଥିବା ନବୀନ ପଟ୍ଟନାୟକ ନେତୃତ୍ୱ ଗ୍ରହଣ କରିବା ପରେ ଏକ ସ୍ୱଚ୍ଛ ଏବଂ ଦୁର୍ନୀତିମୁକ୍ତ ସରକାର ଗଠନ ଦିଗରେ ପ୍ରାଥମିକତା ଦେଇଥିଲେ । ତା'ପର କେତେ ବର୍ଷ ବ୍ୟାପକ ଶିଳ୍ପାୟନ ଦ୍ୱାରା ରାଜ୍ୟର ଅର୍ଥନୈତିକ ଅଭିବୃଦ୍ଧି ନିମନ୍ତେ କାର୍ଯ୍ୟ କରିଥିଲେ । ଏହା ସହିତ ରାଜ୍ୟରୁ ଦାରିଦ୍ର୍ୟ ଦୂରୀକରଣ ନିମନ୍ତେ ସାଧାରଣ ଜନତାଙ୍କୁ ରିହାତି ମୂଲ୍ୟରେ ଚାଉଳ ଯୋଗାଣ ପରି କେତେକ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ ।

ରାଜ୍ୟର ଅର୍ଥନୈତିକ ଅଭିବୃଦ୍ଧି ଓଡିଶାର ଅର୍ଥନୀତିରେ ସୁଧାର ଆଣିବାରେ ସହାୟକ ହେଲା ଏବଂ ରାଜ୍ୟ ଦେବାଳିଆ ହେବାର ଅପବାଦରୁ ରକ୍ଷା ପାଇଗଲା । ଖାଦ୍ୟଶସ୍ୟର କିଲୋ ପ୍ରତି ଦର ୨ ଟଙ୍କାରୁ ୧ ଟଙ୍କାକୁ ହ୍ରାସ ପରେ ଦାରିଦ୍ର୍ୟ ଓ ଅନାହାର ମୃତ୍ୟୁ ପରି ସମସ୍ୟା ବ୍ୟାପକ ଭାବେ ନିୟନ୍ତ୍ରଣ ହୋଇପାରିଲା । ଏପରି କାର୍ଯ୍ୟକ୍ରମ ଦ୍ୱାରା ରାଜ୍ୟରେ ଭିତ୍ତିଭୂମି ବିକାଶରେ ଦ୍ରୁତ ଅଭିବୃଦ୍ଧି ପରିଲକ୍ଷିତ ହେଲା ।

ଯେଉଁ ଓଡିଶା ଦିନେ କ୍ଷୁଧା, ଦାରିଦ୍ର୍ୟ ଓ ଅନାହାର ମୃତ୍ୟୁ ପାଇଁ ଅପଯଶ ବହନ କରୁଥିଲା, ବର୍ତ୍ତମାନ ଏହା ଭାରତରେ ଦ୍ରୁତ ଅଭିବୃଦ୍ଧି ହାସଲ କରୁଥିବା ରାଜ୍ୟମାନଙ୍କ ମଧ୍ୟରେ ଅନ୍ୟତମ । ଏହାର ଅର୍ଥନୈତିକ ଅଭିବୃଦ୍ଧି ହାର ଜାତୀୟ ହାରଠାରୁ ଯଥେଷ୍ଟ ଅଧିକ । ନବୀନ ପଟ୍ଟନାୟକଙ୍କ ଶାସନକାଳ ମଧ୍ୟରେ ପ୍ରାୟ ୮୦ ଲକ୍ଷ ଲୋକଙ୍କୁ ଦାରିଦ୍ର୍ୟ ସୀମାରେଖା ଉପରକୁ ଉଠାଇବା ଦ୍ୱାରା ରାଜ୍ୟ ସର୍ବବୃହତ୍ ଦାରିଦ୍ର୍ୟ ହାର ହ୍ରାସର ରେକର୍ଡ କରିପାରିଛି । ବିଗତ ଦଶନ୍ଧିରେ କୃଷକମାନଙ୍କ ରୋଜଗାର ଦ୍ୱିଗୁଣିତ କରିବାରେ ଦେଶରେ ଓଡିଶା ହେଉଛି ଏକମାତ୍ର ରାଜ୍ୟ । ଏକଦା ଚାଉଳ ନିଅଣ୍ଟିଆ ପରିସ୍ଥିତିର ସମ୍ମୁଖୀନ ହେଉଥିବା ରାଜ୍ୟ ଓଡିଶା, ଆଜି ଦେଶର ସର୍ବସାଧାରଣ ବଣ୍ଟନ ବ୍ୟବସ୍ଥାରେ ତୃତୀୟ ବୃହତ୍ ଅବଦାନକାରୀ ରାଜ୍ୟ ହୋଇପାରିଛି ।

ଓଡିଶା ଅଧୁନା ଏହାର ଶିଳ୍ପାନୁକୂଳ ପରିବେଶ ଓ ନୀତି ଯୋଗୁଁ ପୂର୍ବ ଭାରତରେ ମାନୁଫାକ୍‌ଚରିଂ କେନ୍ଦ୍ର ରୂପେ ଦ୍ରୁତ ବିକଶିତ ହେଉଛି ।

ସରକାରଙ୍କ ପାଇଁ ମହିଳା ଓ ଶିଶୁ ସ୍ୱାସ୍ଥ୍ୟ ପ୍ରାଥମିକତା ହୋଇଥିବା ବେଳେ ଏହା ରାଜ୍ୟରେ ଶିକ୍ଷାର ବିକାଶ ପାଇଁ ମଧ୍ୟ ପଦକ୍ଷେପ ଗ୍ରହଣ କରିଛି । 'ଆମ ଗାଁ ଆମ ବିକାଶ', 'ମମତା', 'ଆହାର' ଏବଂ 'କାଳିଆ' ପରି ନବୀନ ସରକାରଙ୍କ କେତେକ ପଦକ୍ଷେପ ଓ ଯୋଜନା ଜନମଙ୍ଗଳ କାର୍ଯ୍ୟକ୍ରମ କ୍ଷେତ୍ରରେ ସ୍ୱତନ୍ତ୍ରତା ବହନ କରୁଥିବା ବେଳେ ଏସବୁ ଅଭିନବ ପଦକ୍ଷେପ ପ୍ରଶଂସା ପାଇବା ସହ ଅନ୍ୟ ରାଜ୍ୟଗୁଡିକ ନିମନ୍ତେ ଅନୁକରଣୀୟ ହୋଇପାରିଛି । ପୂର୍ବରୁ ରାଜ୍ୟ ଯଦିଓ କେତେଜଣ ସର୍ବୋତ୍ତମ ହକି ଖେଳାଳିଙ୍କ ନିମନ୍ତେ ପ୍ରସିଦ୍ଧି ଅର୍ଜନ କରିଥିଲା, ତେବେ ଖେଳ ନିମନ୍ତେ ଏହାର ଉପଯୁକ୍ତ ଭିତ୍ତିଭୂମି ନଥିଲା । ଏବଂ ଅଧୁନା ଆମେ ପରିସ୍ଥିତିରେ ସଂପୂର୍ଣ୍ଣ ପଟ୍ଟ ପରିବର୍ତ୍ତନ ଅନୁଭବ କରୁଛେ । ଆଜି ଭାରତରେ ଓଡିଶା ପରି ଅନ୍ୟ କୌଣସି ରାଜ୍ୟ ହକିର ବିକାଶ ନିମନ୍ତେ ସର୍ବବୃହତ୍ ପଦକ୍ଷେପ ଗ୍ରହଣ କରିନାହାନ୍ତି । ଓଡିଶା ସଫଳ ଭାବେ ହକି ବିଶ୍ୱ କପ୍ ଆୟୋଜନ କରିପାରିଛି ଏବଂ ଅନ୍ୟାନ୍ୟ ଅନ୍ତର୍ଜାତୀୟ କ୍ରୀଡାକୁ ପ୍ରୋତ୍ସାହନ ଦେଉଛି । ପ୍ରତ୍ୟେକ ପ୍ରକାର ଖେଳକୁଦକୁ ସମାନୁପାତିକ ଭାବେ ଗୁରୁତ୍ୱ ଦେବାରେ ଲାଗିଛି । ଆଜି ଏହା ଭାରତର କ୍ରୀଡା ରାଜଧାନୀ ରୂପେ ଉଭା ହୋଇଛି ।

## ଅଧିକ ସମ୍ବେଦନଶୀଳ ପ୍ରଶାସନ ନିମନ୍ତେ ୫ 'ଟି' ମନ୍ତ୍ର

ନବେ ଦଶକର ଶେଷ ଭାଗରେ ଓଡିଶା ରାଜନୀତିକୁ ଆସିଥିବା ନବୀନ ପଟ୍ଟନାୟକଙ୍କ ସମୟର ଓଡିଶା ଓ ଆଜିର ଓଡିଶା ମଧ୍ୟରେ ତୁଳନା କଲେ ଆମେ ବୃହତ୍ ପରିବର୍ତ୍ତନ ଲକ୍ଷ୍ୟ କରିପାରିବା । ନିଜର ରାଜନୈତିକ ଜୀବନ ଆରମ୍ଭରୁ ଲୋକଙ୍କ ନିମନ୍ତେ କାର୍ଯ୍ୟ କରିବାରେ ତାଙ୍କର ଉତ୍ସାହ ଓ ଦୁର୍ନୀତି ବିରୁଦ୍ଧରେ ଶୂନ୍ୟ ସହନଶୀଳତା ଆଜି ମଧ୍ୟ ଅତୁଟ । ୫'ଟି' ମନ୍ତ୍ର ଯଥା – ଟ୍ରାନ୍ସପାରେନ୍ସି (ସ୍ୱଚ୍ଛତା), ଟେକ୍ନୋଲୋଜି (ବୈଷୟିକ ଜ୍ଞାନକୌଶଳ), ଟିମ୍‌ୱାର୍କ (ଦଳଗତ କାର୍ଯ୍ୟ), ଟାଇମ୍ (ଯଥା ସମୟରେ କାର୍ଯ୍ୟ ସମ୍ପାଦନ) ଓ ଟ୍ରାନ୍ସଫରମେସନ୍ (ପରିବର୍ତ୍ତନ) ଦ୍ୱାରା ପ୍ରଶାସନକୁ ଅଧିକ ସ୍ୱଚ୍ଛ, ଉତ୍ତରଦାୟୀ ଓ ସକ୍ରିୟ କରି ଓଡ଼ିଶାକୁ ୧ ନମ୍ବର ରାଜ୍ୟରେ ପରିଣତ କରିବା ନବୀନ ପଟ୍ଟନାୟକଙ୍କ ସ୍ୱପ୍ନ । ଏହାକୁ ସାକାର କରିବା ନିମନ୍ତେ ୫ 'ଟି' ମନ୍ତ୍ର ହୋଇଛି ଅମୋଘ ଅସ୍ତ୍ର । ବିକାଶ ନିମନ୍ତେ ନିରବଚ୍ଛିନ୍ନ ଉଦ୍ୟମ ଓ ଓଡିଶାବାସୀଙ୍କ ଭଲ ପାଇବା ହିଁ ତାଙ୍କୁ ପଞ୍ଚମ ଥର ନିମନ୍ତେ ମୁଖ୍ୟମନ୍ତ୍ରୀ ଭାବେ ଦାୟିତ୍ୱ ନିର୍ବାହ କରିବା ପାଇଁ ସୁଯୋଗ ଦେଇଛି ଏବଂ ଓଡିଶା ଆଗେଇ ଚାଲିଛି ଆଗକୁ ଆଗକୁ...।



ସମ୍ପାଦକ
ଉତ୍କଳ ପ୍ରସଙ୍ଗ

# ଓଡ଼ିଶା : ନୈସର୍ଗିକ ସୌନ୍ଦର୍ଯ୍ୟର ପରିଭାଷା

ସୂର୍ଯ୍ୟ ମିଶ୍ର

ଏହି ପବିତ୍ର ଭୂଖଣ୍ଡର ଅସାଧାରଣ ବ୍ୟକ୍ତିବିଶେଷଙ୍କୁ କେନ୍ଦ୍ରକରି ଅଖଣ୍ଡ ଇତିହାସର ସ୍ରୋତ ବହୁ ଶତାବ୍ଦୀ ଧରି ପ୍ରବହମାନ । ଗୌରବୋଜ୍ଜଳ ଇତିହାସର ସ୍ୱାକ୍ଷର ଅନେକ କୀର୍ତ୍ତିରାଜିରେ ପ୍ରତିଫଳିତ । ସମୟ ଅତିକ୍ରାନ୍ତ ହେବା ସହିତ ରାଜ୍ୟର ଅଧିକାଂଶ ଭାଗରେ ଉତ୍‌ଖନନ ଦ୍ୱାରା ଏଭଳି ଅନେକ ସ୍ଥାନ ଲୋକଲୋଚନକୁ ଆସିପାରିଛି । ଏସବୁ କୀର୍ତ୍ତିରାଜି ପରିପୁଷ୍ଟ ଏକ ସମୃଦ୍ଧ ସଭ୍ୟତାର ଅବସ୍ଥିତି ସମ୍ପର୍କରେ ଆମ୍ଭମାନଙ୍କୁ ଅବଗତ କରାଏ । ଏଭଳି ଉନ୍ନତ ଓ ବର୍ଣ୍ଣିଳ ସଂସ୍କୃତି କ୍ୱଚିତ୍ ପରିଦୃଷ୍ଟ ହୁଏ । ଧର୍ମ ଓ ଦର୍ଶନ, ଆଦିବାସୀ ଓ ଆର୍ଯ୍ୟ, ବୁଦ୍ଧ ଓ ଜୈନ ଧର୍ମ, ଇସଲାମ ଓ ଖ୍ରୀଷ୍ଟଧର୍ମ – ଆମ ଇତିହାସରେ ସେମାନଙ୍କର ସ୍ଥିତି ପ୍ରକଟ କରିଆସିଛନ୍ତି ଏବଂ ଆଜି ପର୍ଯ୍ୟନ୍ତ ଏସବୁ ଏକତ୍ରିତ ରହି ଏ ମାଟିର ଲୋକମାନଙ୍କର ଧର୍ମୀୟ ସହିଷ୍ଣୁତାକୁ ପ୍ରମାଣିତ କରୁଛନ୍ତି । କଳା ଓ ସ୍ଥାପତ୍ୟ କ୍ଷେତ୍ରରେ ଅନେକ ଶତାବ୍ଦୀର ଇତିହାସକୁ ପ୍ରମାଣିତ କରି ମନ୍ଦିରଗୁଡିକ ମୁଣ୍ଡ ଟେକିଛନ୍ତି । ଏବେ ମଧ୍ୟ ସେଗୁଡିକର ପ୍ରତିରୂପ ସେହି ପୁରାତନ କଳାର ଅଭିଜ୍ଞ ଶିଳ୍ପୀମାନଙ୍କ ବଂଶଧରମାନଙ୍କୁ ଜୀବିକାର୍ଜନର ମାର୍ଗ ପ୍ରଦର୍ଶନ କରୁଛି ।

ସର୍ବଭାରତୀୟ ସଂସ୍କୃତିର ମୁଖ୍ୟସ୍ରୋତ ମଧ୍ୟରେ ଶତାବ୍ଦୀ ଶତାବ୍ଦୀ ଧରି ଓଡ଼ିଶା ତା'ର ସ୍ୱକୀୟ ସାଂସ୍କୃତିକ ପରିଚୟ ବଞ୍ଚାଇ ରଖିପାରିଛି । ଏହାର ସାମୁହିକ ପ୍ରଥା ଓ ରୀତିନୀତିଗୁଡ଼ିକ ଗୋଟିଏ କୃଷିଭିତ୍ତିକ ପଞ୍ଜିକା ଉପରେ ପର୍ଯ୍ୟବସିତ ପର୍ବପର୍ବାଣୀର ଏକ ସୁଦୀର୍ଘ ସୂଚୀରେ ପ୍ରକାଶିତ ହୋଇଛି । ଏଠାରେ ଈଶ୍ୱର ମାନବୀୟ ଏବଂ ଶ୍ରୀଜଗନ୍ନାଥ ମନ୍ଦିର, ଶ୍ରୀଲିଙ୍ଗରାଜ ମନ୍ଦିର ଭଳି ବୃହତ୍ ମନ୍ଦିରରେ ରୁହନ୍ତୁ ବା କ୍ଷୁଦ୍ର ପୀଠରେ ରହିଥାଆନ୍ତୁ, ପର୍ବପର୍ବାଣୀରେ ଭକ୍ତମାନଙ୍କୁ ଭେଟିବାକୁ ମନ୍ଦିରରୁ ବାହାରି ଆସିଥାନ୍ତି । ଏଠାରେ ଥିବା ବହୁ ସଂଖ୍ୟାରେ ମନ୍ଦିର ସର୍ବସାଧାରଣଙ୍କର ଧର୍ମୀୟ ଭାବନାର ସଂକେତ ଦିଏ, ଯେଉଁମାନେ ଏବେ ବି ପ୍ରତ୍ୟେକ ନୂତନ ବସତିରେ ସ୍ୱେଚ୍ଛାକୃତ ଭାବେ ଛୋଟ ଛୋଟ ମନ୍ଦିର ନିର୍ମାଣରେ ଅହରହ ଉଦ୍ୟମରତ । ଶିଳ୍ପୀମାନେ ଘରେ ଏବଂ ମନ୍ଦିରମାନଙ୍କରେ ପର୍ବପର୍ବାଣୀ ଦିନରେ ଆବଶ୍ୟକ ପଡୁଥିବା ସାଜସଜ୍ଜା ନିମିତ୍ତ ଉପକରଣଗୁଡ଼ିକୁ ତିଆରି କରିବାରେ ବ୍ୟସ୍ତ ରୁହନ୍ତି, ଯାହାକି ସେମାନଙ୍କୁ ବଞ୍ଚିବାର ମାଧ୍ୟମ ଯୋଗାଇ ଦେବା ସଙ୍ଗେ ସଙ୍ଗେ ସେମାନଙ୍କୁ କଳାତ୍ମକ କାର୍ଯ୍ୟ କରିବା ପାଇଁ ସୁଯୋଗ ପ୍ରଦାନ କରିଥାଏ । ସେମାନଙ୍କ ଦ୍ୱାରା ପ୍ରସ୍ତୁତ ବାନ୍ଧ ଲୁଗା ବା ଚାନ୍ଦୁଆ କାମ, ଟେରାକୋଟା, ଲାଖ, ପିତ୍ତଳ, ତାରକସୀ ଗହଣା ସାମଗ୍ରୀ ଅଥବା ପଟ୍ଟଚିତ୍ରରେ ଦେବତା – ଏସବୁ ଓଡ଼ିଶାର ଲୋକମାନଙ୍କ ଦୈନନ୍ଦିନ ଜୀବନକୁ କଳାତ୍ମକ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଦେଶର ଅନ୍ୟ ସ୍ଥାନରେ ଏପରିକି ବିଦେଶରେ ବ୍ୟବସାୟ ବାଣିଜ୍ୟ କରିବାରେ ମାର୍ଗ ପ୍ରଦର୍ଶନ କରେ । ନୌ–ବାଣିଜ୍ୟରେ ଏକଦା ସମୃଦ୍ଧି ଲାଭ କରିଥିବା ଏହି ରାଜ୍ୟ ଏପରି ପ୍ରସଙ୍ଗର ପ୍ରମାଣ ।

ତାଳପତ୍ର ପୋଥି ଏବଂ ମନ୍ଦିର ଗାତ୍ରରେ ପ୍ରସ୍ତର ଖୋଦେଇରେ ଲିପିବଦ୍ଧ ତଥ୍ୟ – ସଂଗୀତ, ନୃତ୍ୟ, ନାଟକ ପରି ମନୋରଞ୍ଜନ ଏବଂ ସାହିତ୍ୟ ଇତ୍ୟାଦିରେ ଉଚ୍ଚକୋଟୀର ଚମତ୍କାରିତା ପ୍ରତିଫଳିତ। ପୂର୍ବରୁ ପ୍ରଚଳିତ

ଲୋକକଳା ଯଥା– ସଂଗୀତ, ଗୀତ, ନୃତ୍ୟ, ନାଟକ ପରବର୍ତ୍ତୀ ପର୍ଯ୍ୟାୟରେ ଶାସ୍ତ୍ରୀୟ ସଂଗୀତ, ଗୀତ, ନୃତ୍ୟ, ନାଟକ ଏବଂ ସାହିତ୍ୟକୁ ପରିବର୍ତ୍ତିତ ହେଲା ଓ ଏଗୁଡ଼ିକ ଏବେ ମଧ୍ୟ କାଳର କରାଳ ଗତି ଦେଇ ତିଷ୍ଠି ରହିଛି ଏବଂ ସ୍ୱାଧୀନୋତ୍ତର କାଳରେ ଅଧିକ ପରିପୁଷ୍ଟ ଓ ସମୃଦ୍ଧ ହୋଇଛି । ଏହା କହିଲେ ଅତିରଞ୍ଜିତ ହେବନାହିଁ ଯେ ଓଡ଼ିଆ ଲୋକଙ୍କ ଜୀବନର ପ୍ରତ୍ୟେକ ସ୍ତର ଅତ୍ୟଧିକ ଭାବେ ଉଚ୍ଚକୋଟୀର କଳାତ୍ମକ ସମ୍ବେଦନଶୀଳତାର ପରିଚୟ ଦେଉଥିଲା ।

ଓଡ଼ିଶା ହେଉଛି ଏକ ଉନ୍ନତ ଏବଂ ବିବିଧ କଳାତ୍ମକ କୃତିତ୍ୱର ରାଜ୍ୟ । ଏହାର କଳା ସଂସ୍କୃତି ଏକ ସୁଦୀର୍ଘ ଐତିହାସିକ ପ୍ରକ୍ରିୟାର ପରିଣାମ ଯାହା ଆଧାତ୍ମିକ, ଦାର୍ଶନିକ ଏବଂ ମାନବବାଦୀ ଭାବଧାରା ସମ୍ମିଳିତ କରି ଏକ ସଂସ୍କୃତିସଂପନ୍ନ ଓ ମାର୍ଜିତ ଜୀବନର ସର୍ବଶ୍ରେଷ୍ଠ ମାର୍ଗ ପ୍ରଦର୍ଶନ କରିଛି । ଓଡ଼ିଶାର ସାଂସ୍କୃତିକ ଐତିହ୍ୟ ଏହାର ବହୁବିଧ କଳା ମାଧ୍ୟମରେ ପ୍ରସ୍ଫୁଟିତ ହୋଇଛି । ଲୋକମାନଙ୍କର ସାମାଜିକ ଓ ଧାର୍ମିକ କାର୍ଯ୍ୟକଳାପରେ ମହକ ଆଣି ଏହାକୁ ଜୀବନ୍ତ କରେ ସଂସ୍କୃତି । ଏହା ଦୈନନ୍ଦିନ ଜୀବନରେ ପ୍ରେରଣାର ଅନ୍ତଃସ୍ରୋତ ଭାବେ କାମ କରେ ଏବଂ ମାନବୀୟ ସମ୍ପର୍କ ଓ ବିଶ୍ୱବ୍ୟାପୀ ଐକ୍ୟ ସ୍ଥାପନରେ ଏକ ଶକ୍ତିଶାଳୀ ସେତୁରୂପେ କାର୍ଯ୍ୟ କରେ ।

ଚିତ୍ରକଳା, ସ୍ଥାପତ୍ୟ, ଭାସ୍କର୍ଯ୍ୟ, ହସ୍ତକଳା, ସଂଗୀତ ଏବଂ ନୃତ୍ୟ କ୍ଷେତ୍ରରେ ଓଡ଼ିଶାର ଏକ ସ୍ୱତନ୍ତ୍ର ପରମ୍ପରା ରହିଛି । ଓଡ଼ିଶୀ ଚିତ୍ରକଳାର ତିନିଗୋଟି ସ୍ରୋତ ରହିଛି, ସେଗୁଡିକ ସାମଗ୍ରିକଭାବେ ଏହାର ସ୍ୱତନ୍ତ୍ର ଦିଗ ପ୍ରଦର୍ଶିତ କରିଥାନ୍ତି । ଏଗୁଡ଼ିକ ହେଉଛି –ଜନଜାତି, ଲୋକକଳା ଏବଂ ଶାସ୍ତ୍ରୀୟ । ଏହି ୩ ଗୋଟି ସ୍ରୋତ ମଧ୍ୟରେ ନିୟମିତ ଭାବେ ଚିନ୍ତାଧାରାର ଆଦାନ ପ୍ରଦାନ ହୋଇଥାଏ ଏବଂ ଏହାଦ୍ୱାରା ଓଡ଼ିଶୀ କଳାର ଭଣ୍ଡାର ଋଦ୍ଧିମନ୍ତ ହୁଏ ।

**ଝୋଟି, ଚିତା, ମୁରୁଜ :**

ଓଡ଼ିଶାର ଲୋକକଳା ସାମାଜିକ ଏବଂ ଧର୍ମୀୟ କାର୍ଯ୍ୟକଳାପ ଉପରେ ପର୍ଯ୍ୟବସିତ । ମାର୍ଗଶୀର ମାସରେ ମହିଳାମାନେ ମା'ଲକ୍ଷ୍ମୀଙ୍କୁ ପୂଜା କରନ୍ତି । ଏହା ହେଉଛି ଫସଲ ଅମଳର ଋତୁ ଯେତେବେଳେ କି ଶସ୍ୟ ଅମଳ ହୋଇ ସଂରକ୍ଷିତ ରହେ । ଏହି ପବିତ୍ର ଅବସରରେ ମାଟିକାନ୍ଥ ଓ ଚଟାଣ ଉପରେ ଚାଉଳ ବଟା ବା ପିଠୋଉରେ ଚିତା ପଡ଼େ । ଏଗୁଡ଼ିକୁ ଝୋଟି ବା ଚିତା ବୋଲି କୁହାଯାଏ । ଏହା କେବଳ ଗୃହର ସାଜସଜ୍ଜା ନିମନ୍ତେ କରାଯାଇନଥାଏ, ବରଂ ରହସ୍ୟବାଦ ଓ ବସ୍ତୁବାଦ ମଧ୍ୟରେ ସମ୍ପର୍କ ସ୍ଥାପନ କରି ଏହା ବସ୍ତୁତଃ ସାଙ୍କେତିକ ଓ ଅର୍ଥପୂର୍ଣ୍ଣ ହୋଇଥାଏ । ଲୋକ ଚିତ୍ରକଳା ପରମ୍ପରା ସେହି ପ୍ରାଚୀନ ସତେଜତାକୁ ନେଇ ଆଜି ଯାଏ ବଞ୍ଚି ରହିଛି । ଗ୍ରାମୀଣ ମହିଳାମାନେ ବର୍ଷ ତମାମ ସେମାନଙ୍କର ମନୋବାଞ୍ଛା ପୂରଣ ସକାଶେ ନାନା ପ୍ରକାର କର୍ମକର୍ମାଣି ପାଳନ କରନ୍ତି । ପ୍ରତ୍ୟେକ ପର୍ବ ପାଇଁ ଏକ ନିର୍ଦ୍ଦିଷ୍ଟ ଚିତା ବା ମୁରୁଜ ଅଙ୍କାଯାଏ । ଉଦାହରଣ ସ୍ୱରୂପ – ଲକ୍ଷ୍ମୀପୂଜାରେ ଏକ ଧାନ ବା ଚାଉଳ କେଣ୍ଡାର ଚିତ୍ର ପିରାମିଡ୍ ଭାବେ ଗୃହ ଚଟାଣ ବା କାନ୍ଥରେ ଅଙ୍କାଯାଏ । ଦୁର୍ଗାପୂଜା ସମୟରେ କାନ୍ଥରେ ଧଳା ବୁନ୍ଦା ଉପରେ ନାଲି ବୁନ୍ଦା ଚିତ୍ରିତ କରାଯାଏ । ନାଲି ଧଳା ରଙ୍ଗର ମିଶ୍ରଣ ଶିବ ଓ ଶକ୍ତି ପୂଜାକୁ ଦର୍ଶାଇଥାଏ । ଝୋଟି ବା ଚିତା ଅଙ୍କନ କଲାବେଳେ ଆଙ୍ଗୁଠିଗୁଡ଼ିକୁ ଚାଉଳ ବଟା ଭିତରେ ବୁଡ଼ାଇ କାନ୍ଥ ବା ଚଟାଣ ଉପରେ ସୂକ୍ଷ୍ମ ଭାବେ ନୂଆ ନୂଆ ଢ଼ାଞ୍ଚା ପ୍ରସ୍ତୁତ କରାଯାଏ । ବେଳେବେଳେ ଏକ ଛୋଟ ବାଡ଼ିର ଅଗ୍ରଭାଗରେ ଛୋଟ କପଡ଼ା ବାନ୍ଧି ଏକ ପ୍ରକାର ବ୍ରସ୍ ତିଆରି କରାଯାଏ । ଧଳା ଚାଉଳ ବଟାରେ ଏହାକୁ ବୁଡ଼ାଯାଇ କାନ୍ଥ ଉପରେ ଝୋଟି ପଡ଼େ । ହାତମୁଠା ଚାଳନା ଦ୍ୱାରା ପିଠୋଉ ସିଞ୍ଚନ କରି ଏକ ପ୍ରକାର ସୂକ୍ଷ୍ମ ଚିତା କାନ୍ଥ ଉପରେ ଅଙ୍କାଯାଏ, ଯାହାକି ଧାନକେଣ୍ଡା ଭଳି ପ୍ରତୀୟମାନ ହୁଏ । ବିଭିନ୍ନ ପବିତ୍ର କାର୍ଯ୍ୟ ସଂପନ୍ନ କରାଯିବାବେଳେ ଚାଉଳ ରଖିବା ସ୍ଥାନ, ଘର ଠାକୁରଙ୍କ ରହିବା ସ୍ଥାନ (ବେଦୀ), ଦ୍ୱାରବନ୍ଧ ଏବଂ ବିବାହ ବେଳେ ମାଟି ଦୀପ ରହିବା ସ୍ଥାନ ପ୍ରଭୃତିରେ ଚିତା ଅଙ୍କନ କରାଯାଏ ।

ଭିନ୍ନ ଭିନ୍ନ ରଙ୍ଗର ଗୁଣ୍ଡ ବ୍ୟବହାର କରି ଚଟାଣରେ ମୁରୁଜ ଅଙ୍କାଯାଏ । ପଥରକୁ ଚୂର୍ଣ୍ଣ କରି ଧଳା ରଙ୍ଗ ମିଳେ,

ଶୁଷ୍କ ପତ୍ରରୁ ସବୁଜ ରଙ୍ଗର ଗୁଣ୍ଡ ମିଳେ, ପୋଡ଼ା ସଢ଼େଇରୁ କଳା ରଙ୍ଗ ମିଳେ, ହଳଦୀ କିମ୍ବା ଗେଣ୍ଡୁ ଫୁଲ ପାଖୁଡ଼ାରୁ ହଳଦିଆ ରଙ୍ଗ ମିଳେ, ଏବଂ ଇଟା ବା ନାଲିମାଟିରୁ ନାଲି ରଙ୍ଗ ମିଳିଥାଏ । ସାଧାରଣତଃ ପବିତ୍ର କାର୍ଯ୍ୟ କରାଯିବା ବେଳେ ମଣ୍ଡଳ ତିଆରି କରାଯିବା ପାଇଁ ମୁରୁଜର ଆବଶ୍ୟକତା ପଡ଼ିଥାଏ । ପବିତ୍ର କାର୍ତ୍ତିକ ମାସରେ ହିନ୍ଦୁନାରୀମାନେ ଉପବାସ ବ୍ରତ ରଖି ତୁଳସୀ ଚଉରା ନିକଟରେ ମୁରୁଜରେ ବିଭିନ୍ନ ଆକାରର ଚିତ୍ର ପ୍ରସ୍ତୁତ କରନ୍ତି । ମୁରୁଜ ପକାଇବା ପାଇଁ ଅନେକ କୌଶଳ ଓ ଅଭ୍ୟାସର ଆବଶ୍ୟକତା ପଡ଼େ । ପ୍ରାୟତଃ ମହିଳାମାନେ ନିଜର ଅନ୍ତର୍ନିହିତ କୌଶଳ ଦ୍ୱାରା ମୁରୁଜକୁ ନିଜର ବୃଦ୍ଧାଙ୍ଗୁଠି ଓ ବିଶି ଆଙ୍ଗୁଠିରେ ଧରି ସୂକ୍ଷ୍ମାତିସୂକ୍ଷ୍ମଭାବେ ଚଟାଣ ଉପରେ ସେଗୁଡ଼ିକୁ ପକାଇ ବିଭିନ୍ନ ରେଖା ଓ ଆକୃତି ସୃଷ୍ଟି କରନ୍ତି, ଯାହାକି ଅତ୍ୟନ୍ତ ମନଲୋଭା ଦେଖାଯାଏ ।

ଓଡ଼ିଶାର ନିପଟ ମଫସଲ ଲୋକେ ପ୍ରାୟତଃ ସେମାନଙ୍କ ଶରୀର ଉପରେ ଚିତା କୁଟାଇଥାଆନ୍ତି । ଚିତାକୁଟାକୁ କୁଟେଇ ଚିତା ମଧ୍ୟ କୁହାଯାଏ ଏବଂ ଛୁଞ୍ଚିରେ କଳାରଙ୍ଗ ବ୍ୟବହାର କରି ଚର୍ମ ଉପରେ ଫୁଟାଇ ଫୁଟାଇ ଚିତା କୁଟାଯାଏ । ସ୍ତ୍ରୀ ଲୋକର ଶରୀରରେ ଚିତାକୁଟାକୁ ପବିତ୍ରତା ଭାବେ ଗ୍ରହଣ କରାଯାଏ । କେତେକ ବିଶ୍ୱାସ କରନ୍ତି ଯେ ମୃତ୍ୟୁର ଦେବତା ଯମରାଜଙ୍କ ଦଣ୍ଡ ବିରୁଦ୍ଧରେ ଏହା ଏକ କବଚ ଭଳି । ଏହା ଦ୍ୱାରା ଆତ୍ମାର ମୋକ୍ଷପ୍ରାପ୍ତି ଘଟିଥାଏ ବୋଲି ମଧ୍ୟ କୁହାଯାଏ ।

**ଆଦିବାସୀ ଚିତ୍ରକଳା**

ଓଡ଼ିଶାର ଏକ ସମୃଦ୍ଧ ଆଦିବାସୀ ସଂସ୍କୃତି ରହିଛି । ସଉରା, କନ୍ଧ ଏବଂ ସାନ୍ତାଳମାନେ ସେମାନଙ୍କ ଗୃହକୁ ବିଭିନ୍ନ ପ୍ରକାର ଫୁଲ, ପକ୍ଷୀ ଓ ଜ୍ୟାମିତିକ ଅଙ୍କନରେ ସଜେଇଥାନ୍ତି । ସଉରା ଚିତ୍ରକଳା ଧର୍ମୀୟ ବିଶ୍ୱାସ ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଭୂତପ୍ରେତ ଓ କ୍ଷୁଦ୍ରଦେବତାମାନଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ଏହି ଚିତ୍ରକଳା ଅଭିପ୍ରେତ । ପଶୁବଳି ସମୟରେ ସଉରାମାନେ ସେମାନଙ୍କ କାନ୍ଥରେ ଚିତ୍ର ଅଙ୍କନ କରନ୍ତି । ଏହି ଚିତ୍ରକଳାର ବିଷୟବସ୍ତୁ ସାଧାରଣତଃ ସ୍ୱପ୍ନ ଉପରେ ଆଧାରିତ । ପାନିଆ ଠାରୁ ଆରମ୍ଭ କରି ସାଇକେଲ ପର୍ଯ୍ୟନ୍ତ ବିଭିନ୍ନ ପ୍ରକାର ବସ୍ତୁ ଆଧୁନିକ ସଉରା ଚିତ୍ରକଳାରେ ସ୍ଥାନିତ ହୋଇଥାଏ । କନ୍ଧମାନଙ୍କ ଚିତ୍ରକଳାରେ ଜ୍ୟାମିତିକ ସ୍ୱରୂପ ଦେଖିବାକୁ ମିଳେ । ସାନ୍ତାଳମାନେ ସେମାନଙ୍କ ଗୃହକୁ ଆଳଙ୍କରିକ ଭାବେ ଚିତ୍ରିତ କରିଥାଆନ୍ତି ।

**ପ୍ରସ୍ତର କଳା :**

ପଶ୍ଚିମାଞ୍ଚଳର ଘଞ୍ଚ ଜଙ୍ଗଲ ଅଞ୍ଚଳରେ ଚିତ୍ରିତ ପ୍ରସ୍ତର ଆଶ୍ରୟସ୍ଥଳୀ ଦେଖିବାକୁ ମିଳେ । ସମ୍ବଲପୁର ଜିଲ୍ଲାର ଉଲପଗଡ଼ ଓ ବିକ୍ରମଖୋଲ, ସୁନ୍ଦରଗଡ଼ ଜିଲ୍ଲାର ମାଣିକମାଡ଼ା ଓ ଉଷାକୋଠୀ, କଳାହାଣ୍ଡି ଜିଲ୍ଲାର ଗୁଡ଼ହାଣ୍ଡି ଓ ଯୋଗୀମଠସ୍ଥିତ ପ୍ରସ୍ତର ଆଶ୍ରୟସ୍ଥଳୀ ସମଗ୍ର ପୂର୍ବଭାରତରେ ବିରଳ ଏକ ପ୍ରାଚୀନ ସଂସ୍କୃତିର ଆବିଷ୍କାର କରିବା ପରି ଆନନ୍ଦ ପ୍ରଦାନ କରିଥାଏ । ଏସବୁ ଅଞ୍ଚଳରେ ପ୍ରାଗ୍-ଐତିହାସିକ ଚିତ୍ର ଥିବା ପ୍ରାକୃତିକ ପ୍ରସ୍ତର ଖଣ୍ଡ ଦେଖିବାକୁ ମିଳେ । କେନ୍ଦୁଝର ଜିଲ୍ଲାର ସିତାବିଞ୍ଜି ଠାରେ ରାବଣ ଛତା ପ୍ରସ୍ତର ଏକ ଉଚ୍ଚକୋଟୀର ଚିତ୍ରକଳାର ନିଦର୍ଶନ । ଏଠାରେ ଏକ ରାଜା ଗୋଟିଏ ସୁସଜ୍ଜିତ ହସ୍ତୀ ଆରୋହଣ କରି ଶୋଭାଯାତ୍ରାରେ ବାହାରିଥିବା ଦୃଶ୍ୟ ପରିଦୃଷ୍ଟ ହୁଏ । ଅଶ୍ୱାରୋହୀ ଏବଂ ସୈନିକମାନେ ଦଣ୍ଡ ଓ ରଣପତାକା ଧରି ଯାଉଥିବାବେଳେ ଏକ ମହିଳା ସେବିକା ସେମାନଙ୍କ ପଛେ ପଛେ ଯାଉଥିବାର ଦେଖାଯାଏ । ଏହି ଚିତ୍ରକଳା ଅଜନ୍ତା ଭିତ୍ତିଚିତ୍ରର ସ୍ମୃତିଚାରଣ କରେ । ପ୍ରାକୃତିକ ଗୁମ୍ଫାରେ ଥିବା ଏହି ପ୍ରସ୍ତର ଚିତ୍ରକଳା ତାଳଗଛର ଏକ ବାହୁଙ୍ଗାର ତନ୍ତୁମୟ ପଛପଟକୁ ଛେଚି ତୂଳୀ ଭଳି ଏକ ବସ୍ତୁ ଦ୍ୱାରା ରଙ୍ଗ କରାଯାଇଥାଏ । ଏଭଳି ଚିତ୍ରକଳା ବିଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ପ୍ରକାର ଦେଖିବାକୁ ମିଳେ । ଉଦାହରଣସ୍ୱରୂପ, ଅଧିକାଂଶ ପ୍ରସ୍ତର ଆଶ୍ରୟସ୍ଥଳୀରେ ଚିତ୍ରକଳାଗୁଡ଼ିକ ରେଖାଙ୍କିତ । ମାତ୍ର ମାଣିକମାଡ଼ାରେ ଚିତ୍ରକଳାଗୁଡ଼ିକ ପ୍ରକୃତିକୈନ୍ଦ୍ରିକ, ଅଧିକ ଛବିଳ ଓ ବହୁବିଧ । ଏଠାରେ ଚିତ୍ରକଳାଗୁଡ଼ିକରେ ଅନେକ ଥର ରଙ୍ଗ ବୋଳାଯାଇଛି ଓ ମୋଟା ଆକାରରେ ଆଚ୍ଛାଦିତ ହୋଇଛି । ଅନ୍ୟ ପକ୍ଷରେ, ଆଉ କିଛି ଚିତ୍ରକଳା ଅତି ସାଧାରଣ

ଭାବେ ଅଙ୍କିତ ହୋଇଛି । ଯୋଗୀମଠ ଠାରେ ଚିତ୍ରକଳାଗୁଡ଼ିକ ସ୍ପଷ୍ଟଭାବେ (ଗେରୁ) ରେଖାରେ ପରିପ୍ରକାଶ ପାଉଛି । ପ୍ରାଚୀର ପୃଷ୍ଠଭାଗ ଏବଂ ଛାତ ସବୁ ଚିତ୍ରକଳା ଦ୍ୱାରା ଆଚ୍ଛାଦିତ ହୋଇଛି । ପ୍ରାଚୀର ଉପରେ ଚିତ୍ରଗୁଡ଼ିକ ଅନୁକ୍ରମ ଓ ଆନୁଭୂମିକ ଭାବେ ଅଙ୍କା ହୋଇଥିବା ବେଳେ ଛାତତଳେ ନିର୍ଦ୍ଦିଷ୍ଟଭାବେ କୌଣସି ସୂତ୍ର ଗ୍ରହଣ କରାଯାଇ ନାହିଁ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଚିତ୍ରକଳାଗୁଡ଼ିକ ମଧ୍ୟରେ କ୍ଷୁଦ୍ର ଜ୍ୟାମିତିକ ଓ ଫୁଲ ଆକାରଠାରୁ ଆରମ୍ଭ କରି ଗବାଦିପଶୁ, ହରିଣ ଓ ସମ୍ବର ପ୍ରଭୃତି ବନ୍ୟଜୀବ ସ୍ଥାନିତ ହୋଇଛନ୍ତି । ଯେଉଁଠାରେ ମନୁଷ୍ୟ ସମ୍ବନ୍ଧୀୟ ଚିତ୍ର ରହିଛି, ସେଗୁଡ଼ିକ ସେମାନଙ୍କର ପଶୁ ଶିକାର, ପଶୁପାଳନ, ଲଢ଼େଇ ଓ ନୃତ୍ୟ ଆଦି ଦୃଶ୍ୟ ପ୍ରକାଶ କରୁଛି ।

ପ୍ରସ୍ତର ଚିତ୍ରକରମାନେ ରଙ୍ଗ କରିବା ନିମନ୍ତେ ବିଭିନ୍ନ ପ୍ରକାର ପଦାର୍ଥ ବ୍ୟବହାର କରିଥାଆନ୍ତି । ଲୌହ ଅକ୍ସାଇଡରୁ ନାଲି ଓ ବାଦାମୀ ରଙ୍ଗ ଏବଂ ଚୂନ ପଥରରୁ ଧଳା ରଙ୍ଗ ସହ ତମ୍ବା ପଦାର୍ଥରୁ ସବୁଜ ରଙ୍ଗ ପାଆନ୍ତି । ଏହି ରଙ୍ଗଗୁଡ଼ିକ ପ୍ରାୟତଃ ପ୍ରସ୍ତର ଆଶ୍ରୟସ୍ଥଳୀ ନିକଟରେ ମିଳେ । ଏହି ଚିତ୍ରକଳାଗୁଡ଼ିକ ନିଶ୍ଚିତଭାବରେ ଆଦିମ ମାନବ ଦ୍ୱାରା କରାଯାଇଛି । ସେମାନେ ଭାରତ ଓ ପଶ୍ଚିମ ଓଡ଼ିଶା ଆଦିବାସୀମାନଙ୍କର ପୂର୍ବପୁରୁଷ ଥିଲେ । ଏହି ପ୍ରସ୍ତର ଚିତ୍ରକଳାର ପରମ୍ପରା ଏବେ ଯାଏଁ ଆଦିବାସୀମାନଙ୍କ କାନ୍ଥ ଚିତ୍ରରେ ପରିଦୃଷ୍ଟ ହୁଏ । କୋରାପୁଟ ଓ ଗଞ୍ଜାମ ଜିଲ୍ଲାର ସଉରା ଆଦିବାସୀ ଚିତ୍ରକଳା ଏଯାବତ୍ ପ୍ରସ୍ତର କଳାକୁ ସଜୀବ ରଖି ଏହାର ସୌନ୍ଦର୍ଯ୍ୟ ବଜାୟ ରଖିଛି ।

**ମନ୍ଦିର ଚିତ୍ରକଳା :**

ମନ୍ଦିରଗୁଡ଼ିକରେ ପ୍ରମୁଖ ଓଡ଼ିଶୀ ଶୈଳୀର ଚିତ୍ରସବୁ ଦେଖିବାକୁ ମିଳେ । ସେଗୁଡ଼ିକ ଧର୍ମୀୟ ବିଷୟବସ୍ତୁର ଅବତାରଣା କରେ । ସାଙ୍କେତିକ, ପୌରାଣିକ ଓ ଐତିହାସିକ ବିଷୟବସ୍ତୁ ଏହିସବୁ ଚିତ୍ରକଳାର ମୂଳକଥା । ଐତିହାସିକ ଘଟଣାକୁ ଲିପିବଦ୍ଧ କରିବା ସହ ପୌରାଣିକ କଥାର ବର୍ଣ୍ଣନା ଏବଂ ଧାର୍ମିକ ଭାବନାର ପ୍ରଚାର ନିମନ୍ତେ ଏହି ସବୁ ଚିତ୍ର ବ୍ୟବହୃତ ହୋଇଥାଏ । ପୁରୀର ଜଗନ୍ନାଥ ମନ୍ଦିର ପ୍ରାଚୀର ଚିତ୍ର ପରମ୍ପରାକୁ ଅନୁସରଣ କରେ । ଜଗନ୍ନାଥ ମନ୍ଦିରର ଜଗମୋହନରେ ''କାଞ୍ଚି ବିଜୟ'' ଚିତ୍ର ଓ ଲକ୍ଷ୍ମୀ ମନ୍ଦିରର ଜଗମୋହନରେ ''ବୁଦ୍ଧ ବିଜୟ'' ଚିତ୍ରଦ୍ୱୟ ଅତ୍ୟନ୍ତ ଉଚ୍ଚକୋଟିର। ଜଗନ୍ନାଥ ମନ୍ଦିରର ଖମ୍ବ ସମ୍ବଳିତ ଭିତର କକ୍ଷରେ ଥିବା କାନ୍ଥ ଓ ଛାତତଳେ ଅନେକ ପ୍ରାଚୀର ଚିତ୍ର ରହିଛି । ଜୟଦେବଙ୍କ 'ଦଶାବତାର'ରେ ବର୍ଣ୍ଣିତ ବିଷ୍ଣୁଙ୍କ ଦଶଗୋଟି ଅବତାର ମଧ୍ୟ ଏଠାରେ ଶୋଭା ପାଉଛି । ଶ୍ରୀକୃଷ୍ଣଙ୍କ ବିଭିନ୍ନ ଲୀଳା ମଧ୍ୟ ଏହି କାନ୍ଥଗୁଡ଼ିକରେ ଚିତ୍ରିତ ହୋଇଛି । ପୃଥିବୀ ସୃଷ୍ଟି ସମୟରେ କ୍ଷୀରସାଗରରେ ବିଷ୍ଣୁଙ୍କ ଅନନ୍ତ ଶୟନ ଏବଂ ବିଷ୍ଣୁଙ୍କ ନାଭିରୁ ଉତ୍ପନ୍ନ ପଦ୍ମ ଉପରେ ଉପବେଶନ କରିଥିବା ବ୍ରହ୍ମଦେବ । ମଧ୍ୟ ଏକ ମନମୋହକ ଚିତ୍ର ଯାହାକି ଜଗନ୍ନାଥ ମନ୍ଦିର ପରିସରରେ ଦେଖିବାକୁ ମିଳେ । ଭଗବାନ ବିଷ୍ଣୁ ଗୋଟିଏ ଶିଶୁ ଭାବରେ ଏକ ଭାସମାନ ବରପତ୍ର ଉପରେ ବିଶ୍ରାମ ନେଉଥିବା ଓ ତାଙ୍କ ପାଦାଙ୍ଗୁଳିକୁ ପାଟିରେ ପୂରାଇଥିବା ଚିତ୍ରଟି ହେଉଛି ଅନ୍ୟ ଏକ ଆକର୍ଷଣୀୟ ଚିତ୍ରକଳା । 'କାଞ୍ଚି ବିଜୟ' ଜଗନ୍ନାଥ ମନ୍ଦିରର ଆଉ ଏକ ସୁନ୍ଦର ଚିତ୍ର ଯେଉଁଥିରେ ପ୍ରଭୁ ଜଗନ୍ନାଥ ଓ ବଳଭଦ୍ର ଘୋଡ଼ାରେ ଚଢ଼ି ଯୁଦ୍ଧକ୍ଷେତ୍ରକୁ ଯାଉଥିବା ବେଳେ ମାଣିକ ଗଉଡୁଣୀଠାରୁ ଦହି ଖାଇବା ପାଇଁ ବାଟରେ ଅଟକିଛନ୍ତି ।

ଏତଦ୍‌ବ୍ୟତୀତ, ଓଡ଼ିଶାରେ ଆଉ ୨ ଗୋଟି ଚିତ୍ରକଳା ପରମ୍ପରା ରହିଛି ଯଥା – ଗଞ୍ଜାମ ବା ଦକ୍ଷିଣୀ ଧାରା ଓ ଚମ୍ପାମାଳା ଧାରା । ପୁରୀ ଶୈଳୀଟି ପୁରୀ ଏବଂ ଏହାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ପ୍ରତାପପୁର, ବଳପୁର ଓ ରଘୁରାଜପୁରରେ ଦେଖିବାକୁ ମିଳେ । ସେହିପରି ଚମ୍ପାମାଳା ଶୈଳୀ ସୋନପୁର ଓ ସମ୍ବଲପୁରରେ ପ୍ରଚଳିତ । ଦକ୍ଷିଣୀ ପରମ୍ପରା ଘୁମୁସର, ଖଲ୍ଲିକୋଟ, ଧରାକୋଟ, ଖେମୁଣ୍ଡି, ପାରଳା, ଇଚ୍ଛାପୁର, ଟିକାଲି ଓ ମଞ୍ଜୁଷାରେ ଚାଲିଆସୁଛି । ପୁରୀ ଓ ଗଞ୍ଜାମ ଶୈଳୀର କଳାକୃତିରେ ସମାନତା ରହିଛି, ମାତ୍ର ଚମ୍ପାମାଳା ଶୈଳୀଟି ଭିନ୍ନ । ଏଥିରେ ଇଣ୍ଡୋନେସୀୟ ଚିତ୍ରକଳାର ବୈଶିଷ୍ଟ୍ୟ ରହିଛି ।

ଗଞ୍ଜାମ ଜିଲ୍ଲାର ଜୟନ୍ତଗଡ଼ସ୍ଥିତ ବାସୁଦେବ ମନ୍ଦିର ଏବଂ ବୁଗୁଡ଼ାସ୍ଥିତ ବିରଞ୍ଚିନାରାୟଣ ମନ୍ଦିରର ପ୍ରାଚୀର ଚିତ୍ର

ଅଷ୍ଟାଦଶ ଶତାବ୍ଦୀର ବୋଲି ଜଣାଯାଏ । ବିରଞ୍ଚିନାରାୟଣ ମନ୍ଦିରର ଚିତ୍ରକଳା ପ୍ରାଚୀର ଚିତ୍ରକଳା ଇତିହାସରେ ଏକ ମାଇଲଖୁଣ୍ଟି ସଦୃଶ । ଏଥିରେ ମୁଖ୍ୟତଃ ରାମାୟଣର କଥାବସ୍ତୁ, କୃଷ୍ଣଲୀଳାର ଦୃଶ୍ୟ ଏବଂ ଦଶାବତାର ପ୍ରଦର୍ଶିତ ହୋଇଛି । କିନ୍ତୁ ଏଥିରେ ସବୁଠାରୁ ମୁଖ୍ୟ ବିଷୟ ହେଉଛି ଲକ୍ଷ୍ମଣ ଓ ଜାମ୍ବବାନ, ରାବଣ, ଚିତ୍ରକୂଟରେ ରାମ ଓ ସୀତା ଏବଂ ରାମ–ରାବଣ ଯୁଦ୍ଧ । ଏହିସବୁ ଚିତ୍ରକଳାରେ ନାଟକୀୟ ତତ୍ତ୍ୱ ଅଧିକ ଭାବେ ରହିଛି ଏବଂ ମାନବୀୟ ତଥ୍ୟ ଅତ୍ୟନ୍ତ ସୁଲଳିତ ଭାବେ ଚିତ୍ରିତ ହୋଇଛି । ଉଦାହରଣ ସ୍ୱରୂପ– ଚିତ୍ରକୂଟ ଚିତ୍ରରେ ରାମ ସୀତାଙ୍କ କପାଳରେ ସିନ୍ଦୁର ପିନ୍ଧାଉଥିବା ସମୟରେ ତା'ଙ୍କ ହାତର ମୁଦ୍ରା କଳାତ୍ମକଭାବେ ରୂପାୟିତ ହୋଇଛି । ବିରଞ୍ଚିନାରାୟଣ ମନ୍ଦିରରେ ପୁରୀ ଜଗନ୍ନାଥ ମନ୍ଦିରର ଏକ ଚିତ୍ର ମଧ୍ୟ ରହିଛି ।

ବୁଗୁଡ଼ାର ଜଗନ୍ନାଥ ମନ୍ଦିରରେ କୃଷ୍ଣଲୀଳା ଚିତ୍ର ସବୁ ରହିଛି । ସେଥିମଧ୍ୟରୁ ଅଳ୍ପ କେତେକ ଲୋକଲୋଚନକୁ ଆସିଛି, ସେସବୁ ବିରଞ୍ଚିନାରାୟଣ ମନ୍ଦିରର ଚିତ୍ରକଳା ସହ ତୁଳନୀୟ ହୋଇପାରିବ । ରଙ୍ଗ ସଂଯୋଜନାରୁ ସେଗୁଡିକ ଊନବିଂଶ ଶତାବ୍ଦୀର ବୋଲି ଜଣାପଡ଼େ ।

ଧରାକୋଟରେ ଥିବା ଜଗନ୍ନାଥ ମନ୍ଦିରର ଭିତରପାର୍ଶ୍ୱ କାନ୍ଥଗୁଡ଼ିକ ଚିତ୍ରକଳାରେ ଭରପୂର । ବୃନ୍ଦାବନଚନ୍ଦ୍ର ମନ୍ଦିର ଏବଂ ଦେବୀ ଖମ୍ବେଶ୍ୱରୀଙ୍କ ପୀଠରେ ମଧ୍ୟ ଅନେକ ସୁନ୍ଦର ଚିତ୍ରକଳା ରହିଛି । ଏହି ଚିତ୍ରକଳାର କଥାବସ୍ତୁ ହେଉଛି ରାମାୟଣ, ଦଶାବତାର ଓ ଦଶମହାବିଦ୍ୟା । ଚିତ୍ରକଳାର ରଙ୍ଗ ସଂଯୋଜନାରେ ଅଧିକ ଭାବେ ଗାଢ଼ ନୀଳ ଓ ଉଜ୍ଜଳ ପୀତ ରଙ୍ଗ ବ୍ୟବହୃତ ହୋଇଛି ଏବଂ ଏଥିରୁ ସେଗୁଡ଼ିକ ଊନବିଂଶ ଶତାବ୍ଦୀର ଶେଷ ଭାଗ ବା ବିଂଶ ଶତାବ୍ଦୀର ପ୍ରାରମ୍ଭ ସମୟରେ ହୋଇଥିବାର ଜଣାପଡ଼େ ।

ଓଡ଼ିଶାର ଅଧିକାଂଶ ମଠ ଓ ମନ୍ଦିରର ଚିତ୍ରକଳା ଊନବିଂଶ ଶତାବ୍ଦୀରେ ହୋଇଥିବାର ପ୍ରମାଣ ମିଳେ । ପୁରୀର ଏମାର ମଠ ଓ ବଡ଼ ଓଡ଼ିଆ ମଠ ଏବଂ ଓଡ଼ଗାଁର ରଘୁନାଥ ମନ୍ଦିରରେ ପ୍ରାଚୀର ଚିତ୍ରଗୁଡ଼ିକ ରହିଛି । ପୁରୀର ଗଙ୍ଗାମାତା ମଠ ଓ ଗୁଣ୍ଡିଚା ମନ୍ଦିର, ଚିକିଟି ଗଡ଼ର ଚୈତନ୍ୟ ମଠ, ଜୟପୁରର ଶ୍ରୀକାଳୀକା ମନ୍ଦିର, ବେଲଗୁଣ୍ଠାର ଲକ୍ଷ୍ମୀନୃସିଂହ ମନ୍ଦିର, ବାଘମାରୀର ହଟକେଶ୍ୱର ଶିବ ମନ୍ଦିର, ଦିଗପହଣ୍ଡିର ରାଧାକାନ୍ତ ମଠ ଏବଂ ପାରଳାଖେମୁଣ୍ଡିର ରାଧାକୃଷ୍ଣ ମଠରେ ଥିବା ପ୍ରାଚୀର ଚିତ୍ରଗୁଡ଼ିକ ବିଂଶ ଶତାବ୍ଦୀର ଏବଂ ଏଗୁଡ଼ିକ ପ୍ରଗାଢ଼ଭାବେ ପ୍ରାଚୀନ ପରମ୍ପରା ବହନ କରେ ।

ଏସବୁ ମନ୍ଦିର ଚିତ୍ରଗୁଡ଼ିକ ବ୍ୟତୀତ ଅନ୍ୟ କେତେକ ପ୍ରାଚୀନ ଚିତ୍ରକଳା ସଂଗ୍ରହାଳୟଗୁଡ଼ିକରେ ସଂରକ୍ଷିତ ହୋଇରହିଛି । କଲିକତା ବିଶ୍ୱବିଦ୍ୟାଳୟର ଆଶୁତୋଷ ସଂଗ୍ରହାଳୟରେ ଏକ ଚିତ୍ରକଳା ରହିଛି । ଓଡ଼ିଶାର ଜଣେ ରାଜା ଏକ ମୁସଲମାନ ଦୂତଙ୍କୁ ପାଛୋଟି ନେଉଥିବାର ଦୃଶ୍ୟ ସମ୍ବଳିତ ଛବିଗୁଡ଼ିକ ଯେଉଁଭଳି ଦର୍ଶାଯାଇଛି ସେଥିରେ ବୁଗୁଡ଼ା ଶ୍ରେଣୀୟ କଳା ସହିତ ସମାନତା ଥିବାର ଜଣାପଡୁଛି । ଏହି ସଂଗ୍ରହାଳୟରେ ଜୟଦେବଙ୍କ 'ଗୀତଗୋବିନ୍ଦ' ଉପରେ ଏକ ଚିତ୍ରକଳା ମଧ୍ୟ ରହିଛି । ଏଥିରେ ଯମୁନା ନଦୀ ତୀରରେ ଏକ ଜ୍ୟୋସ୍ନାବିଧୌତ ରଜନୀରେ ଗୋପୀମାନେ କଥୋପକଥନ ମୁଦ୍ରାରେ ଠିଆ ହୋଇଥିବାର ଦର୍ଶାଯାଇଛି । ବୃକ୍ଷରାଜି, ହରିଣ ଓ ମୟୂରମାନଙ୍କ ଉପସ୍ଥିତି ଏହାର ସାଙ୍ଗୀତିକ ପ୍ରଭାବକୁ ପରିବର୍ଦ୍ଧିତ କରିଛି । ଭିତ୍ତିଚିତ୍ର ଅପେକ୍ଷା ଏହି ଚିତ୍ରରେ ରେଖାଗୁଡ଼ିକ ଗତିଶୀଳ ଓ ମାଧୁର୍ଯ୍ୟପୂର୍ଣ୍ଣ ହୋଇଛି ଏବଂ ପଶୁପକ୍ଷୀମାନେ ଅଧିକ ପ୍ରାକୃତିକ ଓ ପ୍ରଭାବଶାଳୀ ହୋଇଛନ୍ତି ।

ସାମଗ୍ରିକ ଭାବରେ ଦେଖିଲେ ଓଡ଼ିଶାର ଚିତ୍ରକଳାର ସଂଯୋଜନା ଅତୀବ ସରଳ । ଭାରତର ସମସ୍ତ ପ୍ରାଚୀନ ଶ୍ରେଣୀର କଳା ପରି ଚିତ୍ରଗୁଡ଼ିକ ଏକ ସମତଳରେ ବ୍ୟବସ୍ଥିତ ହୋଇଛନ୍ତି । ଚିତ୍ରଗୁଡ଼ିକ ଅତି ସାଧାରଣ ଏବଂ ଏହା ଆଲୋକ ଛାୟା ପ୍ରଭାବ ବିରହିତ ଯାହାକି ତ୍ରୀଡିର ଭ୍ରମ ସୃଷ୍ଟିକରେ । ଏଗୁଡ଼ିକରୁ ଅଧିକାଂଶ ନୂତନ ଶୈଳୀର ଚିତ୍ରକଳା । ପ୍ରାଚୀନ ଓଡ଼ିଶୀ ଚିତ୍ରକଳାରେ ପ୍ରକୃତିର ଆକର୍ଷଣ

ଯଦିଓ ସମ୍ପୂର୍ଣ୍ଣ ଭାବେ ପ୍ରତିଫଳିତ ହୋଇନାହିଁ, ତଥାପି ସେଥିରେ ଚିତ୍ରକରର ସାଦାସିଧା ଅନୁଭୂତି ଏବଂ ଆବେଗର ପରିପ୍ରକାଶ ଘଟିଛି ।

**ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ:**

ଓଡ଼ିଶୀ ସ୍ଥାପତ୍ୟର ବିଭବ ପ୍ରାଗୈତିହାସିକ କାଳରୁ ଆରମ୍ଭ କରି ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରେ ମୁସଲମାନମାନଙ୍କ ରାଜତ୍ୱ ଶେଷ ପର୍ଯ୍ୟନ୍ତ ବିସ୍ତୃତ । ଶିଶୁପାଳଗଡ ଓ ଜଉଗଡ଼ଠାରେ ହୋଇଥିବା ଉତ୍ଖନନ ଓଡ଼ିଶାରେ ଅତ୍ୟନ୍ତ ସମୃଦ୍ଧ ପ୍ରାଗୈତିହାସିକ ସଭ୍ୟତାର ପ୍ରମାଣ ପ୍ରଦାନ କରିଥାଏ ।

ଖ୍ରୀ.ପୂ. ପ୍ରଥମ ଶତାବ୍ଦୀରେ ନିର୍ମିତ ଖଣ୍ଡଗିରି ଓ ଉଦୟଗିରିର ଗୁମ୍ଫାଗୁଡ଼ିକ ଓଡ଼ିଶାରେ ଗୁମ୍ଫା ସ୍ଥାପତ୍ୟର ବଳିଷ୍ଠ ପ୍ରମାଣ ଦିଏ । ସମ୍ରାଟ ଖାରବେଳଙ୍କ ଅଦେଶ ଅନୁସାରେ ଜୈନ ମୁନିମାନଙ୍କ ପାଇଁ ବଡ଼ ବଡ଼ ପ୍ରସ୍ତର ଖଣ୍ଡକୁ କଟାଯାଇ ଗୁମ୍ଫାଗୁଡ଼ିକ ନିର୍ମିତ କରାଯାଇଥିଲା । ଉଦୟଗିରିରେ ସମୁଦାୟ ୧୮ଟି ଗୁମ୍ଫା ଓ ଖଣ୍ଡଗିରିରେ ୧୫ଗୋଟି ଗୁମ୍ଫା ରହିଛି । ବିଭିନ୍ନ ସ୍ଥାପତ୍ୟ ଶୈଳୀରେ ଗୁମ୍ଫାଗୁଡ଼ିକ ସୁସଜ୍ଜିତ । ଉଦୟଗିରିର ରାଣୀଗୁମ୍ଫା ଗୋଟିଏ ଦ୍ୱିତଳ ଢ଼ାଞ୍ଚା ଏବଂ ଏଥିରେ ଉଚ୍ଚକୋଟୀର କଳାତ୍ମକ ଭାସ୍କର୍ଯ୍ୟ ରହିଛି । ଗୁମ୍ଫାଗୁଡ଼ିକରେ ଏକ ବା ଏକାଧିକ କୋଠରୀ ରହିଛି ଏବଂ କେତେକ ଗୁମ୍ଫାର ସମ୍ମୁଖ ଭାଗରେ ସ୍ତମ୍ଭ ଥାଇ ବାରଣ୍ଡା ରହିଛି । ଭାରତୀୟ କଳାରେ ଖଣ୍ଡଗିରି ଓ ଉଦୟଗିରିର ଭାସ୍କର୍ଯ୍ୟ ଅନେକ ଗୁରୁତ୍ୱ ବହନ କରେ । ଏଗୁଡ଼ିକ ତତ୍କାଳୀନ ସମାଜର ନାନାବିଧ ଚିତ୍ର ପ୍ରଦାନ କରେ ଏବଂ ଭାରତର ପ୍ରସ୍ତର ଖୋଦେଇ ସ୍ଥାପତ୍ୟରେ ଏକ ଅଗ୍ରଣୀ ଭୂମିକା ନିର୍ବାହ କରେ ।

କଳା ଓ ସ୍ଥାପତ୍ୟର ବିକାଶ ନିମନ୍ତେ ଜୈନଧର୍ମ ଭଳି ବୌଦ୍ଧଧର୍ମ ମଧ୍ୟ ପ୍ରେରଣା ଯୋଗାଇଥିଲା । ବୌଦ୍ଧ ଧର୍ମର ପ୍ରଚାର ପ୍ରସାର ନିମିତ୍ତ ସମ୍ରାଟ ଅଶୋକ ସମସ୍ତ ଶାସନକଳକୁ ନିୟୋଜିତ କରିଥିଲେ । ଧଉଳି ଓ ଜଉଗଡ଼ଠାରେ ଆମେ ଅଶୋକଙ୍କ ଦୁଇଟି ପ୍ରମୁଖ ଶିଳାଲେଖ ଦେଖିବାକୁ ପାଉ । ରତ୍ନଗିରିଠାରେ ପ୍ରତ୍ନତାତ୍ତ୍ୱିକ ଉତ୍ଖନନ ପରେ ଗୋଟିଏ ମୁଖ୍ୟ ସ୍ତୁପ, ଦୁଇଟି ବିହାର ଓ ବୁଦ୍ଧ ମୂର୍ତ୍ତିଥାଇ ଆଠଗୋଟି ମନ୍ଦିରର ଅବଶେଷ ଲୋକଲୋଚନକୁ ଆସିପାରିଛି । ଲଳିତଗିରି, ଓଳାଶୁଣି, ଲଣ୍ଡା ଓ ପାରାଭାଡ଼ି ପର୍ବତରୁ କଳାତ୍ମକ ବିଭବ ଥିବା ବହୁ ସଂଖ୍ୟକ ବୁଦ୍ଧ ଓ ବୋଧିସତ୍ତ୍ୱ ମୂର୍ତ୍ତି ସଂଗୃହୀତ ହୋଇଛି । ବୋଧିସତ୍ତ୍ୱ ପଦ୍ମପାଣିଙ୍କର ଏକ ବୃହତ୍ ମୂର୍ତ୍ତି ଯାଜପୁରଠାରେ ଆବିଷ୍କାର କରାଯାଇଛି । ଏହାର ଉଚ୍ଚତା ୧୫ ଫୁଟ ୮ଇଞ୍ଚ । ବୌଦ୍ଧ, ଖିଚିଙ୍ଗ୍ ଓ ସୋଲାମପୁରଠାରେ ମଧ୍ୟ ବୌଦ୍ଧ ଅବଶେଷ ଆବିଷ୍କୃତ ହୋଇଛି । ଲଳିତଗିରିର ଭାସ୍କର୍ଯ୍ୟ ଉପରେ ଗୁପ୍ତ-ଯୁଗୀୟ କଳା ପରମ୍ପରାର ଜୀବନ୍ତ ପ୍ରଭାବ ରହିଥିବାର ପରିଦୃଷ୍ଟ ହୋଇଛି ।

**ମନ୍ଦିର ସ୍ଥାପତ୍ୟ:**

ମନ୍ଦିରଗୁଡ଼ିକ ଭିତରେ ଓଡ଼ିଶୀ ସ୍ଥାପତ୍ୟର ସର୍ବୋତ୍ତମ ପରିପ୍ରକାଶ ଘଟିଥିଲା । ସେଥିମଧ୍ୟରୁ କେତେକ ଦେଶ ଭିତରେ ଥିବା ମନୋରମ ମନ୍ଦିରମାନଙ୍କ ଭିତରେ ଅନ୍ୟତମ । ଏହି ମନ୍ଦିର ମଧ୍ୟରୁ ତିନି ଗୋଟି – ଭୁବନେଶ୍ୱରସ୍ଥିତ ଲିଙ୍ଗରାଜ ମନ୍ଦିର (୧୧ଶ ଶତାବ୍ଦୀ), ପୁରୀସ୍ଥିତ ଜଗନ୍ନାଥ ମନ୍ଦିର (୧୨ଶ ଶତାବ୍ଦୀ) ଏବଂ କୋଣାର୍କର ସୂର୍ଯ୍ୟ ମନ୍ଦିର (୧୩ଶ ଶତାବ୍ଦୀ) ବହୁତ ଖ୍ୟାତିଲାଭ କରିଛି । ସ୍ୱତନ୍ତ୍ର ମନ୍ଦିର ନିର୍ମାଣ ଯୋଜନା, ଉତ୍ତୋଳନ ଓ ସୌନ୍ଦର୍ଯ୍ୟକରଣର ଉଲ୍ଲେଖନୀୟ ଧାରା ସମ୍ବଳିତ କଳିଙ୍ଗ ସ୍ଥାପତ୍ୟ ଶୈଳୀ ନାମରେ ଏକ ପୃଥକ ଶୈଳୀ ଏସବୁରେ ସମ୍ମିଳିତ ହୋଇଛି । ଏହି ପ୍ରକାର ମନ୍ଦିର ନିର୍ମାଣ ଶୈଳୀରେ ମୁଖ୍ୟତଃ ୨ଟି ଭାଗ ରହିଛି-ମୁଖ୍ୟ ମନ୍ଦିର ବା ପୀଠ ଏବଂ ସମ୍ମୁଖ ଦ୍ୱାର ମଣ୍ଡପ । ବିମାନ ବା ଦେଉଳ କୁହାଯାଉଥିବା ମୁଖ୍ୟ ମନ୍ଦିରରେ ଗର୍ଭଗୃହ ଥାଏ ଯେଉଁଥିରେ ମୂର୍ତ୍ତି ସ୍ଥାପିତ ହୋଇଥାଆନ୍ତି ଏବଂ ସମ୍ମୁଖ ଭାଗକୁ ଜଗମୋହନ କୁହାଯାଏ, ଯେଉଁଠାରେ ଭକ୍ତମାନଙ୍କ ସମାଗମ ହୋଇଥାଏ । ବର୍ଗକ୍ଷେତ୍ରୀୟ ଭିତ୍ତିଭୂମି ଉପରେ ବକ୍ରାକାରରେ ଥିବା ଅତ୍ୟୁଚ୍ଚ ଚୂଡ଼ା ଉପରେ ନିର୍ମିତ ମୁଖ୍ୟ ଦେଉଳକୁ ରେଖା ଦେଉଳ କୁହାଯାଏ । ସମ୍ମୁଖ ଭାଗଟି ଆୟତକ୍ଷେତ୍ର ଭିତ୍ତି ଉପରେ ନିର୍ମିତ ଓ ଏହା ଏକ ପୀଢ଼

ଦେଉଳ, ଏହାର ଛାତ ଉପରେ ପୀଢ଼ଗୁଡ଼ିକ ଥାଏ ଯାହାକି ଆନୁଭୂମିକ ପ୍ଲାଟ୍‌ଫର୍ମ ରୂପେ ପଛକୁ ଗଡ଼ାଣିଆ ହୋଇ ରହିଥାଏ ଏବଂ ପୀରାମିଡ଼ ଭଳି ବିଶାଳ ସଂରଚନା ହୋଇଥାଏ । ଯଦିଓ ଦୁଇଟିଯାକ ମନ୍ଦିରର ଦୁଇଟି ଭିନ୍ନ ସ୍ଥାପତ୍ୟକଳା ରହିଛି, ସେଗୁଡ଼ିକ ଏକ ଅକ୍ଷରେ ସ୍ଥାପିତ ଓ ଗୋଟିଏ ଧାଡ଼ିରେ ନିର୍ମିତ ହୋଇଛି ଏବଂ ସଂଯୋଗୀକୃତ ଭାବେ ଏକ ପୂର୍ଣ୍ଣାଙ୍ଗ ସ୍ୱରୂପ ପାଇଛି ।

ଏହି ପୁରାତନ ମନ୍ଦିର ନିର୍ମାଣ ଶୈଳୀର ଦ୍ୱିବିଧ ଢାଞ୍ଚାଗତ ସଂରଚନା ଭୁବନେଶ୍ୱରର ପର୍ଶୁରାମେଶ୍ୱର ମନ୍ଦିର (୭ମ ଶତାବ୍ଦୀ) ରେ ଦେଖିବାକୁ ମିଳେ । ଭରତେଶ୍ୱର-ଲକ୍ଷ୍ମଣେଶ୍ୱର ଶ୍ରେଣୀର ପୁରାତନ ମନ୍ଦିରଗୁଡ଼ିକରେ ଭୂମିକୁ ସ୍ପର୍ଶ କରିଥିବା ବକ୍ରାକାର ଶିଖର ଓ ଖମ୍ବରେ ନିର୍ମିତ ଆୟତାକାର ଜଗମୋହନ ରହିଛି । ମନ୍ଦିର କାନ୍ଥ ଉପରେ ଥବା ଭାସ୍କର୍ଯ୍ୟ ଏହାର ସାବଲୀଳତା ଓ ସୌନ୍ଦର୍ଯ୍ୟର ସ୍ୱାକ୍ଷର ବହନ କରେ । ଗଙ୍ଗ ରାଜତ୍ୱ କାଳରେ କଳିଙ୍ଗ ଶୈଳୀର ନିଖୁଣତା ଶୀର୍ଷ ସୋପାନରେ ପହଞ୍ଚିଥିଲା, ଯେତେବେଳେ କି ବର୍ଦ୍ଧିତ ପୂଜାପଦ୍ଧତି ପ୍ରକ୍ରିୟାରେ ଆବଶ୍ୟକତାକୁ ମେଣ୍ଟାଇବା ନିମନ୍ତେ ଆଉ ୨ଟି ଅଧିକ ସଂରଚନା (ନିର୍ମାଣ) ପୂର୍ବରୁ ଥିବା ଦ୍ୱିବିଧ ଢାଞ୍ଚା ସମ୍ବଳିତ ମନ୍ଦିର ସହ ଯୋଗ କରାଯାଇଥିଲା । ସେଗୁଡ଼ିକ ଥିଲା -ନାଟମନ୍ଦିର ବା ନାଟ ମଣ୍ଡପ ଓ ଭୋଗମଣ୍ଡପ । ଲିଙ୍ଗରାଜ ଓ ଜଗନ୍ନାଥ ମନ୍ଦିରରେ ଏହି ଚାରି ଭାଗରେ ନିର୍ମିତ ହୋଇଥିବା ସଂରଚନା ଏକ ସରଳରେଖାରେ ଦଣ୍ଡାୟମାନ ଓ ଏଥିରେ ମୁଖ୍ୟପୀଠର ଶିଖର ଉପରେ ଗୁରୁତ୍ୱ ଦିଆଯାଇଛି । ମାତ୍ର ଭକ୍ତମାନେ ନାଟମନ୍ଦିର ଓ ଭୋଗମଣ୍ଡପକୁ ଛାଡ଼ି ଜଗମୋହନର ପାର୍ଶ୍ୱଦ୍ୱାର ଦେଇ ପ୍ରବେଶ କରିଥାଆନ୍ତି ।

୭ମ ରୁ ୧୬ଶ ଶତାବ୍ଦୀ ମଧ୍ୟରେ ଓଡ଼ିଶାରେ ମନ୍ଦିର ନିର୍ମାଣ କାର୍ଯ୍ୟ ଅବିରତ ଭାବେ ଚାଲୁ ରହିଥିଲା । ଏହି ସମୟରେ ରାଜ୍ୟରେ ବିଭିନ୍ନ ଧାର୍ମିକ ସମ୍ପ୍ରଦାୟର ଶାସନ ଚାଲୁଥିବାରୁ ମନ୍ଦିର ତୋଳାରେ ସେମାନେ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ କଳାର ଆବଶ୍ୟକୀୟ ରୂପାନ୍ତରଣ ଆଣିଥିଲେ । ଭୁବନେଶ୍ୱରର ବୈତାଳ ମନ୍ଦିର ଓ ପ୍ରାଚୀ ଉପତ୍ୟକା ଚଉରାଶୀର ବରାହୀ ମନ୍ଦିରରେ ଥିବା ଅର୍ଦ୍ଧସ୍ତମ୍ଭାକାର ବିଶିଷ୍ଟ ଛାତ ଏକ ଭିନ୍ନ ଶ୍ରେଣୀୟ ମନ୍ଦିରର ଆଭାସ ଦିଏ, ଯାହାକୁ ଶିଳ୍ପଶାସ୍ତ୍ରମାନଙ୍କରେ ଖାଖର ଶ୍ରେଣୀର ମନ୍ଦିର ଭାବେ ବର୍ଣ୍ଣନା କରାଯାଇଛି । ପ୍ରଥମ ମନ୍ଦିରଟିର ଉପର ପାର୍ଶ୍ୱ ଏକ ଓଲଟ ନୌକା ସଦୃଶ ହୋଇଥିବାବେଳେ ଦ୍ୱିତୀୟ ମନ୍ଦିର ଉପର ପାର୍ଶ୍ୱଟି ଖିଲାଣ ଛାତ ସଦୃଶ ହୋଇଛି । ଉଭୟ ମନ୍ଦିରରେ ଯଥାକ୍ରମେ ଚାମୁଣ୍ଡା ଓ ବରାହୀ ଦେବୀ ପୂଜିତ ହୁଅନ୍ତି । ଗର୍ଭଗୃହର ଭିତର ପାର୍ଶ୍ୱ ଛାୟାକୃତି ଓ ମନ୍ଦିର ଗାତ୍ରରେ ସ୍ଥାପିତ ହୋଇଥିବା କଳାକୃତି ଶକ୍ତି ଉପାସନାର ପ୍ରମାଣ ଦିଏ ।

ଏତଦ୍‌ବ୍ୟତୀତ, ଅନ୍ୟ ଏକ ଶୈଳୀର ମନ୍ଦିର ରହିଛି, ଯାହାକି ସମଗ୍ର ଦେଶରେ ସମ୍ପୂର୍ଣ୍ଣ ଏକ ନୂତନ ଚିନ୍ତାଧାରାରେ ନିର୍ମାଣ କରାଯାଇଛି । ଏଗୁଡ଼ିକ ହେଲା ତନ୍ତ୍ର ବିଦ୍ୟାର ଚଉଷଠୀ ଯୋଗିନୀଙ୍କୁ ସମର୍ପିତ ବୃତ୍ତାକାର, ସମ୍ପୂର୍ଣ୍ଣ ଛାତବିହୀନ ନିର୍ମାଣ । ସମଗ୍ର ଦେଶରେ ଥିବା ପାଞ୍ଚଗୋଟି ଯୋଗିନୀ ପୀଠ ମଧ୍ୟରୁ ଦୁଇ ଗୋଟି ଓଡ଼ିଶାରେ ଅବସ୍ଥିତ । ତାହା ହେଲା ଭୁବନେଶ୍ୱର ନିକଟସ୍ଥ ହୀରାପୁର ଓ ବଲାଙ୍ଗିର ଜିଲ୍ଲାର ଟିଟିଲାଗଡ଼ ସବ୍‌ଡ଼ିଭିଜନର ରାଣୀପୁର-ଝରିଆଲର ଚଉଷଠୀ ଯୋଗିନୀ ମନ୍ଦିରଦ୍ୱୟ । ଏହି ମନ୍ଦିରଦ୍ୱୟର ମଧ୍ୟସ୍ଥଳରେ ଭୈରବ ମୂର୍ତ୍ତି ସ୍ଥାପିତ ହୋଇଥିବା ବେଳେ ଚତୁଃପାର୍ଶ୍ୱରେ ଯୋଗିନୀମାନେ ପ୍ରତ୍ୟେକ ଗୋଟିଏ ଲେଖାଏଁ କାନ୍ଥ ଖୋଲରେ ସ୍ଥାନିତ ହୋଇଛନ୍ତି । ହୀରାପୁରଠାରେ ଯୋଗିନୀମାନଙ୍କର ମୂର୍ତ୍ତି ଅତ୍ୟନ୍ତ କଳାତ୍ମକ ଓ ସେମାନଙ୍କର କେଶସଜ୍ଜା ପରସ୍ପରଠାରୁ ସମ୍ପୂର୍ଣ୍ଣ ଭିନ୍ନ । ହୀରାପୁରଠାରେ ଯୋଗିନୀମାନଙ୍କ ନିର୍ମାଣ ଅତୀବ ଚମତ୍କାର ଭାବେ ସମ୍ପାଦନ କରାଯାଇଛି ।

ଅବଶ୍ୟ ଦଶମ ଓ ଏକାଦଶ ଶତାବ୍ଦୀରେ ଓଡ଼ିଶାରେ ସୋମବଂଶୀ ରାଜମାନଙ୍କ ପୃଷ୍ଠପୋଷକତାରେ କଳିଙ୍ଗ ସ୍ଥାପତ୍ୟ ଶୈଳୀ ବହୁଳ ଭାବରେ ସର୍ବତ୍ର ପ୍ରଚଳିତ ତଥା ପ୍ରସାରିତ ହୋଇଥିଲା । ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିର (୧୦ମ ଶତାବ୍ଦୀ)କୁ ଓଡ଼ିଶୀ ମନ୍ଦିର ସ୍ଥାପତ୍ୟର ଏକ ମଣି ରୂପେ ଗ୍ରହଣ କରାଯାଏ ଏବଂ ଭାରତବର୍ଷର ସବୁଠାରୁ

ଅଧିକ ସୌନ୍ଦର୍ଯ୍ୟମୟୀ ମନ୍ଦିରମାନଙ୍କ ଭିତରେ ଏହା ଅନ୍ୟତମ । ସମ୍ମୁଖ ଭାଗରେ ଏକ ଅତି ସୁନ୍ଦର ମକର ତୋରଣ ଓ ରମଣୀୟ ପରିସର ମଧ୍ୟରେ ଏହା ଦଣ୍ଡାୟମାନ । ଏହି ମନ୍ଦିର ଉପରୁ ତଳ ପର୍ଯ୍ୟନ୍ତ ଅତି କମନୀୟ ଭାବେ ସଜ୍ଜିତ ହୋଇଛି । ଖୁବ୍ ହାଲୁକା ଓ ଛନ୍ଦୋବଦ୍ଧ ଭାବରେ ଗଠିତ ରେଖା ଶିଖର ସୌନ୍ଦର୍ଯ୍ୟରେ ଅତୁଳନୀୟ । ପୀଢ଼ ଦେଉଳର ସାମଞ୍ଜସ୍ୟ ଥିବା ଏହାର ଜଗମୋହନ ଉପରେ ଗୋଟିଏ କଳସ ସ୍ଥାପନ କରାଯାଇଛି । 'ରାଜାରାଣୀଆ' ନାମକ ଏକ ପ୍ରକାର ପ୍ରସ୍ତରରୁ ନାମିତ ହୋଇଥିବା ରାଜାରାଣୀ ମନ୍ଦିରଟି (୧୧ଶ ଶତାବ୍ଦୀ) ପରବର୍ତ୍ତୀ ସୋମବଂଶୀ କଳା ସ୍ଥାପତ୍ୟର ଏକ ଚମତ୍କାର ନିଦର୍ଶନ । ବିସ୍ତୀର୍ଣ୍ଣ ସବୁଜ କ୍ଷେତର ଏକ ମନୋରମ ପରିବେଶ ମଧ୍ୟରେ ଅବସ୍ଥିତ ଏହି ମନ୍ଦିରର ନିର୍ମାଣ ଶୈଳୀରେ ମାଧୁର୍ଯ୍ୟ ଓ ଲାବଣ୍ୟ ପ୍ରକଟିତ କଳାକୃତି ଓ ଅଳଙ୍କରଣ ରହିଛି । ମନ୍ଦିର ଚାରିପଟେ ଥିବା କ୍ଷୁଦ୍ରକାୟ ମନ୍ଦିରପୁଞ୍ଜ ଖଜୁରାହୋ ମନ୍ଦିରର ସ୍ମୃତିଚାରଣ କରେ । ବ୍ରହ୍ମେଶ୍ୱର ମନ୍ଦିର (୧୧ଶ ଶତାବ୍ଦୀ) ଓଡ଼ିଶୀ ଶୈଳୀ ବୈଶିଷ୍ଟ୍ୟର ନିରବଚ୍ଛିନ୍ନ ଧାରା । ଭୁବନେଶ୍ୱରସ୍ଥିତ ବିଶାଳ ଲିଙ୍ଗରାଜ ମନ୍ଦିର (୧୧ଶ ଶତାବ୍ଦୀ) ଓଡ଼ିଶୀ ସ୍ଥାପତ୍ୟର ନିଚ୍ଛକ ପ୍ରତିଫଳନ । ମନ୍ଦିର ସ୍ଥାପତ୍ୟର ସମସ୍ତ ବୈଶିଷ୍ଟ୍ୟ ସମ୍ପୂର୍ଣ୍ଣଭାବେ ବିକଶିତ ଓ ନିଖୁଣ ଭାବେ ନିଷ୍ପାଦିତ ହୋଇଥିବା ଏହି ମନ୍ଦିର ଭାରତର ସର୍ବୋତ୍ତମ ମନ୍ଦିରମାନଙ୍କ ମଧ୍ୟରେ ଅନ୍ୟତମ । ଜଗମୋହନ, ନାଟମନ୍ଦିର, ଭୋଗମଣ୍ଡପ, ୪୫ ମିଟର ଉଚ୍ଚତା ବିଶିଷ୍ଟ ଶିଖର ଥାଇ ଏହି ବିଶାଳ ମନ୍ଦିର ଚତୁଃପାର୍ଶ୍ୱରେ ଅନେକ କ୍ଷୁଦ୍ରକାୟ ମନ୍ଦିର ରହିଛି । ଏଗୁଡିକ ଏହି ମନ୍ଦିରର ମହତ୍ତ୍ୱ ଓ ଗରିମା ବୃଦ୍ଧି କରୁଛନ୍ତି । ଭୁବନେଶ୍ୱରରେ ବିଭିନ୍ନ ଶ୍ରେଣୀର ବହୁ ସଂଖ୍ୟକ ମନ୍ଦିର ରହିଛି ଯାହାକୁ ଆମେ ମନ୍ଦିରର ଏକ ଯଥାର୍ଥ ସଂଗ୍ରହାଳୟ କହିପାରିବା ।

ପୁରୀଠାରେ ଥିବା ଜଗନ୍ନାଥ ମନ୍ଦିର ଓଡ଼ିଶାର ଗଙ୍ଗରାଜାମାନଙ୍କର ଏକ କୀର୍ତ୍ତି । ଏକ ଉଚ୍ଚ ପ୍ଲାଟ୍‌ଫର୍ମରେ ଦଣ୍ଡାୟମାନ ଏହି ବିଶାଳକାୟ ସୌଧ ସିଂହଦ୍ୱାର ପର୍ଯ୍ୟନ୍ତ ୨୨ଟି ପାବଚ୍ଛ ଦ୍ୱାରା ସଂଯୁକ୍ତ । ପ୍ରାଚୀନ ମନ୍ଦିର ସ୍ଥାପତ୍ୟର ପୁଞ୍ଜିଭୂତ ଅନୁଭୂତିର ଫଳ ଏଠାରେ ପରିପ୍ରକାଶ ହୋଇଛି । ସମଗ୍ର ମୁଖ୍ୟ ମନ୍ଦିରଟି ମୋଟା ଆସ୍ତରଣ ଦ୍ୱାରା ଆଚ୍ଛାଦିତ ହୋଇଥିବାରୁ ଏହା 'ହ୍ୱାଇଟ୍ ପାଗୋଡ଼ା' ନାମରେ ଖ୍ୟାତ । ପ୍ରସ୍ତର ଖୋଦେଇ କାରୁକାର୍ଯ୍ୟ ଲୋକଲୋଚନକୁ ଆଣିବା ପାଇଁ ଇତି ମଧ୍ୟରେ ଭାରତୀୟ ପ୍ରତ୍ନତାତ୍ତ୍ୱିକ ସଂସ୍ଥା ଦ୍ୱାରା ଏହି ଆସ୍ତରଣକୁ ହଟାଇ (ଛଡ଼ାଇ) ଦିଆଯାଇଛି ।

ଅଶ୍ୱମାନଙ୍କ ଦ୍ୱାରା ଚାଳିତ ରଥାକୃତି ପରିକଳ୍ପିତ କୋଣାର୍କର ସୂର୍ଯ୍ୟ ମନ୍ଦିର ଗଙ୍ଗ କଳାଚାତୁର୍ଯ୍ୟର ସର୍ବୋତ୍କୃଷ୍ଟ ନିଦର୍ଶନ ଏବଂ ଭାରତୀୟ ହିନ୍ଦୁ ସ୍ଥାପତ୍ୟର ସର୍ବବୃହତ୍ କୀର୍ତ୍ତି । ଏହି ରଥରେ ୨୪ଟି ଚକ୍ର ଓ ୭ଟି ଅଶ୍ୱ ରହିଛି । ଏହି ରଥର ଚକ୍ରଗୁଡ଼ିକ କଳାନୈପୁଣ୍ୟର ଶେଷ ସୋପାନରେ ପହଞ୍ଚିଛି । ବିଶାଳକାୟ ଆକୃତି ସତ୍ତ୍ୱେ ମନ୍ଦିରଟି ନିଖୁଣ ଓ ସମାନୁପାତିକ ଭାବେ ନିର୍ମିତ ହୋଇଛି । ଏହାର କାରିଗରି କୌଶଳ ପାଇଁ ଏହା ବିଶ୍ୱରେ ପ୍ରସିଦ୍ଧି ଲାଭ କରିଛି । ରବୀନ୍ଦ୍ରନାଥ ଠାକୁର କୋଣାର୍କ ଉପରେ କହିଛନ୍ତି – ''ଏଠାରେ ମଣିଷର ଭାଷା ପ୍ରସ୍ତରର ଭାଷା ଦ୍ୱାରା ପରାଜିତ ହୋଇଛି ।''

**ମନ୍ଦିର ଭାସ୍କର୍ଯ୍ୟ:**

ମନ୍ଦିର ଭାସ୍କର୍ଯ୍ୟ ମୋଟାମୋଟି ଭାବେ ଦୁଇ ଭାଗରେ ବିଭକ୍ତ, ଗୋଟିଏ ହେଉଛି ସଂସ୍କୃତିଭିତ୍ତିକ ମୂର୍ତ୍ତି ଓ ଅନ୍ୟଟି ବିଭିନ୍ନ ବିଷୟସମ୍ବଳିତ ସୁଶୋଭିତ କାରୁକାର୍ଯ୍ୟ । ପ୍ରଥମ ବିଭାଗରେ ଶିବ ମନ୍ଦିରର ବାହାର କାନ୍ଥରେ ଥିବା ଗଣେଶ, କାର୍ତ୍ତିକେୟ ଓ ଦୁର୍ଗାଙ୍କ ମୂର୍ତ୍ତି, ବିଷ୍ଣୁ ମନ୍ଦିରର ବାହ୍ୟପାର୍ଶ୍ୱରେ ଥିବା ବରାହ, ତ୍ରିବିକ୍ରମ, ନୃସିଂହ ଏବଂ ଦଶାବତାର, ନିର୍ଦ୍ଦିଷ୍ଟ କୋଣରେ ଥିବା ଦଶଦିଗପାଳ, ସ୍ଥିରୀକୃତ ସ୍ଥାନରେ ଥିବା ଦିଗଚାରିଣୀ ଏବଂ ବେତାଳଗଣ ଓ ପ୍ରାୟ ସମସ୍ତ ମନ୍ଦିରର ସମ୍ମୁଖ ଭାଗ ଦ୍ୱାରବନ୍ଧ ଉପରେ ଧାଡ଼ିରେ ରହିଥିବା ଅଷ୍ଟଗ୍ରହ ବା ନବଗ୍ରହ ଏବଂ ଏହି ନବଗ୍ରହଙ୍କ ଧାଡ଼ି ଉପରେ ଥିବା ଗଜଲକ୍ଷ୍ମୀ । ଏତଦ୍‌ବ୍ୟତୀତ, ଦେବଦେବୀଗଣ ଏବଂ ଧାର୍ମିକ ଉପାଖ୍ୟାନଗୁଡିକର ଚିତ୍ରଣ ଏକ ଧର୍ମୀୟ ବାତାବରଣ ସୃଷ୍ଟି କରିବାରେ ସହାୟକ ହୁଅନ୍ତି । ଯଦିଓ ଗୋଟିଏ ମନ୍ଦିରରେ ପୂଜା ପାଉଥିବା

ମୂର୍ତ୍ତିଗୁଡ଼ିକ ଅଧିକ ସଂଖ୍ୟାରେ ଥାଆନ୍ତି, ସେମାନେ ଗୋଟିଏ ଧର୍ମଧାରା ମଧ୍ୟରେ ସୀମିତ ନ'ଥାନ୍ତି । ଅର୍ଦ୍ଧନାରୀଶ୍ୱର ଏବଂ ଗନ୍ଧରାଡ଼ିର ହରିହର ମୂର୍ତ୍ତିରେ ଧର୍ମୀୟ ସମନ୍ୱୟ ପ୍ରତିଫଳିତ । ଏଥିରୁ ସ୍ଥପତିମାନଙ୍କର ଉଚ୍ଚକୋଟୀର କଳ୍ପନା ଶକ୍ତି ବିଷୟରେ ଜଣାପଡେ । ବିଭିନ୍ନ ପ୍ରକାର ଚିନ୍ତାଧାରାପ୍ରସୂତ ଭୈରବ ଓ ଦୁର୍ଗା ମୂର୍ତ୍ତି ମନ୍ଦିରମାନଙ୍କରେ ଦେଖିବାକୁ ମିଳିଥାନ୍ତି ।

ସୁଶୋଭିତ ସ୍ଥାପତ୍ୟଗୁଡ଼ିକ ଭିତରେ ପୁରୁଷ ଓ ନାରୀ ପ୍ରତିମୂର୍ତ୍ତି, କାମୋଦ୍ଦୀପକ ଦୃଶ୍ୟ, ଗନ୍ଧର୍ବ, ନାଗ, ଯକ୍ଷ, କିନ୍ନର, ପୁରାଣବର୍ଣ୍ଣିତ ଅଦ୍ଭୁତ ପ୍ରାଣୀ, ପ୍ରହେଳିକାମୟ ଛବି, ସାମରିକ ଓ ରାଜଦରବାର ସମ୍ବନ୍ଧୀୟ ଦୃଶ୍ୟ, ଧର୍ମନିରପେକ୍ଷ ଚିତ୍ର, ଲୋକକଥା ଓ କାହାଣୀ, ମୋଡ଼ା କାଗଜରେ ରହିଥିବା ନାମ ତାଲିକା, ପୁଷ୍ପ ଓ ଜ୍ୟାମିତିକ ଚିତ୍ର, ଚୈତ୍ୟ, ତୋରଣ, ପଦ୍ମ ପଦକ, ବୃକ୍ଷଲତା ଓ ଅନ୍ୟାନ୍ୟ ବିଭୂଷିତ ଚିତ୍ର ଆଦି ଦେଖିବାକୁ ମିଳିଥାଏ ।

ଓଡ଼ିଶା ମନ୍ଦିର ଭାସ୍କର୍ଯ୍ୟର କେତେକ ସୂକ୍ଷ୍ମ ଚାରୁକଳା ମୁକ୍ତେଶ୍ୱର, ରାଜାରାଣୀ ଓ ଲିଙ୍ଗରାଜ ମନ୍ଦିରରେ ପରିଦୃଷ୍ଟ ହୁଏ । ମନ୍ଦିର କାନ୍ଥଗୁଡ଼ିକରେ ଯୌବନସୁଲଭ ଚିତ୍ରଗୁଡ଼ିକୁ ଅତ୍ୟନ୍ତ ନିଖୁଣ ଭାବେ ଚିତ୍ରିତ କରାଯାଇଛି । ନିହାଣ ମୁନରେ ଖୋଦେଇ ହୋଇ ପ୍ରକାଶ ପାଉଥିବା ସେମାନଙ୍କର ସ୍ମିତହାସ୍ୟ ସମୟର ପ୍ରବହମାନ ଗତି ଓ ଅବକ୍ଷୟର ଧାରାକୁ ପରାସ୍ତ କରିଛି । ମନ୍ଦିର କଳାର ଏକ ମହତ୍ତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟ ହେଉଛି ମନ୍ଦିରର ବାହାର ପାର୍ଶ୍ୱରେ ଚିତ୍ରିତ ହୋଇଥିବା କାମୋଦ୍ଦୀପକ ଭାସ୍କର୍ଯ୍ୟ ଯାହା ଦର୍ଶାଏ ଯେ, ଧର୍ମ କେବେହେଲେ ସାଧାରଣ ଜୀବନଠାରୁ ଅଲଗା ହୋଇ ପାରିବ ନାହିଁ । ଏହାର ଅର୍ଥ : ଜୀବନ ହେଉଛି ମାୟାମୋହର ଗନ୍ତାଘର ଏବଂ କାମନା ଆତ୍ମମାନଙ୍କୁ ଜୀବନ ଓ ମୃତ୍ୟୁ ଚକ୍ର ମଧ୍ୟରେ ବାନ୍ଧି ରଖିଛି । ଗାୟନ ଓ ନୃତ୍ୟରତା ମହିଳାମାନେ ମଧ୍ୟ ମନ୍ଦିର କଳାରେ ସ୍ଥାନ ପାଇଛନ୍ତି ଏବଂ ସେଗୁଡ଼ିକର ସ୍ଥାପତ୍ୟକଳାର ମାନ ଅତି ଉଚ୍ଚକୋଟୀର । ବୃହତ୍‌କାୟ ହସ୍ତୀ, ଅଶ୍ୱ ଓ ସିଂହ କୋଣାର୍କ ମନ୍ଦିର ପରିସରରେ ପ୍ରାଧାନ୍ୟ ଲାଭ କରିଛନ୍ତି ।

**ଅନ୍ୟାନ୍ୟ ଭାସ୍କର୍ଯ୍ୟ:**

ଓଡ଼ିଶାର ଚାରିଆଡ଼େ ବହୁ ସଂଖ୍ୟକ ଭାସ୍କର୍ଯ୍ୟର ଭଣ୍ଡାର ବିକ୍ଷିପ୍ତଭାବେ ରହିଛି । ଏକ ବିରାଟ ପ୍ରସ୍ତରରୁ ଖୋଦିତ ହୋଇ ଅଧା ବାହାରି ଆସିଥିବା ଏକ ହସ୍ତୀର ମୂର୍ତ୍ତି ରହିଛି ଯେଉଁଠାରେ ଅଶୋକ ତାଙ୍କର ଶିଳାଲେଖମାନ ଲେଖାଇଥିଲେ । ପୁରୀର ଜଗନ୍ନାଥ ମନ୍ଦିରର ପ୍ରାଙ୍ଗଣରେ କଳା ଗ୍ରାନାଇଟ୍‌ରେ ନିର୍ମିତ ଏକ ବିଶାଳକାୟ ନୃସିଂହ ମୂର୍ତ୍ତି ସ୍ଥାନିତ ହୋଇଛି । ସୁନ୍ଦର କଳାକୌଶଳରେ ନିର୍ମିତ ଏହି ଚମତ୍କାର ମୂର୍ତ୍ତିଟି ଭଗବାନଙ୍କର ଭୟଙ୍କର ମୁଦ୍ରାକୁ ପରିପ୍ରକାଶ କରୁଛି । ସିଂହଦ୍ୱାର ଓଡ଼ିଶୀ କଳା ଓ ସ୍ଥାପତ୍ୟର ମହତ୍ତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟର ପ୍ରମାଣ । ମନ୍ଦିରର ଦ୍ୱାରଦେଶରେ ସିଂହମାନେ ସ୍ଥାପିତ ହୋଇଛନ୍ତି, ସେଥିପାଇଁ ମନ୍ଦିରର ଦ୍ୱାରକୁ ସିଂହଦ୍ୱାର ବୋଲି କୁହାଯାଉଛି । ସିଂହମାନେ ସ୍ୱାଭାବିକ ଭାବେ ନିର୍ମାଣ ହୋଇନାହାନ୍ତି । ସେମାନଙ୍କର ବଡ଼ ତୀକ୍ଷ୍ଣ ନାସା ଓ ମୋଟା ନିଶ ରହିଛି । ଅନ୍ୟତ୍ର ହସ୍ତୀ ଉପରେ ସିଂହ ବସିଥିବାର ଦେଖାଯାଏ ଏବଂ ଏହା ବିଷୟ ଉପରେ ଜୀବାତ୍ମାର ବିଜୟ ବୋଲି ପ୍ରତୀକାତ୍ମକ ଭାବେ ଦର୍ଶାଯାଇଛି । ଏଥିରୁ ଏହା ପ୍ରମାଣିତ ଯେ, ଓଡ଼ିଶାର ମୁଖ୍ୟ ମନ୍ଦିରଗୁଡ଼ିକ ଭାରତର ଅନ୍ୟ କୌଣସି ମନ୍ଦିର ତୁଳନାରେ ଅଧିକ ଉଚ୍ଚମାନର ମହତ୍ତ୍ୱ ପ୍ରତିପାଦନ କରନ୍ତି ଏବଂ ଏଗୁଡ଼ିକ ଅତୁଳନୀୟ । ଓଡ଼ିଶୀ ଭାସ୍କର୍ଯ୍ୟର ଐଶ୍ୱର୍ଯ୍ୟ, ମାଧୁର୍ଯ୍ୟ ଓ ସୌନ୍ଦର୍ଯ୍ୟ କୁତ୍ରାପି ଦେଖିବାକୁ ମିଳେ ନାହିଁ ।

**ହସ୍ତଶିଳ୍ପ:**

କାରିଗରମାନଙ୍କର ସୃଜନଶୀଳତା ଓ କୌଶଳକୁ ପ୍ରଦର୍ଶନ କରୁଥିବା ହସ୍ତଶିଳ୍ପ ନିମନ୍ତେ ଓଡ଼ିଶା ପ୍ରସିଦ୍ଧ। ଓଡ଼ିଶାର ପିତ୍ତଳ କାମ, ରୂପାକାମ, ଟେରାକୋଟା ସାମଗ୍ରୀ ଓ ଚାନ୍ଦୁଆ କାମ ଇତ୍ୟାଦି ତା'ର କଳାତ୍ମକ ଉତ୍କର୍ଷର ପ୍ରମାଣ ଦିଏ ।

**କଂସାପିତ୍ତଳ କାମ:**

ପିତ୍ତଳ ଓ କଂସା ବାସନ ଉପରେ ସୂକ୍ଷ୍ମ ଖୋଦେଇ, ବ୍ରୋଞ୍ଜ ଚୁଡ଼ି ଓ ପାତ୍ର ଓଡ଼ିଶୀ କଳାର ଗୁରୁତ୍ୱପୂର୍ଣ୍ଣ ଦିଗ । ଧାତୁନିର୍ମିତ ଦ୍ରବ୍ୟ ବିଶେଷକରି ପିତ୍ତଳ ଜିନିଷ ଓଡ଼ିଶାର

ଘରେ ଘରେ ମର୍ଯ୍ୟାଦାର ସହ ସ୍ଥାନ ପାଏ । ଠାକୁର ପୂଜା କଲାବେଳେ ସୁନ୍ଦର ସୁନ୍ଦର ଦୀପ ଓ ଦୀପରୁଖା ବ୍ୟବହୃତ ହୁଏ । ଅଧିକାଂଶ ଘରେ ଧାନ ଚାଉଳ ମାପିବା ପାଇଁ ପିତ୍ତଳ ନିର୍ମିତ ମାଣ ବ୍ୟବହାର କରାଯାଏ । କାରିଗରମାନେ ପିତ୍ତଳରେ ହାତୀଘୋଡ଼ା ତିଆରି କରନ୍ତି ଓ ସେଗୁଡ଼ିକୁ ସୂକ୍ଷ୍ମ ଆକାରରେ ସଜ୍ଜିତ କରନ୍ତି । ପାନ ଖାଉଥିବା ଲୋକମାନଙ୍କ ପାଇଁ ତିଆରି ହୋଇଥିବା ପିତ୍ତଳ ପିକ ଦାନି ଉଭୟ ଦରକାରୀ ଓ ଶୋଭାବର୍ଦ୍ଧକ । ପିତ୍ତଳ ଓ କଂସାରେ ନିର୍ମିତ ଘରକରଣା ସାମଗ୍ରୀ ଓ ବାସନ ବିଭିନ୍ନ ଆକାର ପ୍ରକାରର ହୋଇଥାଏ । ଓଡ଼ିଶାର ପିତ୍ତଳ ସାମଗ୍ରୀଗୁଡିକ କାରିଗରମାନଙ୍କର କଳାକୌଶଳ ଓ ନୂତନ ସର୍ଜନା ନିମନ୍ତେ ସେମାନଙ୍କର ଆଗ୍ରହକୁ ପ୍ରତିପାଦିତ କରିଥାଏ ।

**ରୂପା ଓ ତାରକସୀ କାମ:**

ଓଡ଼ିଶାର ରୂପାକାମ ସର୍ବତ୍ର ଖ୍ୟାତିଲାଭ କରିଛି । ବିଶେଷକରି ଏହାର ତାରକସୀ କାମ କଳାତ୍ମକ ଉତ୍କର୍ଷର ନୂତନ ଉଦାହରଣ ସୃଷ୍ଟି କରିଛି ଯାହା ଭାରତର ଅନ୍ୟ ସ୍ଥାନମାନଙ୍କରେ ଦେଖିବାକୁ ବିରଳ । ଅତ୍ୟନ୍ତ ନମନୀୟ ହୋଇଥିବା ରୂପା ତାରକୁ ଖୁବ୍ ସୂକ୍ଷ୍ମ ରୂପରେ ପରିବର୍ତ୍ତିତ କରାଯାଇଥାଏ । ବିଭିନ୍ନ ପ୍ରକାରର ପଶୁପକ୍ଷୀ, ସିନ୍ଦୁର ଫରୁଆ ଭଳି ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀଗୁଡ଼ିକ ମଧ୍ୟ ରୂପାତାରରେ ନିର୍ମିତ ହୁଏ । ତାରକସୀ ଗହଣା ବିଶେଷତଃ ବକ୍ଷସ୍ଥଳ ବସ୍ତ୍ର ଆବୃତ କରିବା ପାଇଁ ପିଞ୍ଜୁ ଭଳି ଏକ ପ୍ରକାର ଅଳଙ୍କାର ଓ କାନଫୁଲ ଆଦି ଭାରତୀୟ ମହିଳାମାନଙ୍କ ମଧ୍ୟରେ ଖୁବ୍ ପ୍ରସିଦ୍ଧ । ରୂପାକାମରେ ମହାଭାରତର ଦୃଶ୍ୟ ମଧ୍ୟ ଚିତ୍ରଣ କରାଯାଏ । ଅର୍ଜୁନଙ୍କ ରଥକୁ ଶ୍ରୀକୃଷ୍ଣ ସାରଥୀଭାବେ ଚାଳନା କରିବା ଦୃଶ୍ୟଟି ରୂପାକାମ ମଧ୍ୟରେ ଅତୀବ ଆକର୍ଷଣୀୟ । ରଥ ଚକଗୁଡ଼ିକର କାମ ଏତେ ଟିକିନିଖିଭାବେ କରାଯାଇଛି ଯେ ଦର୍ଶକ ଏହାକୁ ଦେଖି ବିମୁଗ୍ଧ ହୁଏ । ରଥର ସୌନ୍ଦର୍ଯ୍ୟ, ଅଶ୍ୱମାନଙ୍କର ଗର୍ବିତ ଠାଣି ଓ ଜୀବନ୍ତ ଛବି ଏହି ରୌପ୍ୟ ସାମଗ୍ରୀର ମର୍ଯ୍ୟାଦା ବୃଦ୍ଧି କରେ ।

**ଟେରାକୋଟା ଓ ମୃଣ୍ମୟ ସାମଗ୍ରୀ:**

ଓଡ଼ିଶାର କୁମ୍ଭକାରମାନେ ଏବେ ମଧ୍ୟ ବିଭିନ୍ନ ଧାର୍ମିକ ଓ ସାମାଜିକ କାର୍ଯ୍ୟକ୍ରମ ପାଇଁ ମାଟିରେ ପାତ୍ର ଗଢ଼ନ୍ତି । ସେଗୁଡ଼ିକ ବିଭିନ୍ନ ଆକାର ପ୍ରକାର ହୋଇଥାଏ ଏବଂ ତାହା ଉପରେ ମାଛ, ଫୁଲ ଓ ଜ୍ୟାମିତିକ ନକ୍ସା ଆଦି ଅଙ୍କାଯାଇଥାଏ । ଧାର୍ମିକ ପର୍ବପର୍ବାଣୀ ସମୟରେ ସ୍ଥାନୀୟ ଲୋକଙ୍କ ଚାହିଦା ପୂରଣ ନିମନ୍ତେ ଟେରାକୋଟା ହାତୀ ଓ ଘୋଡ଼ା ତିଆରି କରାଯାଇଥାଏ । ରୋଗ ଓ ବିପଦରୁ ରକ୍ଷା ପାଇବା ସକାଶେ ସେଗୁଡ଼ିକୁ ଗ୍ରାମଦେବତୀଙ୍କ ନିକଟରେ ଅର୍ପଣ କରାଯାଏ । ଏଗୁଡ଼ିକର ଉଚ୍ଚତା ୬ ଇଞ୍ଚରୁ ୩ ଫୁଟ୍ ପର୍ଯ୍ୟନ୍ତ ହୋଇଥାଏ । କୁମ୍ଭାର ମଧ୍ୟ ମାଟିତିଆରି ଖେଳନା ଓ ମଣିଷର ଆକର୍ଷଣୀୟ ମୂର୍ତ୍ତି ତିଆରି କରନ୍ତି । ସେଗୁଡ଼ିକ ଜୀବନ୍ତ ଦିଶିବା ସକାଶେ ଆବଶ୍ୟକୀୟ କୌଶଳ ପ୍ରୟୋଗ କରିଥାନ୍ତି । ଟେରାକୋଟା କଣ୍ଢେଇ ଓଡ଼ିଶାର ପ୍ରତ୍ୟେକ ସ୍ଥାନରେ ତିଆରି ହୁଏ । କଣ୍ଢେଇଗୁଡ଼ିକ ସାଦାସିଧା ଶୈଳୀରେ ତିଆରି ହୁଅନ୍ତି । ସେଥିରେ ସ୍ଥାନୀୟ ଅଞ୍ଚଳର ବିଶେଷତା ଥାଏ ।

**ସବାଇ ଘାସ ଓ ବେତ କାମ :**

ମହିଳା ଗୋଷ୍ଠୀ ଦ୍ୱାରା ସବାଇ ଘାସରେ ଝୁଡ଼ି, ହାତପଙ୍ଖା ଓ ମେଜ ଉପରେ ବ୍ୟବହୃତ ତଳେଇ ବୁଣାଯାଏ । ସବାଇ ଘାସରୁ ମଶିଣା ମଧ୍ୟ ତିଆରି କରାଯାଏ । ଏସବୁ ସାମଗ୍ରୀର ଚାହିଦା ଏବେ ବଢ଼ିଯାଇଛି ଏବଂ ଏଥିରୁ ଏହାର ସୌନ୍ଦର୍ଯ୍ୟ, ଉପଯୋଗିତା ଓ ଦୀର୍ଘସ୍ଥାୟୀତ୍ୱ ପ୍ରମାଣିତ ହୁଏ । ଝୁଡ଼ି ଓ ଅନ୍ୟାନ୍ୟ ଆସବାବପତ୍ର ବେତରେ ମଧ୍ୟ ବୁଣାଯାଇଥାଏ ।

**ଚାନ୍ଦୁଆ କାମ :**

ପିପିଲିର ଦର୍ଜୀମାନଙ୍କ ଦ୍ୱାରା ପ୍ରସ୍ତୁତ କରାଯାଉଥିବା ଚାନ୍ଦୁଆ କାମର ଅନେକ ଚାହିଦା ରହିଛି । ପର୍ବପର୍ବାଣୀରେ ବ୍ୟବହାର କରିବା ପାଇଁ ଚାନ୍ଦୁଆରେ ବହୁତ ବଡ଼ ଆକାରର ଛତାମାନ ତିଆରି କରାଯାଏ । ବିସ୍ତୃତ ପ୍ରାନ୍ତରରେ ଏହି ଛତାଗୁଡ଼ିକ ବ୍ୟବହୃତ ହୁଏ ଯାହାକି କୌଣସି ସମାବେଶର ମାଧୁର୍ଯ୍ୟ ଓ ମହତ୍ତ୍ୱ ବଢ଼ାଇଥାଏ । ଚାନ୍ଦୁଆରୁ

ହୃଦୟାକୃତି ପଙ୍ଖା, ଛୋଟବଡ଼ ଛତ୍ରୀ ଏବଂ କାନ୍ଥ ଝାଲର ମଧ୍ୟ ପ୍ରସ୍ତୁତ କରାଯାଏ । ଦର୍ଜୀମାନେ ଗାଢ଼ ରଙ୍ଗର କପଡ଼ାରୁ ପଶୁ, ପକ୍ଷୀ, ପୁଷ୍ପ ଓ ଜ୍ୟାମିତିକ ନକ୍ସା ସବୁ କାଟି ବାହାର କରନ୍ତି ଏବଂ ଏଗୁଡ଼ିକ ଅନ୍ୟ ଖଣ୍ଡେ କପଡ଼ା ଉପରେ ରଖି ସମାନୁପାତିକ ଭାବେ ମିଶାଇ ସିଲେଇ କରି ଅତ୍ୟନ୍ତ ମନଲୋଭା କରିଥାନ୍ତି । ଉଜ୍ଜ୍ୱଳ ହଳଦିଆ, ଧଳା, ସବୁଜ ନୀଳ, ନାଲି ଓ କଳା ରଙ୍ଗକୁ ସୁସଙ୍ଗତ ଭାବେ ପ୍ରସ୍ତୁତ କରାଯାଏ ଯାହା ଦର୍ଶକର ଆଖିକୁ ଚମକାଇ ଦିଏ ଓ ଧର୍ମୀୟ ପରିବେଶକୁ ଅଧିକ ଆକର୍ଷଣୀୟ କରେ । ଚାନ୍ଦୁଆରେ ବିଭିନ୍ନ ଆକାର ପ୍ରକାରର ବ୍ୟାଗ୍ ମଧ୍ୟ ତିଆରି କରାଯାଏ । ଚାନ୍ଦୁଆ ଛତ୍ରୀ ଓ ''ତରାସ'' (ମୁନିଆ ବାଡ଼ି ଉପରେ ଆଶ୍ରା କରି ଠିଆ ହୋଇଥିବା ହୃଦୟାକୃତି କାଷ୍ଠ ସଂରଚନା ଉପରେ ଆବୃତ କରିଥିବା ଚାନ୍ଦୁଆ କାମ) ଧର୍ମୀୟ ଶୋଭାଯାତ୍ରାକୁ ଅଧିକ ରଙ୍ଗୀନ୍ କରି ଗଢ଼ିତୋଳେ । ବିବାହ ଉତ୍ସବଗୁଡ଼ିକରେ ମଞ୍ଚ ଉପରେ ସଜ୍ଜା ହୋଇଥିବା ବଡ଼ ବଡ଼ ଚାନ୍ଦୁଆ ଓ ଛତ୍ରୀ ଦର୍ଶକମାନଙ୍କ ମନ ଜିଣିଥାଏ । ମନ୍ଦିରମାନଙ୍କରେ ଦିଅଁମାନଙ୍କ ଉପରେ ଧୂଳିମଳି ନ ପଡ଼ିବା ପାଇଁ ଛତ୍ରୀସବୁ ଝୁଲାଯାଇଥାଏ ।

**ଶିଂଗ କାମ :**

ଗୋରୁଗାଈମାନଙ୍କ ଶିଂଗରୁ ବିଭିନ୍ନ ପ୍ରକାର ଜିନିଷ ଯଥା: ପାନିଆ, ଫୁଲଦାନି ଓ କଲମ ରଖିବା ପରି ଜିନିଷ ଆଦି ତିଆରି କରିବାରେ ଓଡ଼ିଶାର କାରୀଗରମାନେ ନିପୁଣ । ଶିଂଗକୁ ପ୍ରଥମେ ଘଷି ଚିକ୍କଣ କରାଯାଏ ଓ ପରେ ସେଗୁଡ଼ିକୁ ବିଭିନ୍ନ ରୂପ ଦିଆଯାଏ । ଶିଂଗରେ ବଗ, ବଡ଼ ଚିଙ୍ଗୁଡ଼ି, କଙ୍କଡ଼ା ବିଛା ଓ ପକ୍ଷୀ ଇତ୍ୟାଦି ଅତ୍ୟନ୍ତ ନିପୁଣତାର ସହ ପ୍ରସ୍ତୁତ କରାଯାଏ । ସେଗୁଡ଼ିକର ପୃଷ୍ଠଭାଗ ଅତ୍ୟନ୍ତ କଳା ଅଥଚ ଚିକ୍କଣିଆ ଦେଖାଯାଏ । କଳାପ୍ରେମୀମାନଙ୍କର ଏହା ଦୃଷ୍ଟି ଆକର୍ଷଣ କରେ ।

**ଶାଢ଼ୀ ଓ ଅନ୍ୟାନ୍ୟ ବୟନ ସାମଗ୍ରୀ:**

ଓଡ଼ିଶୀ ହସ୍ତଶିଳ୍ପରେ ହସ୍ତତନ୍ତ ଶାଢ଼ୀ ସମ୍ଭବତଃ ସବୁଠାରୁ ଅଧିକ ଜନପ୍ରିୟ ସାମଗ୍ରୀ । ସମସ୍ତଙ୍କ ରୁଚିକୁ ନେଇ ଓ ଆର୍ଥିକ ସ୍ଥିତିକୁ ସୁହାଇଲା ଭଳି ବିଭିନ୍ନ ପ୍ରକାର ରଙ୍ଗ ଓ ଶୈଳୀର ଶାଢ଼ୀ ମିଳେ । ସାଧାରଣତଃ ଘରୋଇ କିମ୍ବା ସମବାୟ ନିଗମ ମାଧ୍ୟମରେ ସମ୍ବଲପୁର ଜିଲ୍ଲାର ଗ୍ରାମୀଣ ଲୋକେ ତନ୍ତରେ ଶାଢ଼ୀ ବୁଣନ୍ତି । ସମ୍ବଲପୁର ସୂତା ଶାଢ଼ୀର ସାବଲୀଳତା, ଧଡ଼ି ଓ ପଣତର ନିର୍ଦ୍ଦିଷ୍ଟ ସ୍ୱତନ୍ତ୍ରତା ରହିଛି । ମାଛ, ଶଙ୍ଖ ଓ ଫୁଲ ଶାଢୀର ପଣତ ଉପରେ ବୁଣାଯାଇଥାଏ । ଧଡ଼ି ଓ ପଣତକୁ ଆକର୍ଷଣୀୟ କରିବା ପାଇଁ କେବେ କେବେ ପଶୁପକ୍ଷୀମାନଙ୍କ ଚିତ୍ର ଥାଇ ବୁଣାଯାଏ । ସ୍ଥାନୀୟ କଞ୍ଚାମାଲକୁ ବ୍ୟବହାର କରି ଗ୍ରାମୀଣ କାରିଗରମାନେ ସିଲ୍କ ଶାଢ଼ୀ ମଧ୍ୟ ପ୍ରସ୍ତୁତ କରନ୍ତି । ଖଣ୍ଡୁଆ ପାଟରେ ଅଧିକ ଆକର୍ଷଣୀୟ ଶୈଳୀ ଓ ମସୃଣତା ରହିଛି । ବାପ୍ତା ଶାଢ଼ୀରେ ଉଭୟ ସୂତା ଓ ସିଲ୍କ ବ୍ୟବହାର କରାଯାଏ । ବର୍ହମ୍ପୁରୀ ପାଟ ଶାଢ଼ୀକୁ ସମ୍ଭ୍ରାନ୍ତ ଓ ଆଧୁନିକ ମହିଳାମାନେ ପରିଧାନ କରନ୍ତି । ଶାଢ଼ୀଗୁଡ଼ିକ ପ୍ରସ୍ତୁତ ହେଉଥିବା ସ୍ଥାନର ନାମ, ସୂତାର ଗୁଣବତ୍ତା ଏବଂ ବୁଣାଯାଇଥିବା ଶୈଳୀ ନେଇ ନାମିତ ହୋଇଥାଏ । ଓଡ଼ିଶାର ହାତବୁଣା ବିଛଣା ଚଦର, ବିଛଣା ଉପର କପଡା, ମେଜ କପଡା, ପରଦା ଓ ପୋଷାକ କପଡ଼ା ମଧ୍ୟ ସମଗ୍ର ଭାରତରେ ଆଦୃତି ଲାଭ କରିଛି ।

**ପଟ୍ଟଚିତ୍ର:**

ଓଡ଼ିଶାର ପୁରୀ, ରଘୁରାଜପୁର ଓ ଦାଣ୍ଡସାହି ଅଞ୍ଚଳର କୁଶଳୀ ପାରମ୍ପରିକ ଚିତ୍ରକରମାନେ ଲୋକକଳା ପଟ୍ଟଚିତ୍ର ପ୍ରସ୍ତୁତ କରନ୍ତି । ପଟ୍ଟଚିତ୍ର ଶବ୍ଦଟି ସଂସ୍କୃତ ଶବ୍ଦ 'ପଟ୍ଟ' (ରଙ୍ଗ କରାଯାଉଥିବା ଖଣ୍ଡେ କପଡ଼ା ବା ପ୍ଲେଟ୍) ଓ ଚିତ୍ର (ଡ୍ରଇଁ ବା ଛବି) ରୁ ଉଦ୍ଧୃତ କରାଯାଇଛି । ପୁରୀ ଜିଲ୍ଲାର ପୁରୀ, ରଘୁରାଜପୁର ଓ ଦଣ୍ଡସାହିର ଚିତ୍ରକରମାନେ ବହୁ ପୂର୍ବରୁ ଆରମ୍ଭ ହୋଇଥିବା ଏକ ଦେଶୀୟ ଚିତ୍ରକଳା ମତବାଦର ଶ୍ରେଣୀଭୁକ୍ତ । ଏହି ପ୍ରାଚୀନ ପରମ୍ପରାଟି ଏବେ ମଧ୍ୟ ଚିତ୍ରକର ଓ ସେମାନଙ୍କ ମହିଳା ଗୋଷ୍ଠୀ ଦ୍ୱାରା ଚଳି ଆସୁଛି । ସୁନ୍ଦର ଭାବେ ତିଆରି ହୋଇଥିବା ଏହି ପଟ୍ଟଚିତ୍ରଗୁଡ଼ିକରେ ଲୋକକଳା ଓ ଆଧୁନିକ କଳାର ମୌଳିକ ଉପାଦାନ ଭରି ରହିଛି । ବାର୍ଷିକ ରଥଯାତ୍ରା ପାଳନରୁ ହିଁ ପଟ୍ଟଚିତ୍ରର ଜନ୍ମ । ଓଡ଼ିଶାର ବର୍ଣ୍ଣିଳ ପର୍ବପର୍ବାଣୀ ମଧ୍ୟରୁ

ରଥଯାତ୍ରା ଅନ୍ୟତମ । ଯେତେବେଳେ ପ୍ରଭୁ ଜଗନ୍ନାଥ ବଡ଼ଭାଇ ବଳଭଦ୍ର ଓ ଭଉଣୀ ସୁଭଦ୍ରାଙ୍କ ସହିତ ମନ୍ଦିର ଛାଡ଼ି ଭକ୍ତମାନଙ୍କ ଗହଣକୁ ଚାଲି ଆସନ୍ତି, ଜାତି, ଧର୍ମ ବର୍ଣ୍ଣ ନିର୍ବିଶେଷରେ ଯେ କୌଣସି ଲୋକ ପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କରି ଆଶୀର୍ବାଦ ଲାଭ କରିଥାନ୍ତି । ମାତ୍ର ଏହି ଯାତ୍ରା ପୂର୍ବରୁ ସ୍ନାନ ପୂର୍ଣ୍ଣିମା ଠାରୁ ତିନି ଠାକୁର ଘୋଡ଼ାଇ ହୋଇ ରହିଥାଆନ୍ତି । ଅନବସର ସମୟରେ ଯେତେବେଳେ ତିନିଠାକୁର ନିଭୃତ କକ୍ଷରେ ବିଶ୍ରାମ ନିଅନ୍ତି, ମନ୍ଦିର ଚିତ୍ରକରଙ୍କ ଦ୍ୱାର ନିର୍ମିତ ସ୍ୱତନ୍ତ୍ର ବସ୍ତ୍ର ଉପରେ ପଟ୍ଟଚିତ୍ର ତିଆରି ହୋଇ ପଟିଦିଅଁମାନଙ୍କୁ ମନ୍ଦିର ଗର୍ଭଗୃହରେ ଟଙ୍ଗାଇ ଦିଆଯାଏ ଓ ଭକ୍ତମାନେ ସେମାନଙ୍କୁ ଦର୍ଶନ କରନ୍ତି । ଏହି ରୀତିନୀତିରୁ ଆରମ୍ଭ ହୋଇଥିବା ପଟ୍ଟଚିତ୍ର ପରମ୍ପରା ବିଗତ ବର୍ଷଗୁଡ଼ିକରେ ଏକ ସ୍ୱତନ୍ତ୍ର ଶୈଳୀର ଚିତ୍ରକଳା ରୂପେ ମାନ୍ୟତା ଲାଭ କରିଛି । ଜଗନ୍ନାଥ ମହାପାତ୍ର, ଅନନ୍ତ ମହାରଣା ଓ ଅନ୍ୟମାନଙ୍କ ପରି ଚିତ୍ରକରଙ୍କ କ୍ରମାଗତ ପ୍ରଚେଷ୍ଟା ଯୋଗୁଁ ଏହି କଳାର ଜନାଦୃତି ବଢ଼ିଛି ।

**ବାଲୁକା କଳା :**

ଲୋକମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି ତଥା ଉତ୍ସାହ ଆଣିବା ଉଦ୍ଦେଶ୍ୟରେ କେବଳ ବାଲି ସାହାଯ୍ୟରେ ପ୍ରସ୍ତୁତ ଏକ ଅସ୍ଥାୟୀ କଳା ଭାବେ ବାଲୁକା କଳା ଆଦୃତ ହୋଇଛି । ଅନେକ ଦେଶରେ ବାଲୁକା କଳା ଏକ ଜନପ୍ରିୟ ବୃତ୍ତିଗତ କଳା ଭାବେ ଗଣା ହେଉଛି । ଜନସଚେତନତା ସୃଷ୍ଟି କରିବା ନିମନ୍ତେ ବିଭିନ୍ନ ଘଟଣାବଳୀ, ସାଧାରଣରେ ଆଗ୍ରହ ଥିବା କଥାବସ୍ତୁ ଓ ପ୍ରାକୃତିକ ଦୁର୍ବିପାକ ଇତ୍ୟାଦି ବିଷୟ ବାଲୁକା କଳାରେ ପ୍ରଦର୍ଶିତ ହୋଇଥାଏ । ଏବେ ବାଲୁକା କଳା ପ୍ରତିଯୋଗିତା ଓ ଉତ୍ସବମାନ ଉଭୟ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ଅନୁଷ୍ଠିତ ହେଉଛି । ପୁରୀର ପଦ୍ମଶ୍ରୀ ସୁଦର୍ଶନ ପଟ୍ଟନାୟକ ଜଣେ ଖ୍ୟାତିସମ୍ପନ୍ନ ବାଲୁକା କଳା ଶିଳ୍ପୀ ଭାବେ ପରିଚିତ । ତାଙ୍କୁ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ବିଭିନ୍ନ ଅନୁଷ୍ଠାନ ଦ୍ୱାରା ସମ୍ବର୍ଦ୍ଧିତ କରାଯାଇଛି ।

**ପ୍ରସ୍ତର ଓ କାଷ୍ଠ ଖୋଦେଇ କଳା :**

ପ୍ରସ୍ତର ଖୋଦେଇ ଓଡ଼ିଶାର ଏକ ପ୍ରାଚୀନ କଳା । ମନ୍ଦିର ନିର୍ମାଣ ଶୈଳୀରେ ଓଡ଼ିଶାର କାରିଗରମାନେ ଏକଦା ଉତ୍କର୍ଷର ଶୀର୍ଷରେ ପହଞ୍ଚିଥିଲେ । ଆଜି ସେମାନଙ୍କ ବଂଶଧରମାନେ ପ୍ରସ୍ତର ଖୋଦେଇ ମାଧ୍ୟମରେ ଭାସ୍କର୍ଯ୍ୟ ପରମ୍ପରାକୁ ଉଜ୍ଜୀବିତ ରଖିଛନ୍ତି । ଖୋଦେଇ ମାଧ୍ୟମରେ ପ୍ରସ୍ତୁତ ବସ୍ତୁଗୁଡ଼ିକ ହେଉଛି ମନ୍ଦିରର ପ୍ରତିକୃତି, ଦେବଦେବୀଙ୍କର ମୂର୍ତ୍ତି, କୋଣାର୍କ ଚକ୍ର ଓ ଘୋଡ଼ା, ଅଳସକନ୍ୟା, ଶାଳଭଞ୍ଜିକା, ସୁରସୁନ୍ଦରୀ, ଆଲେଖିକା ଇତ୍ୟାଦି ଭଳି କ୍ଷୁଦ୍ର ପ୍ରସ୍ତର ମୂର୍ତ୍ତି । ଏସବୁ ଘର ସଜାଇବାର ମୁଖ୍ୟ ଉପକରଣ । ସେହିପରି ଓଡ଼ିଶାର କାଷ୍ଠ ଖୋଦେଇ କଳା ମଧ୍ୟ ବେଶ୍ ଲୋକପ୍ରିୟ । ଅନ୍ୟ ରାଜ୍ୟର କଳାକୃତି ଠାରୁ ଏଗୁଡ଼ିକ ସମ୍ପୂର୍ଣ୍ଣ ଭିନ୍ନ, ଯେହେତୁ ସେଗୁଡ଼ିକ ଉପରେ କୌଣସି ପ୍ରକାର ରଙ୍ଗ ବା ଲାଖ ପ୍ରଲେପ ଦିଆନଯାଇ କେବଳ ପଲିସ୍ କରି ଚିକ୍କଣ ଓ ଉଜ୍ଜ୍ୱଳ କରାଯାଇଥାଏ ।

ଏତଦ୍‌ବ୍ୟତୀତ, କାଗଜ ମଣ୍ଡରୁ ବିଭିନ୍ନ ସାମଗ୍ରୀ, ସୋଲପିଠ କାମ, ଲାଖ କାମ, ଜରି କାମ, କାଚମାଳୀ, କପଡ଼ା ହାର, କର୍ପୂର ମାଳ, ଝୋଟ କାର୍ପେଟ୍, ମସିଣା ଏବଂ ପୁରୀ ତଥା ଗୋପାଳପୁରର ଶାମୁକାରେ ନିର୍ମିତ ବିଭିନ୍ନ ପ୍ରକାର ହସ୍ତଶିଳ୍ପ ଓଡ଼ିଶାରେ ଦେଖିବାକୁ ମିଳେ ।

**ଓଡ଼ିଶୀ ସଂଗୀତ**

ଓଡ଼ିଶାର ଏକ ଗୌରବମୟ ସଂଗୀତ ପରମ୍ପରା ରହିଛି । ପ୍ରାଚୀନ ମନ୍ଦିର ଗାତ୍ରରେ ଖୋଦେଇ ହୋଇଥିବା ନର୍ତ୍ତକ ନର୍ତ୍ତକୀ ଓ ସଂଗୀତଜ୍ଞମାନଙ୍କ ମୂର୍ତ୍ତିସବୁ ଓଡ଼ିଶାର ସମୃଦ୍ଧ ସାଙ୍ଗୀତିକ ଐତିହ୍ୟକୁ ପରିପ୍ରକାଶ କରେ । ଓଡ଼ିଶାର ସନ୍ଥକବିମାନେ ଗାୟନ କରାଯାଇପାରିବା ଭଳି କବିତା ସଂଯୋଜନା କରିଥିଲେ । ବିଭିନ୍ନ ସ୍ଥାନରେ ଧାର୍ମିକ ଭାବନାର ପ୍ରଚାର କରିବା ନିମନ୍ତେ ଗାୟକମାନେ ସାଧାରଣତଃ ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଯାଉଥିଲେ । ଗୀତଟି କିଭଳି ଗାୟନ କରାଯିବ ସେ ବିଷୟରେ କବିମାନେ ନିର୍ଦ୍ଦିଷ୍ଟ ପଦ୍ଧତି ନିର୍ଦ୍ଧାରଣ ଓ ଅବଲମ୍ବନ କରୁଥିଲେ । କେଉଁ ରାଗ ଓ କେଉଁ ତାଳରେ ଗୀତଟି ଗାୟନ କରାଯିବ, ତାହା ସ୍ଥିରୀକୃତ ହେଉଥିଲା ।

ଏକାଦଶ ଶତାବ୍ଦୀ ବେଳକୁ ଓଡ଼ିଶାରେ ପ୍ରଚଳିତ ତ୍ରିସ୍ୱରୀ, ଚତୁଃସ୍ୱରୀ ଓ ପଞ୍ଚସ୍ୱରୀ ଆଦି ଲୋକଗୀତ ଶାସ୍ତ୍ରୀୟ

ପଦ୍ଧତିକୁ ପରିବର୍ତ୍ତିତ ହୋଇଥିଲା । ହିନ୍ଦୁସ୍ତାନୀ ଓ କର୍ଣ୍ଣାଟକୀ ସଙ୍ଗୀତର ସାଧାରଣ ଉପାଦାନ ସହ ଓଡ଼ିଶୀ ସଂଗୀତ ହେଉଛି ରାଗ ଓ ତାଳକୁ ଧାରଣ କରିଥିବା ଏକ ଶାସ୍ତ୍ରୀୟ ସଙ୍ଗୀତ । ଜୟଦେବ ହେଉଛନ୍ତି ଓଡ଼ିଶାର ପ୍ରଥମ କବି ଯିଏକି ଗୀତକୁ ଗାୟନ କରିବା ପାଇଁ ରଚନା କରିଥିଲେ ଏବଂ ଗୀତର ଶବ୍ଦ ସବୁ ସାଙ୍ଗୀତିକ ଥିଲା । ସେ କାଳରେ ପ୍ରଚଳିତ ଶାସ୍ତ୍ରୀୟ ରାଗ ଅନୁସାରେ ତାଙ୍କ ରଚିତ ଗୀତଗୁଡ଼ିକୁ କିଭଳି ଭାବେ ଗାୟନ କରାଯିବ, ସେ ବିଷୟରେ ଜୟଦେବ ଧାରଣା ଦେଇଥିଲେ ।

ଏଥି ପୂର୍ବରୁ ଥିବା ଛାନ୍ଦ ପରମ୍ପରାର ସାଙ୍ଗୀତିକ ଧାରା ଅତ୍ୟନ୍ତ ସରଳ ଥିଲା । ଓଡ଼ିଶାରେ ସଙ୍ଗୀତ ସମ୍ପର୍କିତ ଗ୍ରନ୍ଥ ଲିଖନ ବା ସଂକଳନ ଷୋଡ଼ଶ ଶତାବ୍ଦୀରୁ ଆରମ୍ଭ ହେଲା । ସେଗୁଡ଼ିକ ହେଲା 'ସଙ୍ଗୀତାର୍ଣ୍ଣବ ଚନ୍ଦ୍ରିକା', 'ଗୀତ ପ୍ରକାଶ', 'ସଂଗୀତ କଳ୍ପଲତା' ଓ 'ନାଟ୍ୟ ମନୋରମା' । ଉନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଦୁଇଟି ପୁସ୍ତକ 'ସଂଗୀତ ସରଣୀ' ଓ 'ସଙ୍ଗୀତ ନାରାୟଣ' ମଧ୍ୟ ରଚନା କରାଯାଇଥିଲା ।

ଉଲ୍ଲିଖିତ ପୁସ୍ତକଗୁଡ଼ିକରେ ବର୍ଣ୍ଣନା ଅନୁଯାୟୀ ଚାରି ଗୋଟି ଶ୍ରେଣୀର ସଙ୍ଗୀତ ଯଥା– ଧ୍ରୁବପଦ, ଚିତ୍ରପଦ, ଚିତ୍ରକଳା ଓ ପାଞ୍ଚାଳ ସମାହାରରେ ଓଡ଼ିଶୀ ସଂଗୀତର ସୃଷ୍ଟି । ଧ୍ରୁବପଦ ହେଉଛି ପ୍ରଥମ ଧାଡ଼ି ବା ଧାଡ଼ି ସମୂହ ଯାହାକୁ ବାରମ୍ବାର ଗାନ କରାଯାଏ । ସଂଗୀତରେ ଚିତ୍ରର ବ୍ୟବହାରକୁ ଚିତ୍ରକଳା ବୋଲି କୁହାଯାଏ । ପ୍ରସିଦ୍ଧ ଓଡ଼ିଆ କବି କବିସୂର୍ଯ୍ୟ ବଳଦେବ ରଥ ଯେଉଁ ଗୀତ–କବିତା ଲେଖିଥିଲେ, ତାହା ଚିତ୍ରକଳାର ଶ୍ରେଷ୍ଠ ଉଦାହରଣ । ଚିତ୍ରପଦର ଅର୍ଥ ହେଉଛି ଅନୁପ୍ରାସ ଶୈଳୀରେ ଶବ୍ଦ ସଂଯୋଜନା କରିବା । ଏହିସବୁ ଶୈଳୀକୁ ଏକତ୍ର କରି ଓଡ଼ିଶୀ ସଂଗୀତ ସୃଷ୍ଟି କରାଯାଇଥିଲା । ଛାନ୍ଦ (ଅଳଙ୍କାର ବିଭାଗ) ଓଡ଼ିଶୀ ସଂଗୀତର ମୂଳପିଣ୍ଡ । ଛାନ୍ଦଗୁଡ଼ିକ ଭାବ (ବିଷୟ), କାଳ (ସମୟ) ଓ ସ୍ୱର (ଛନ୍ଦ) ଆଧାରରେ ସଂଯୋଜନା କରାଯାଇଥିଲା । 'ଚଉତିଶା' ଓଡ଼ିଶୀ ଶୈଳୀର ମୌଳିକତା ପ୍ରତିପାଦନ କରେ । ପ୍ରତ୍ୟେକ ଧାଡ଼ିର ଆରମ୍ଭରେ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଓଡ଼ିଆ ବର୍ଣ୍ଣମାଳାର ଚଉତିରିଶ ଯାକ ଅକ୍ଷର ଥାଏ । ଓଡ଼ିଶୀ ସଂଗୀତର ସ୍ୱତନ୍ତ୍ର ବୈଶିଷ୍ଟ୍ୟ ହେଉଛି 'ପଦୀ', ଯାହାକି ଶବ୍ଦଗୁଡ଼ିକର ସମାହାର ଓ ଏହା ଦ୍ରୁତ ତାଳରେ ଗାୟନ କରାଯାଏ । ଓଡ଼ିଶୀ ସଂଗୀତ ବିଭିନ୍ନ ତାଳ ଯଥା – ନବତାଳ, ଦଶତାଳ ବା ଏଗାର ତାଳରେ ଗାନ କରାଯାଇପାରିବ ।

ହିନ୍ଦୁସ୍ତାନୀ ଓ କର୍ଣ୍ଣାଟକୀ ସଂଗୀତର ରାଗଠାରୁ ଓଡ଼ିଶୀ ସଂଗୀତର ରାଗ ଭିନ୍ନ ଅଟେ । ମୁଖ୍ୟ ଓଡ଼ିଶୀ ରାଗଗୁଡ଼ିକ ହେଉଛି–କଲ୍ୟାଣ, ନଟ, ଶ୍ରୀଗୌଡ଼, ବରାଡି, ପଞ୍ଚମ, ଧନଶ୍ରୀ, କର୍ଣ୍ଣାଟ, ଭୈରବୀ ଏବଂ ଶୋକବରାଡି ।

ହିନ୍ଦୁସ୍ତାନୀ ବା କର୍ଣ୍ଣାଟକୀ ଶୈଳୀ ସହ ତୁଳନା କଲେ ଆମେ ଦେଖୁ ଯେ ଓଡ଼ିଶୀ ସଂଗୀତର ବ୍ୟାକରଣ, ଅଳଙ୍କାର ବା ସଂଯୋଜନାରେ କୌଣସିଟି ଊଣା ନାହିଁ । ଏଥିପାଇଁ ଆମେ ଓଡ଼ିଶୀ ଶାସ୍ତ୍ରୀୟ ସଂଗୀତର ସଂଯୋଜକ, ଭକ୍ତକବି ଓ ପ୍ରସିଦ୍ଧ ଗୁରୁ ଜୟଦେବଙ୍କ ନିକଟରେ ଅତ୍ୟନ୍ତ କୃତଜ୍ଞ ।

ଆଧୁନିକ ସମୟରେ ଓଡ଼ିଶୀ ସଂଗୀତର ମହାନ୍ ବ୍ୟାଖ୍ୟାକାରମାନେ ହେଲେ ସିଂହାରୀ ଶ୍ୟାମସୁନ୍ଦର କର, ମାର୍କଣ୍ଡେୟ ମହାପାତ୍ର, କାଶୀନାଥ ପୂଜାପଣ୍ଡା ଓ ବାଳକୃଷ୍ଣ ଦାଶ । ଶାସ୍ତ୍ରୀୟ ସଂଗୀତରେ ଖ୍ୟାତି ଅର୍ଜନ କରିଥିବା ଗାୟିକାଙ୍କ ମଧ୍ୟରେ ଡକ୍ଟର ସୁନନ୍ଦା ପଟ୍ଟନାୟକ ଅତ୍ୟନ୍ତ ଆଦୃତା ।

### ଓଡ଼ିଶାର ନୃତ୍ୟ

ଭାରତର ସମୃଦ୍ଧ ନୃତ୍ୟକଳାକୁ ଓଡ଼ିଶା ଦୁଇ ଗୋଟି ସ୍ୱତନ୍ତ୍ର ଭିନ୍ନ ଧରଣର ଶାସ୍ତ୍ରୀୟ ନୃତ୍ୟ । ଯଥା– ଛଉ ଓ ଓଡ଼ିଶୀ ପ୍ରଦାନ କରିଛି ।

### ଛଉ ନୃତ୍ୟ

ଛଉ ଏକ ପ୍ରାଚୀନ ନୃତ୍ୟ କଳା । ଏହାର ସୃଷ୍ଟି ଓଡ଼ିଆ ପାଇକ ଯୋଦ୍ଧାମାନଙ୍କ ଯୁଦ୍ଧ ଅଭ୍ୟାସ ଖେଳରୁ, ଯେଉଁମାନେ କି ଦେଶୀୟ ବାଦ୍ୟଯନ୍ତ୍ରର ଛନ୍ଦ ତାଳେ ତାଳେ ଲଢ଼େଇ ଅଭ୍ୟାସ କରୁଥିଲେ । ବର୍ତ୍ତମାନର ଉଚ୍ଚକୋଟୀର ଛଉ ନୃତ୍ୟ ଭରତମୁନିଙ୍କ 'ନାଟ୍ୟଶାସ୍ତ୍ର' ଓ ନନ୍ଦିକେଶ୍ୱରଙ୍କ

'ଅଭିନୟ ଦର୍ପଣ' ର ମୂଳ ତତ୍ତ୍ୱ ଉପରେ ପର୍ଯ୍ୟବସିତ । ଏହି ନୃତ୍ୟକଳା କ୍ରମଶଃ ଧର୍ମ ସହ ଜଡ଼ିତ ହୋଇଥିଲା । ଛଉ ନୃତ୍ୟ କରୁଥିବା ବ୍ୟକ୍ତି ତାଣ୍ଡବ ଶୈଳୀରେ ଇଷ୍ଟଦେବ ଶିବ ଓ ଲାସ୍ୟ ଶୈଳୀରେ ଇଷ୍ଟଦେବୀ ପାର୍ବତୀଙ୍କୁ ପୂଜା କରିଥାନ୍ତି । ଛଉ ନୃତ୍ୟ କଲାବେଳେ ନର୍ତ୍ତକ ବିଶ୍ରାମ ସମୟରେ ଆଣ୍ଠୁଭାଙ୍ଗି ଗୋଡ଼ରେ ବର୍ଗାକାର ଆକୃତି ସୃଷ୍ଟି କରନ୍ତି, ଦକ୍ଷିଣ ହସ୍ତ ଉପରକୁ ଟେକି ବାମ ହସ୍ତ ତଳ ଆଡ଼କୁ ଝୁଲାଇଲା ବେଳେ ଉଭୟ ପାର୍ଶ୍ୱର କହୁଣୀ ପାଖରେ ସମକୋଣ ସୃଷ୍ଟି ହୁଏ । ଛଉ ନର୍ତ୍ତକ ଚାଲିବାର ବିଭିନ୍ନ କଷ୍ଟକର ଶୈଳୀ, ଜଟିଳ ମୁଦ୍ରା ଓ ଗତି କରିବାର ଏକ ସ୍ୱତନ୍ତ୍ର ଢ଼ଙ୍ଗ ଅଭ୍ୟାସ କରିଥାନ୍ତି । ଏହା ଏକ ପୁରୁଷୋଚିତ ନାଟ୍ୟକଳା ଏବଂ ଅତୀତରେ ଆବଶ୍ୟକ ବେଳେ ପୁରୁଷମାନେ ନାରୀ ଭୂମିକା ନିର୍ବାହ କରୁଥିଲେ । ଏବେ ନାରୀମାନେ ମଧ୍ୟ ଏହି ନୃତ୍ୟ ଉପରେ ପଟୁତା ହାସଲ କଲେଣି । ଷଢେଇକଳା ଛଉ ନୃତ୍ୟ ଶୈଳୀର ନୃତ୍ୟଶିଳ୍ପୀମାନେ ଯେଉଁ ଚରିତ୍ରର ଭୂମିକା ଚିତ୍ରଣ କରନ୍ତି, ସେମାନଙ୍କର ମୁଖମଣ୍ଡଳକୁ ସେହି ଚରିତ୍ରର ମୁଖା ଦ୍ୱାରା ଆବୃତ କରିଥାଆନ୍ତି । ମାତ୍ର ମୟୂରଭଞ୍ଜ ଶୈଳୀରେ ମୁଖମଣ୍ଡଳ ମୁଖା ଦ୍ୱାରା ଆଚ୍ଛାଦିତ ହୋଇନଥାଏ । ଏଥିରେ ଭାବାବେଗ ମୁଖମଣ୍ଡଳରେ ପରିସ୍ଫୁଟ ନହୋଇ ଜଟିଳ ପଦଚାଳନା, ଘୂର୍ଣ୍ଣନ ଓ ଲମ୍ଫ ପ୍ରଦାନ ଦ୍ୱାରା ପ୍ରତିଫଳିତ ହୋଇଥାଏ । ସେଥିପାଇଁ ଭାବ ପ୍ରକାଶ ପାଇଁ ଅଣ୍ଟା, ପାଦ ଓ ଗୋଡ଼କୁ ବ୍ୟବହାର କରାଯାଏ ।

ଏସବୁ ନୃତ୍ୟ ସାଧାରଣତଃ ଏକ ମୁକ୍ତାକାଶ ଉଚ୍ଚ ମଞ୍ଚରେ ପରିବେଷିତ ହୁଏ । ମଞ୍ଚର ଗୋଟିଏ ପାର୍ଶ୍ୱରେ ବାଦ୍ୟକାରମାନେ ଦଣ୍ଡାୟମାନ ହୁଅନ୍ତି ଏବଂ ବୃହତ୍କାୟ ନଳ ସଦୃଶ ଡ୍ରମ୍ ଓ ଅନ୍ୟାନ୍ୟ ବାଦ୍ୟଯନ୍ତ୍ର ବଜାନ୍ତି । ଗ୍ରାମଗୁଡ଼ିକରେ ଚୈତ୍ର ମାସର ଶେଷ ଆଡ଼କୁ ଚୈତ୍ର ପର୍ବ ପାଳନ ଅବସରରେ ଛଉ ନୃତ୍ୟ ପରିବେଷଣ କରାଯାଏ । ରାମାୟଣ ଓ ମହାଭାରତର ଜଣାଶୁଣା କଥାବସ୍ତୁ ମଞ୍ଚରେ ଅଭିନୟ କରାଯାଏ । ସୁନ୍ଦର ବେଶ ପୋଷାକ, ପଗଡ଼ି ଓ ଅନ୍ୟାନ୍ୟ ଆବଶ୍ୟକୀୟ ଅଳଙ୍କାର ପ୍ରସ୍ତୁତ ହୁଏ । ଏକକ, ଦ୍ୱୈତ ଓ ଗୋଷ୍ଠୀଗତ ନୃତ୍ୟ ପରିବେଷଣ ହୁଏ । ଆଜିକାଲି ଛଉ ନୃତ୍ୟର ବିଷୟବସ୍ତୁଗୁଡିକ ସମଗ୍ର ଜୀବଜଗତ ଓ ପ୍ରକୃତିର ଜଡ଼ବସ୍ତୁକୁ ନେଇ ପରିପୁଷ୍ଟ ହେଉଛି । ପ୍ରସିଦ୍ଧ ମୟୂର, ହଂସ ଓ ହରିଣ ନୃତ୍ୟ ଆଦି ବନ୍ୟଜନ୍ତୁଙ୍କ ବୈଭବ ଓ ଅରଣ୍ୟ ସମ୍ପଦର କମନୀୟତାକୁ ନେଇ ନୃତ୍ୟ ଶୈଳୀ ସୁନ୍ଦର ଭାବେ ପ୍ରସ୍ତୁତ କରାଯାଏ । ଓଡ଼ିଶାର ଉତ୍ତର-ପୂର୍ବ ପାର୍ବତ୍ୟାଞ୍ଚଳର ସମୃଦ୍ଧ ଲୋକ ଓ ଆଦିବାସୀ ସଂସ୍କୃତି ଛଉ ନୃତ୍ୟକୁ ବହୁଳ ଭାବେ ପ୍ରଭାବିତ କରିଛି ।

**ପାଇକ ନୃତ୍ୟ:**

ପାଇକ ନୃତ୍ୟ ପ୍ରାଚୀନ ଓଡ଼ିଶାର ଏକ ପ୍ରକାର ସାମରିକ କଳାକୃତି । ପ୍ରାଚୀନ ଓଡ଼ିଆ ସାମରିକ ବାହିନୀର ମୁଖ୍ୟ ଯୋଦ୍ଧା ଶ୍ରେଣୀ ପାଇକମାନଙ୍କ ମଧ୍ୟରେ ଅଭ୍ୟାସ କରାଯାଉଥିବା ଏହି କଳାରେ ସୈନ୍ୟମାନଙ୍କର ଦୁର୍ଦ୍ଧର୍ଷ ଭାବ ପ୍ରକାଶ ପାଇଥାଏ । କୌତୁହଳର ବିଷୟ ହେଉଛି ଯେ, ଏହି ଶବ୍ଦଟି ସଂସ୍କୃତ ଶବ୍ଦ 'ପଦାତିକ'ରୁ ଆନୀତ ଯାହାର ଅର୍ଥ ହେଲା ''ପଦାତିକ ବାହିନୀ'' ।

ଓଡ଼ିଶାର ଏହି ଲୋକନୃତ୍ୟ ଖୋର୍ଦ୍ଧା ଓ ପୁରୀର ଅନେକ ପାଇକ ଗ୍ରାମରେ ପ୍ରଦର୍ଶନ କରାଯାଏ । ଦିନଯାକର କଠିନ ପରିଶ୍ରମ ପରେ ଏକ ସର୍ବସାଧାରଣ ଚଉତରାରେ ଲୋକମାନେ ଏକାଠି ହୁଅନ୍ତି । ପାଇକ ଆଖଡ଼ା ଏପରି ଏକ ସ୍ଥାନ ଯେଉଁଠାରେ ସେମାନେ ଶାରୀରିକ ବ୍ୟାୟାମ ଅଭ୍ୟାସ କରିବା ସହିତ ଖଣ୍ଡା ଓ ଢ଼ାଲରେ ଲଢ଼େଇ କୌଶଳ ଶିକ୍ଷା କରନ୍ତି । ଡ୍ରମ୍ ବାଜିବା ସଙ୍ଗେ ସଙ୍ଗେ ସେମାନେ ଉଗ୍ର ସମର ନୃତ୍ୟ ପ୍ରଦର୍ଶନ କରନ୍ତି । ଆଗକୁ ଆସୁଥିବା ଏକ ଭୟଙ୍କର ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ରହିବା ପାଇଁ ନୃତ୍ୟଶିଳ୍ପୀମାନଙ୍କୁ ଏହା ଏକ ଆହ୍ୱାନ ସ୍ୱରୂପ । ଏହି ସମୟରେ ନର୍ତ୍ତକମାନଙ୍କ ପରାକ୍ରମ ଓ ଶାରୀରିକ ଉତ୍ତେଜନା ଖୁବ୍ ଉଚ୍ଚକୋଟୀର । ଦଶହରା ସମୟରେ ଓଡ଼ିଶାର ବିଭିନ୍ନ ଗ୍ରାମରେ ଭିନ୍ନ ଭିନ୍ନ ଦଳ ଖୁବ୍ ଉତ୍ସାହ ଉଦ୍ଦୀପନା ସହ ପାଇକ ନୃତ୍ୟ ପ୍ରଦର୍ଶନ କରିଥାଆନ୍ତି ।

**ସାମରିକ ନୃତ୍ୟ :**

ପ୍ରାଚୀନ ଓଡ଼ିଆ ପରମ୍ପରାରେ ନୃତ୍ୟ ଓ ସଂଗୀତକୁ ଚରମ ଆନନ୍ଦ ଅନ୍ୱେଷଣର ଏକ ମାଧ୍ୟମ ରୂପେ ଗ୍ରହଣ

କରାଯିବା ସହିତ ବଦ୍‌ଗୁଣର ବିଲୋପ ଓ ସୁଗୁଣର ବିକାଶ ପାଇଁ ଏକ ପନ୍ଥା ଭାବେ ବଛାଯାଇଛି । ଲୋକ ପରମ୍ପରାରେ ବିଶ୍ୱାସ ଯେ ଯୁଦ୍ଧ ବା ଶୀକାରରେ ସଫଳତା, ପ୍ରକୃତି ଦେବତାଙ୍କୁ ଆବାହନ, ଶସ୍ୟ ଉତ୍ପାଦନ ଓ ତହିଁର ରକ୍ଷଣାବେକ୍ଷଣ, ବିବାହ ବା ଅନ୍ୟ କିଛି ସାମାଜିକ ଉତ୍ସବ ଓ ରୀତିନୀତି ପାଳନ ବେଳେ ସଂଗୀତ ଓ ନୃତ୍ୟ ବିନା କୌଣସି ସମ୍ପୂର୍ଣ୍ଣତା ହାସଲ ହୁଏ ନାହିଁ । ବାସ୍ତବରେ ବିଶ୍ୱନିୟନ୍ତା ଭଗବାନଙ୍କ ନିକଟରେ ମଣିଷର ସମର୍ପଣ ଭାବ ଲୋକସଂସ୍କୃତିରେ ପରିସ୍ଫୁଟ ହୋଇଥାଏ । ଓଡ଼ିଶା ହେଉଛି ସମର ନୃତ୍ୟର ଏକ ବିଶାଳ ଗନ୍ତାଘର । ନୃତ୍ୟର ସ୍ୱତନ୍ତ୍ର ଚରିତ୍ର ରହିଛି ଓ ଅଙ୍ଗଚାଳନାର ବିବିଧତା ପ୍ରଶସ୍ତ ଓ ପ୍ରଭାବଶାଳୀ । ଏହା ପୁରୁଷସୁଲଭ ଶକ୍ତିକୁ ପ୍ରଦର୍ଶିତ କରେ । ଓଡ଼ିଶାର ସମର କଳା ଆଦିବାସୀ ନୃତ୍ୟ ଓ ଲୋକନୃତ୍ୟରୁ ଅନେକ କିଛି ଗ୍ରହଣ କରି ଏକ ସୁଲଳିତ ସଂହତି ସୃଷ୍ଟି କରିଛି ।

**ଓଡ଼ିଶୀ ନୃତ୍ୟ :**

ଓଡ଼ିଶୀ ନୃତ୍ୟ ଓଡ଼ିଶାର ଏକ ଅନନ୍ୟ ଶାସ୍ତ୍ରୀୟ ନୃତ୍ୟ ଓ ଏହାର ମୂଳପିଣ୍ଡ ମନ୍ଦିରଗୁଡ଼ିକରେ ରହିଛି । ଓଡ଼ିଶୀ ନୃତ୍ୟର ବ୍ୟବହୃତ ତାଳ, ଭଙ୍ଗୀ ଓ ମୁଦ୍ରାଗୁଡ଼ିକର ନିଜସ୍ୱ ସ୍ୱତନ୍ତ୍ର ଶୈଳୀ ରହିଛି । ରାଧାକୃଷ୍ଣଙ୍କ ପ୍ରେମକଥାକୁ ନେଇ ଓଡ଼ିଶୀ ନୃତ୍ୟ ପରିପୁଷ୍ଟ ।

ଏହି ନୃତ୍ୟ ପରମ୍ପରା ଦେବଦାସୀମାନଙ୍କ ଦ୍ୱାରା ଜୀବନ୍ତ ହୋଇ ରହିଥିଲା । ମନ୍ଦିରମାନଙ୍କରେ 'ଗୀତଗୋବିନ୍ଦ'ର ପ୍ରଚଳନ ପୂର୍ବରୁ ଦେବଦାସୀମାନେ ସ୍ତୋତ୍ର ଆବୃତ୍ତି ଓ ତାଳର ମାତ୍ରା ଅନୁସାରେ ନୃତ୍ୟ କରୁଥିଲେ । କିନ୍ତୁ ଯେତେବେଳେ 'ଗୀତଗୋବିନ୍ଦ' ମନ୍ଦିର ନୀତିରେ ସାମିଲ ହେଲା, ସେତେବେଳେ ବିଭିନ୍ନ ଭାବ ଓ ରସରେ ଦେବଦାସୀମାନେ ଅଭିନୟ ପରିବେଷଣ କଲେ ।

ଓଡ଼ିଶୀ ନୃତ୍ୟ ଶୈଳୀର ବିଭିନ୍ନ ଉପାଦାନ ହେଉଛି 'ମଙ୍ଗଳା ଚରଣ', 'ବଟୁ ନୃତ୍ୟ' ବା 'ସ୍ଥାୟୀ ନାଟ', 'ପଲ୍ଲବୀ', 'ଅଭିନୟ' ଓ 'ମୋକ୍ଷ' । ମଙ୍ଗଳାଚରଣରେ ନୃତ୍ୟାଙ୍ଗନା ନିଜକୁ ପ୍ରଭୁଙ୍କ ନିକଟରେ ସମର୍ପି ଦିଏ ଓ ତା'ର ପାଦ ମାଟି ଉପରେ ପକାଇ ନାଚୁଥିବାରୁ ଧରଣୀମାତାଙ୍କ ନିକଟରେ କ୍ଷମା ପ୍ରାର୍ଥନା କରେ । ସେ ତା'ର ନୃତ୍ୟଶୈଳୀରେ କୌଣସି ତ୍ରୁଟି ଓ ଦୁର୍ବଳତା ପାଇଁ ଦର୍ଶକମାନଙ୍କ ନିକଟରେ କ୍ଷମା ପ୍ରାର୍ଥନା କରେ ଏବଂ ଗୁରୁଙ୍କୁ ପ୍ରଣାମ କରେ । ବଟୁ ନୃତ୍ୟ ହେଉଛି ଶ୍ରେଷ୍ଠ ନୃତ୍ୟ । ବୀଣା, ଡ୍ରମ୍, ବଂଶୀ ଓ ଝାଞ୍ଜ ପ୍ରଭୃତି ବାଦ୍ୟଯନ୍ତ୍ରର ତାଳେ ତାଳେ ବିଭିନ୍ନ ସ୍ଥାପତ୍ୟ ଶୈଳୀର ଭାବଭଙ୍ଗୀ ପ୍ରକାଶ କରୁଥିବା ମୁଦ୍ରାରୁ ଆରମ୍ଭ ହୁଏ । 'ପଲ୍ଲବୀ' ଅତ୍ୟନ୍ତ କମନୀୟ ଓ ଗୀତମୟ । ଗୀତର ସ୍ୱରଟି କୌଣସି ରାଗ ଉପରେ ଆଧାରିତ ଏବଂ ଏହା ସରଗମ୍ ଓ ବୋଲ ତାଳ ଅନୁସାରେ ଗାନ କରାଯାଏ । ଗୀତର ଅର୍ଥ ଓ ମିଜାଜ୍ ଦର୍ଶାଇବା ପାଇଁ ବିଭିନ୍ନ ମୁଦ୍ରା ଦ୍ୱାରା ଅଭିନୟରେ 'ରସ' ଓ 'ଭାବ' ପ୍ରକାଶ ପାଇଥାଏ । ସାଧାରଣତଃ ପ୍ରସିଦ୍ଧ କବି ଜୟଦେବ, ବନମାଳୀ, ଉପେନ୍ଦ୍ର ଭଞ୍ଜ, ବଳଦେବ ରଥ, ଓ ଗୋପାଳକୃଷ୍ଣ ଇତ୍ୟାଦିଙ୍କ ରଚିତ ସଙ୍ଗୀତମାନ ବୋଲାଯାଏ । 'ମୋକ୍ଷ' ହେଉଛି ନୃତ୍ୟର ଶେଷ ସୋପାନ ଯାହା ପଦାଂଶର ତାଳ ଅନୁଯାୟୀ ପରିବେଷଣ କରାଯାଏ । ଏହା ଦ୍ରୁତ ଗତିରେ ପରିବେଷିତ ହୁଏ । ଯେତେବେଳେ ନୃତ୍ୟଶିଳ୍ପୀ ଆନନ୍ଦରେ ବିମୋହିତ ହୋଇଯାଏ, ସେତେବେଳେ ତା'ର ଆତ୍ମା ଦିବ୍ୟାତ୍ମାରେ ବିଲୀନ ହୋଇଯାଏ । ଈଶ୍ୱରଙ୍କର ନିକଟତର ହେବା ଓ ଆନନ୍ଦ ଅନୁଭୂତି ଲାଭ କରିବା ନିମିତ୍ତ ଓଡ଼ିଶୀ ନୃତ୍ୟ ହେଉଛି ଏକ ପ୍ରଚେଷ୍ଟା । ଓଡ଼ିଶୀକୁ ପ୍ରୋତ୍ସାହନ ଦେବା ପାଇଁ ନିକଟ ଅତୀତରେ ଅନେକ ଅନୁରାଗୀଙ୍କ ଦ୍ୱାରା ପ୍ରଶଂସନୀୟ ଉଦ୍ୟମ କରାଯାଇଛି । ସେମାନଙ୍କ ମଧ୍ୟରେ କବିଚନ୍ଦ୍ର କାଳିଚରଣ ପଟ୍ଟନାୟକଙ୍କ ନାମ ସର୍ବାଗ୍ରେ । ଯେଉଁ ଗୁରୁମାନେ ଏହି ନୃତ୍ୟକଳାକୁ ଅନ୍ତର୍ଜାତୀୟ ସ୍ତରରେ ପ୍ରତିଷ୍ଠା କରାଇଛନ୍ତି, ସେମାନେ ହେଉଛନ୍ତି ପଦ୍ମଭୂଷଣ କେଳୁ ଚରଣ ମହାପାତ୍ର (କାଳିଦାସ ସମ୍ମାନପ୍ରାପ୍ତ), ପଦ୍ମଶ୍ରୀ ପଙ୍କଜ ଚରଣ ଦାସ ଏବଂ ଦେବ ପ୍ରସାଦ ଦାସ ପ୍ରମୁଖ । ପ୍ରବୀଣ ଓଡ଼ିଶୀ ନୃତ୍ୟଶିଳ୍ପୀମାନଙ୍କ ମଧ୍ୟରେ ପଦ୍ମଶ୍ରୀ ସଂଯୁକ୍ତା ପାଣିଗ୍ରାହୀ, ପ୍ରିୟମ୍ବଦା ହେଜ୍‌ମାଦି, ମିନତୀ ମିଶ୍ର, କୁମ୍‌କୁମ୍ ମହାନ୍ତି, ଉପାଳି ଅପରାଜିତା, ପଦ୍ମଶ୍ରୀ ଅରୁଣା ମହାନ୍ତି ଓ ସଙ୍ଗୀତା ଦାସ ପ୍ରମୁଖ ଅନ୍ୟତମ ।

**ଚଇତି ଘୋଡ଼ା ନାଚ :**

ଚୈତ୍ର (ମାର୍ଚ୍ଚ –ଏପ୍ରିଲ୍) ମାସର ପୂର୍ଣ୍ଣିମା ଦିନ, ବିଶେଷ କରି କୈବର୍ତ୍ତ ସମ୍ପ୍ରଦାୟମାନଙ୍କ ଦ୍ୱାରା ପରିବେଷିତ କରାଯାଉଥିବା ଚଇତି ଘୋଡ଼ା ନାଚ ହେଉଛି ଓଡ଼ିଶାର ଅନେକ ଆକର୍ଷଣୀୟ ଲୋକନୃତ୍ୟ ମଧ୍ୟରୁ ଅନ୍ୟତମ । କଥିତ ଅଛି ଯେ, ବନବାସରେ ଥିବା ବେଳେ ସରଜୁ ନଦୀ ପାରିକରାଇବାରେ ସାହାଯ୍ୟ କରିଥିବା ନାଉରିଆକୁ ପ୍ରଭୁ ରାମଚନ୍ଦ୍ର ପୁରସ୍କାର ସ୍ୱରୂପ ଏକ ଘୋଡ଼ା ପ୍ରଦାନ କରିଥିଲେ । ସେହିଦିନ ଠାରୁ କୈବର୍ତ୍ତ ସମ୍ପ୍ରଦାୟ ଘୋଡ଼ାକୁ ପୂଜା କରି ଆସୁଛନ୍ତି ।

ଏହି ନୃତ୍ୟ ମୁଖ୍ୟତଃ ତିନିଜଣଙ୍କ ଦ୍ୱାରା ସମ୍ପାଦିତ ହୋଇଥାଏ । ଅଶ୍ୱାରୋହୀ, ରାଉତ, ରାଉତାଣୀ ଓ ମହୁରୀ ବଜାଉଥିବା ସହଯୋଗୀ ମଧ୍ୟ ଏଥିରେ ଅଂଶଗ୍ରହଣ କରନ୍ତି । ବାଉଁଶ ନିର୍ମିତ ଏକ ଫମ୍ପା ଫ୍ରେମ୍‌ରେ ଘୋଡ଼ାର ମୁଣ୍ଡ, ଶରୀର ଓ ଲାଞ୍ଜ କରାଯାଇ ଏହାକୁ ରଙ୍ଗୀନ୍ କପଡ଼ାରେ ଆବୃତ କରାଯାଇଥାଏ । ମାତ୍ର ଏହାର ଗୋଡ଼ ନଥାଏ । ଏହି ଫମ୍ପା ଘୋଡ଼ାର ଆସନ ମଧ୍ୟ ଦେଇ ଘୋଡ଼ା ନଚାଳି ଜଣକ ଘୋଡ଼ା ମଧ୍ୟରେ ପ୍ରବେଶ କରେ ଏବଂ ଏହାକୁ ତା'ର ଅଣ୍ଟା ପର୍ଯ୍ୟନ୍ତ ଝୁଲାଇ ରଖେ, ଫଳରେ ଜଣେ ମଣିଷ ଅଶ୍ୱ ଆରୋହଣ କରିଥିବା ଦୃଶ୍ୟର ଭ୍ରମ ସୃଷ୍ଟି କରେ ।

ରାଉତ ହେଉଛି ପ୍ରଧାନ ଗାୟକ ଓ ବ୍ୟାଖ୍ୟାକାର, ସେ ମୁଖ୍ୟତଃ ପୌରାଣିକ ବିଷୟବସ୍ତୁ ବର୍ଣ୍ଣନା କରେ ଏବଂ ତା'ର ସ୍ତ୍ରୀ ଭାବେ ଅଭିନୟ କରୁଥିବା ରାଉତାଣୀ ସହ–ଗାୟିକା ଓ ନର୍ତ୍ତକୀ ଭାବେ ଅଭିନୟ କରେ । ତତ୍‌କାଳିକ କଥୋପକଥନ ତଥା ହାସ୍ୟରସାତ୍ମକ ଅଧ୍ୟାୟକୁ ନେଇ ଘୋଡ଼ାନାଚ ଅତ୍ୟନ୍ତ ଜୀବନ୍ତ ହୋଇଉଠେ । ଢ଼ୋଲ ଓ ମହୁରୀ ତାଳେ ତାଳେ ଘୋଡ଼ା ନଚାଳୀ ଓ ରାଉତାଣୀର ନୃତ୍ୟର ବେଗ କ୍ରମଶଃ ବୃଦ୍ଧି ପାଏ ।

**ଘୁମୁରା ନୃତ୍ୟ :**

ଘୁମୁରା କଳାହାଣ୍ଡି ଜିଲ୍ଲାର ଏକ ପାରମ୍ପରିକ ଲୋକନୃତ୍ୟ । ଏହା ଓଡ଼ିଶାର ପଶ୍ଚିମାଞ୍ଚଳରେ ଜନାଦୃତି ଲାଭ କରିଛି । ଏହା ମୁଖ୍ୟତଃ ଆଦିବାସୀ ସମ୍ପ୍ରଦାୟର ପୁରୁଷମାନଙ୍କ ଦ୍ୱାରା ପରିବେଷଣ କରାଯାଏ । ଏହା ଏକ ଯୁଦ୍ଧ ନୃତ୍ୟ ଭାବରେ ଯୁଦ୍ଧ ସମୟରେ ଯୋଦ୍ଧାମାନଙ୍କୁ ଉତ୍ସାହିତ କରୁଥିଲା । ସଂଗୀତର ବଳିଷ୍ଠ ପ୍ରଭାବ ଏବଂ ନୃତ୍ୟରତ ଶିଳ୍ପୀମାନଙ୍କର ଅଦମନୀୟ ତେଜ ଏହାକୁ ଏକ ଯୁଦ୍ଧ ନୃତ୍ୟ ଭାବେ ପ୍ରମାଣିତ କରିଛି । ପ୍ରାୟ ୧୫ ରୁ ୨୦ ଜଣ ପୁରୁଷ ନର୍ତ୍ତକୀ ଏଥିରେ ଅଂଶ ଗ୍ରହଣ କରନ୍ତି ଏବଂ ଘୁମୁରା, ନିଶାଣ, ତାଲ୍, ତୁରୀ ଓ ମାଦଳ ଇତ୍ୟାଦି ବାଦ୍ୟଯନ୍ତ୍ର ଏଥିରେ ବ୍ୟବହୃତ ହୋଇଥାଏ । ଘୁମୁରା ନାଚର ବିଷୟବସ୍ତୁ ଧର୍ମଗ୍ରନ୍ଥ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ଉପରେ ପର୍ଯ୍ୟବସିତ । ଏହି ନୃତ୍ୟ ଗ୍ରାମ୍ୟ ଯୁବକଙ୍କୁ ଏକତ୍ରିତ କରାଇ ଗ୍ରାମର ସାମୂହିକ ପରିଚୟକୁ ପୁର୍ନଜୀବିତ କରେ । ଘୁମୁରା ନୃତ୍ୟ ଅନେକ ସାମାଜିକ ଓ ଧର୍ମୀୟ ଉତ୍ସବରେ ପରିବେଷିତ ହୋଇଥାଏ ।

**ଗୋଟିପୁଅ ନୃତ୍ୟ:**

ଓଡ଼ିଶାର ସମୃଦ୍ଧ ସାଂସ୍କୃତିକ ଐତିହ୍ୟକୁ ବହନ କରୁଥିବା 'ଗୋଟିପୁଅ' ହେଉଛି ଓଡ଼ିଶାର ଏକ ପାରମ୍ପରିକ ନୃତ୍ୟଶୈଳୀ । ଶାସ୍ତ୍ରୀୟ ଏବଂ ସବୁଠାରୁ ଖ୍ୟାତିସମ୍ପନ୍ନ ଓଡ଼ିଶୀ ନୃତ୍ୟର ମୂଳପିଣ୍ଡ ହେଉଛି ଗୋଟିପୁଅ ନାଚ । ଓଡ଼ିଆ ଭାଷାରେ ''ଗୋଟି''ର ଅର୍ଥ ହେଉଛି ଗୋଟିଏ ଓ ''ପୁଅ'' ଅର୍ଥ ହେଲା ବାଳକ । ଗୋଟିପୁଅମାନେ ହେଲେ କିଶୋର ବାଳକ । ସେମାନେ ନାରୀ ରୂପରେ ବେଶ ହୋଇଥାଆନ୍ତି ଓ ନାରୀମାନଙ୍କ ଭଳି ସମ୍ପୂର୍ଣ୍ଣ ମାର୍ଜିତ ଓ ସୁନ୍ଦର ଭାବେ ସଂଗୀତର ତାଳେ ତାଳେ ମିଳିତ ନୃତ୍ୟାଭିନୟ ପ୍ରଦର୍ଶନ କରନ୍ତି । ଗୋଟିପୁଅ ନାଚ ଓଡ଼ିଶୀ ନୃତ୍ୟ ଶୈଳୀ ପରି କିନ୍ତୁ ଏହାର କୌଶଳ, ବେଶଭୂଷା ଓ ଉପସ୍ଥାପନା ଓଡ଼ିଶୀ ଠାରୁ ଭିନ୍ନ । ଏଥିରେ ଶିଳ୍ପୀମାନେ ନିଜେ ଗାୟନ କରିଥାଆନ୍ତି । ପ୍ରାୟ ୧୬ଶ ଶତାବ୍ଦୀ ବେଳକୁ ଭୋଇବଂଶ ରାଜା ରାମଚନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ ଯେତେବେଳେ ମାହାରୀ ନୃତ୍ୟର ଅବକ୍ଷୟ ଘଟିଲା, ସେତେବେଳେ ପରମ୍ପରାକୁ ଆଗେଇ ନେବା ପାଇଁ ଏଭଳି ଗୋଟିପୁଅ ନୃତ୍ୟଶିଳ୍ପୀ ଆଗକୁ ଆସିଲେ । ଗୋଟିପୁଅ ନୃତ୍ୟର ମୁଖ୍ୟ ବିଭବ ହେଲା ବାନ୍ଧ ନୃତ୍ୟ, ଯାହା ବିଭିନ୍ନ ଅଙ୍ଗଚାଳନା,

ମୁଦ୍ରା ଉପରେ ପର୍ଯ୍ୟବସିତ । ଏହି ନୃତ୍ୟଶୈଳୀ ଦର୍ଶକମାନଙ୍କୁ ସମ୍ମୋହିତ କରେ ।

ପୁରୀ ଜିଲ୍ଲାର ଐତିହ୍ୟ ଗ୍ରାମ ରଘୁରାଜପୁରଠାରେ ପ୍ରଖ୍ୟାତ ଗୁରୁ ପଦ୍ମଶ୍ରୀ ମାଗୁଣି ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ଗୁରୁକୁଳ ''ଦଶଭୁଜା ଗୋଟିପୁଅ ଓଡ଼ିଶୀ ନୃତ୍ୟ ପରିଷଦ'' ଦ୍ୱାରା ଗୋଟିପୁଅ ନୃତ୍ୟ ପରିବେଷଣ କରାଯାଏ ।

**ସମ୍ବଲପୁରୀ ଲୋକନୃତ୍ୟ:**

ପଶ୍ଚିମ ଓଡ଼ିଶାର ଏକ ଭିନ୍ନ ଧରଣର ନୃତ୍ୟକଳା 'ସମ୍ବଲପୁରୀ ନୃତ୍ୟ' ଦର୍ଶକମାନଙ୍କ ମନରେ ଗଭୀର ଆଲୋଡ଼ନ ସୃଷ୍ଟି କରେ । ଏହାର ନାଚଗୀତରେ ସ୍ୱତନ୍ତ୍ର ଆଦିବାସୀ ଶୈଳୀ ଓ ଗ୍ରାମୀଣ ଛାପ ଏବଂ ସର୍ବୋପରି ମନୋମୁଗ୍ଧକର ସଂଗୀତ ଓ ତାଳ ରହିଛି ।

'ଡ଼ାଲ୍‌ଖାଇ' ନୃତ୍ୟରେ ଶ୍ରୁତିମଧୁର ଓ ଆନନ୍ଦଦାୟକ ସଂଗୀତ ରହିଛି । ଗୀତଗୁଡ଼ିକ ଗ୍ରାମୀଣ ଲୋକମାନଙ୍କର ନିତିଦିନିଆ ଜୀବନ ବର୍ଣ୍ଣନା କରିବା ସହ ତରୁଣୀମାନଙ୍କ ସୌନ୍ଦର୍ଯ୍ୟ ପ୍ରକାଶ କରିଥାଏ । ଏହାକୁ 'ଡ଼ାଲ୍‌ଖାଇ' ବୋଲି କୁହାଯାଏ, କାରଣ ଗୀତର ପ୍ରତ୍ୟେକ ପଦର ଆରମ୍ଭ ଓ ଶେଷରେ ତରୁଣୀ ବାନ୍ଧବୀଙ୍କୁ ସମ୍ବୋଧନ କରିବା ପାଇଁ ଏହି ଶବ୍ଦଟି ବ୍ୟବହାର କରାଯାଏ । ଡ଼ାଲ୍‌ଖାଇ ଦେବୀଙ୍କ ବାସସ୍ଥଳୀ ଡ଼ାଲ୍‌ଖାଇ କୁଠୀରେ ଯୁବତୀମାନେ ଡ଼ାଲ୍‌ଖାଇ ଗୀତ ଗାନ କରନ୍ତି ଏବଂ ପରେ ବାହାର ସ୍ଥାନରେ ନୃତ୍ୟ କରନ୍ତି । ନୃତ୍ୟଶିଳ୍ପୀମାନଙ୍କ ଦ୍ୱାରା ପରିହିତ ପୋଷାକ ଓ ଅଳଙ୍କାରମାନ ନୃତ୍ୟକୁ ଅଧିକ ଆକର୍ଷଣୀୟ କରିଥାଏ । ଡ଼ାଲ୍‌ଖାଇ ସଂଗୀତ, ନୃତ୍ୟ ଓ ବାଦ୍ୟ ଏକ ଉଲ୍ଲସିତ ପରିବେଶ ସୃଷ୍ଟି କରେ । ଏଥିରେ ବ୍ୟବହୃତ ହେଉଥିବା ବାଦ୍ୟଯନ୍ତ୍ରଗୁଡ଼ିକ ହେଇଛି ଢ଼ୋଲ, ନିଶାଣ, ତାସା, ମହୁରୀ ଓ ଝାଞ୍ଜ । 'ଡ଼ାଲ୍‌ଖାଇ-ରେ' ଶବ୍ଦଟି ଏହି ଗୀତରେ ବାରମ୍ବାର ବ୍ୟବହାର କରାଯାଏ ।

ଡ଼ାଲ୍‌ଖାଇ ନୃତ୍ୟ ଏକାଧିକ ସମ୍ବଲପୁରୀ ନୃତ୍ୟଦଳଙ୍କ ଦ୍ୱାରା ପରିବେଷଣ କରାଯାଉଛି । 'ରସରକେଲୀ' ଗୀତର ତାଳ ଅନୁସରଣ କରିଥିବା ବିଶ୍ୱପ୍ରସିଦ୍ଧ ଗୀତ 'ରଙ୍ଗବତୀ' ସମ୍ବଲପୁରୀ ଦ୍ୱୈତ ନୃତ୍ୟଭାବେ ଆଦୃତି ଲାଭ କରିଛି ।

**ସମ୍ବଲପୁରୀ (ବଜାସାଲ୍) ନୃତ୍ୟ :**

ଅନ୍ତର୍ଜାତୀୟ ପ୍ରସିଦ୍ଧି ଲାଭ କରିଥିବା ସମ୍ବଲପୁରୀ ନୃତ୍ୟର ଡ଼ାଲ୍‌ଖାଇ, ରସର୍‌କେଲୀ, ମାଏଲାଜଡ୍, ଚୁଟ୍‌କୁଚୁଟା ଏବଂ ବଜାସାଲ୍ ଭଳି ଅନେକ ନୃତ୍ୟକଳା ରହିଛି । ସମ୍ବଲପୁରୀ ବଜାସାଲ୍ ନୃତ୍ୟ ରୂପ କଳାହାଣ୍ଡି ଜିଲ୍ଲାର ବିଭିନ୍ନ ଅନୁଷ୍ଠାନର କଳାକାରମାନଙ୍କ ଦ୍ୱାରା ଲୋକପ୍ରିୟ ହୋଇପାରିଛି ।

ବଜାସାଲ୍ ହେଇଛି ଘର ବାହାରେ କାଠଖୁଣ୍ଟ, ବରଗା ଓ ଛୋଟ ଛୋଟ ଗଛଡ଼ାଳ ଓ ପତ୍ରକୁ ଛାତରୂପେ ବ୍ୟବହାର କରି ଏକ ଖୋଲା ସ୍ଥାନ ଯେଉଁଠାରେ ଯୁବକଯୁବତୀମାନେ ଢୋଲ ବା ''ସିଂହବାଦ୍ୟ'' ବୋଲି କୁହାଯାଉଥିବା ଏକ ବାଦ୍ୟଯନ୍ତ୍ର ଓ ମହୁରୀ ଇତ୍ୟାଦି ପାରମ୍ପରିକ ବାଦ୍ୟ ରାତିସାରା ବଜାନ୍ତି । କଳାହାଣ୍ଡି ଜିଲ୍ଲାର ଗ୍ରାମାଞ୍ଚଳରେ ବିବାହ ଉତ୍ସବ ବା ଅନ୍ୟ କୌଣସି ପର୍ବପର୍ବାଣୀ ଅବସରରେ ଏଭଳି କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥାଏ ।

ଢୋଲ ବାଦକମାନଙ୍କ ସହ ତାଳେ ତାଳେ ଯୁବତୀମାନେ ନୃତ୍ୟଗୀତ ପ୍ରସ୍ତୁତ କରନ୍ତି, ସେତେବେଳେ ସେମାନେ ନୃତ୍ୟକୁ ଉପଭୋଗ କରିବା ପାଇଁ ସେଠାରେ ଉପସ୍ଥିତ ଥିବା ଯୁବକମାନଙ୍କ ସହ ପ୍ରେମ ଓ ହାସ୍ୟରସାତ୍ମକ ବାକ୍ୟ ବିନିମୟ କରିଥାଆନ୍ତି ।

ଏହି ନୃତ୍ୟ କାର୍ଯ୍ୟକ୍ରମ ପୂର୍ବରୁ ପ୍ରାୟୋଜିତ ହୋଇଥାଏ କାରଣ ବିବାହୋତ୍ସବରେ ବହୁ ସଂଖ୍ୟାରେ ଏକତ୍ରିତ ହେଉଥିବା ଆତ୍ମୀୟସ୍ୱଜନଙ୍କ ରହିବା ପାଇଁ ବ୍ୟବସ୍ଥା ଗ୍ରାମାଞ୍ଚଳରେ ରହୁଥିବା ଲୋକମାନଙ୍କ ପକ୍ଷରେ ସମ୍ଭବ ହୋଇନଥାଏ । ସେଥିପାଇଁ ସେମାନେ ବଜାସାଲ୍‌ରେ ଅନୁଷ୍ଠିତ ହେଉଥିବା ନୃତ୍ୟଗୀତ ଓ ମଉଜ ମଜ୍‌ଲିସ୍‌ରେ ସେମାନଙ୍କ ରାତ୍ରିକାଳ ଅତିବାହିତ କରିଥାନ୍ତି ।

**ଦଣ୍ଡ ନୃତ୍ୟ:**

ଦଣ୍ଡ ନୃତ୍ୟ ହେଉଛି ବିଭିନ୍ନ ଅଙ୍ଗଚାଳନା ଦ୍ୱାରା ସୃଷ୍ଟି ହେଉଥିବା ଏକ ନୃତ୍ୟକଳା । ଏହା ଓଡ଼ିଶାରେ ବିଭିନ୍ନ ଉତ୍ସବାନୁଷ୍ଠାନରେ ଦିନତମାମ ପ୍ରଦର୍ଶନ କରାଯାଏ । ଏହି ନୃତ୍ୟର ଅଂଶଗ୍ରହଣକାରୀମାନେ ଭଗବାନ ଶିବ ଓ ଦେବୀ ପାର୍ବତୀଙ୍କର ଭକ୍ତ ଅଟନ୍ତି । ଦଣ୍ଡ ନୃତ୍ୟ ଚୈତ୍ର ଓ ବୈଶାଖ ମାସରେ ଅନୁଷ୍ଠିତ ହୁଏ । ଅନଗ୍ରସର ଜାତିର ପୁରୁଷ ସଭ୍ୟମାନଙ୍କ ଦ୍ୱାରା ଏହି ନୃତ୍ୟ ପର୍ଯ୍ୟାୟକ୍ରମେ ପ୍ରଦର୍ଶନ କରାଯାଏ । ଦଣ୍ଡ ନୃତ୍ୟର ଅଧିକାଂଶ ନର୍ତ୍ତକ ଯୋଡ଼ି ଯୋଡ଼ି ହୋଇ ନୃତ୍ୟ ପ୍ରଦର୍ଶନ କରନ୍ତି ଏବଂ ଗୀତ ମାଧ୍ୟମରେ କଥୋପକଥନ କରନ୍ତି । ଯଦିଓ ଏହା ଧର୍ମୀୟ ଭାବନା ଉପରେ ପର୍ଯ୍ୟବସିତ, ଲୋକଗୀତ ସହ ଯୋଡ଼ି ହୋଇ ରହିଥିବା ଏହି ନୃତ୍ୟ ଗ୍ରାମୀଣ ଜୀବନର ବିବିଧ ଚିତ୍ରକୁ ଦର୍ଶାଇଥାଏ । ଦଣ୍ଡ ନୃତ୍ୟର ସମସ୍ତ ରୀତିନୀତି ଚାଲିଥିବା ସମୟରେ ଢ଼ୋଲ ଦ୍ୱାରା ତାଳ ଓ ମହୁରୀ ଦ୍ୱାରା ସଂଗୀତ ପରିବେଷଣ କରାଯାଇଥାଏ । ଗୀତଗୁଡ଼ିକ ସମ୍ପୂର୍ଣ୍ଣ ଭକ୍ତିପୂର୍ଣ୍ଣ ଏବଂ ବୀରତ୍ୱପୂର୍ଣ୍ଣ ଗାଥାକାବ୍ୟ ଉପରେ ପର୍ଯ୍ୟବସିତ । ଏବେ ମଧ୍ୟ ଦଣ୍ଡ ନୃତ୍ୟ ଢ଼େଙ୍କାନାଳ, ଅନୁଗୁଳ, ନୟାଗଡ଼, ଗଞ୍ଜାମ ଜିଲ୍ଲା ସମେତ ରାଜ୍ୟର କେତେକ ଆଭ୍ୟନ୍ତରୀଣ ଅଞ୍ଚଳରେ ପ୍ରଚଳିତ ରହିଛି ।

**ଯୋଡ଼ି ଶଙ୍ଖ ଓ ରଣପା ନୃତ୍ୟ:**

ବାଦ୍ୟ ଓ ନୃତ୍ୟର ମିଳିତ ରୂପ ହେଉଛି ଯୋଡ଼ି ଶଙ୍ଖ । ଏହା ଗ୍ରାମ୍ୟ ସଙ୍ଗୀତର ଏକ ଅନନ୍ୟ ଉପସ୍ଥାପନା । ଶଙ୍ଖ ବାଦନ କଲାବେଳେ ଶଙ୍ଖୁଆଟି ଶଙ୍ଖ ଓ ଶାରୀରିକ ଗତିଶୀଳତା ମଧ୍ୟରେ ତାଳମେଳ ରକ୍ଷା କରେ । ଏହି କଳା ହେଉଛି ସାମରିକ, ଏହାର ଭାବ ଗ୍ରାମୀଣ ଓ ବେଶଭୂଷା ଅତୀବ ସୁନ୍ଦର । ଶଙ୍ଖ ସହିତ ଯେତେବେଳେ 'ଟାଙ୍ଗୁ' ଓ 'ମହୁରୀ' ମିଳିତ ଭାବେ ବାଦନ କରାଯାଏ, ସେତେବେଳେ ତାହା ବିଭିନ୍ନ ଭାବର ସାଙ୍ଗୀତିକ ମୂର୍ଚ୍ଛନା ସୃଷ୍ଟି କରେ । ଠେଙ୍ଗା ରଣପାର ଆକ୍ଷରିକ ଅର୍ଥ ହେଉଛି ପାଦରେ କାଠନିର୍ମିତ ଦୀର୍ଘ ସ୍ତମ୍ଭ ଲଗାଇ ନୃତ୍ୟ ପ୍ରଦର୍ଶନ । ପାଦତଳେ କାଠର ସ୍ତମ୍ଭ ସାହାଯ୍ୟରେ ଗତିକରି ପ୍ରଦର୍ଶିତ ନୃତ୍ୟକୁ 'ରଣପା ନୃତ୍ୟ' ବୋଲି କୁହାଯାଏ । ଓଡ଼ିଶାର ଦକ୍ଷିଣାଞ୍ଚଳର ଗଞ୍ଜାମ ଜିଲ୍ଲାରେ ଯାଦବ ସମ୍ପ୍ରଦାୟମାନଙ୍କ ମଧ୍ୟରେ ଏହି ନୃତ୍ୟ ପ୍ରଚଳିତ । ଦୋଳଯାତ୍ରା ଓ ଗିରି ଗୋବର୍ଦ୍ଧନ ପୂଜା ସମୟରେ ଯୁବକମାନେ ଏହି ନୃତ୍ୟ ପ୍ରଦର୍ଶନ କରିଥାନ୍ତି । ସେଠାରେ କୌଣସି ବାଦ୍ୟଯନ୍ତ୍ରର ଆବଶ୍ୟକତା ନଥାଏ । ସେମାନେ କେବଳ କୃଷ୍ଣଲୀଳା ସମ୍ବନ୍ଧୀୟ ଗୀତ ଗାନ କରନ୍ତି ଓ 'ବାଜେଣୀ' ନାମକ ଏକ ଲୌହ ନିର୍ମିତ 'ପାଦ'ର ତାଳ ଅନୁସାରେ ନୃତ୍ୟ କରନ୍ତି ଓ ଏହା ରୁଣୁଝୁଣୁ ଶବ୍ଦ ସୃଷ୍ଟି କରେ । ଏବେ ଏହାକୁ ନୂତନ ରୂପ ଦିଆଯାଇଛି ଓ ଏଥିରେ କିଛି ପରିବର୍ତ୍ତନ ଆସିଛି । ଏହି ନୃତ୍ୟର ଅନେକ ଶାରୀରିକ କୌଶଳ ରହିଛି ଯାହା ଦର୍ଶକମାନଙ୍କ ଦ୍ୱାରା ବହୁଳ ପ୍ରଶଂସିତ ହୋଇଥାଏ ।

ଯୋଡ଼ି ଶଙ୍ଖ ଓ ରଣପା ନୃତ୍ୟ ରାଜ୍ୟର ଏକ ପ୍ରଖ୍ୟାତ ସଂସ୍ଥା ଗଞ୍ଜାମ ନରେନ୍ଦ୍ରପୁରର 'ଗଙ୍ଗେଶ୍ୱର ଯୁଗଳ ଶଙ୍ଖ ବାଦ୍ୟ ଲୋକନୃତ୍ୟ କଳା ଅନୁଷ୍ଠାନ' ଦ୍ୱାରା ପରିବେଷିତ ହେଉଛି ।

**ଗଦବା ଲୋକ ନୃତ୍ୟ:**

ଗଦବା ଏକ ପ୍ରାଚୀନ ଜନଜାତି, ଭାଷା ଆଧାରରେ ସେମାନଙ୍କୁ ମୁଣ୍ଡାରି ବା କୋଲାରିଆଙ୍କୁ ଭାବେ ବର୍ଗୀକରଣ କରାଯାଇଛି । ସେମାନେ ମୁଖ୍ୟତଃ କୃଷିଜୀବୀ, ଶ୍ରମିକ ଏବଂ ଶିକାରୀ ଶ୍ରେଣୀର ଆଦିବାସୀ ରୂପେ ପରିଗଣିତ ହୁଅନ୍ତି । କୁହାଯାଏ ଯେ ସେମାନେ ଗୋଦାବରୀ ଅବବାହିକାରେ ବସବାସ କରୁଥିବା ଜନଜାତିର ମୂଳ ଅଧିବାସୀ, ପରେ କୋରାପୁଟରେ ବସତି ସ୍ଥାପନ କରିଛନ୍ତି ।

ଗଦବା ରମଣୀମାନେ ଏକ ପ୍ରକାର ସୁନ୍ଦର 'କେରାଙ୍ଗ' ଶାଢ଼ୀ ପରିଧାନ କରନ୍ତି । ତାହା ଉପରେ ନାଲି, ସବୁଜ ଓ ହଳଦୀ ରଙ୍ଗର ପଟା ପଟା ଦାଗ ରହିଥାଏ । ଗୋଟିଏ 'କେରାଙ୍ଗ' ଶାଢ଼ୀ ଆଜୀବନ ବ୍ୟବହୃତ ହୋଇପାରେ ।

ଗଦବାମାନଙ୍କର ପ୍ରଧାନ ନୃତ୍ୟମାନଙ୍କ ମଧ୍ୟରୁ 'ଢ଼େମ୍‌ସା' ହେଉଛି ଅନ୍ୟତମ । ଏହା ଏକ ପାରମ୍ପରିକ ନୃତ୍ୟ ଓ ସାଧାରଣତଃ ଦଶହରା, ପୌଷ ପୂର୍ଣ୍ଣିମା ଓ ଚୈତ୍ର

ପର୍ବ ଭଳି ସାର୍ବଜନୀନ ପର୍ବପର୍ବାଣୀ ସମୟରେ ଏହା ପ୍ରଦର୍ଶନ କରାଯାଏ । ଉଭୟ ପୁରୁଷ ଓ ମହିଳା ଏହି ନୃତ୍ୟରେ ଅଂଶଗ୍ରହଣ କରନ୍ତି ।

ଗଦବା ରମଣୀମାନେ ପ୍ରଥମେ ପ୍ରତ୍ୟେକ ପ୍ରତ୍ୟେକଙ୍କର ଅଣ୍ଟାର ପଛପଟେ ହାତ ରଖି ଅର୍ଦ୍ଧ–ବୃତ୍ତାକାରରେ ଛିଡ଼ା ହୁଅନ୍ତି । ସେମାନେ ବାମ ଗୋଡ଼ ଆଗକୁ ଓ ଡ଼ାହାଣ ଗୋଡ଼ ପଛକୁ ରଖି ଏକ–ଦୁଇ ଭଳି ସାଧାରଣଭାବେ ପାଦ ପକାଇ ନୃତ୍ୟ ଆରମ୍ଭ କରନ୍ତି । ବେଳେବେଳେ ସେମାନେ ଦୁଇଗୋଟି ଦଳରେ ବିଭକ୍ତ ହୋଇ ଏବଂ ପରେ ଏକତ୍ରିତ ହୋଇ ନୃତ୍ୟ କରନ୍ତି । ସେତେବେଳେ ସେମାନେ ପୁଣିଥରେ ଦ୍ରୁତ ଗତିରେ ଆଣ୍ଠୁ ଭାଙ୍ଗି ପଛକୁ ଓ ଆଗକୁ ଆଠ ଓ ଚାରି ମୁଦ୍ରାରେ ପାଦ ପକାଇ ନୃତ୍ୟ କରନ୍ତି ।

ଗଦବା ପୁରୁଷ ଓ ନାରୀ ବର୍ଷତମାମ ଅନ୍ୟ ଜନଜାତିମାନଙ୍କର ନୃତ୍ୟ ମଧ୍ୟ ନିଜ ଆମୋଦ ପ୍ରମୋଦ ନିମନ୍ତେ ପ୍ରଦର୍ଶନ କରିଥାଆନ୍ତି । ବିଭିନ୍ନ ସାମାଜିକ ଅନୁଷ୍ଠାନମାନଙ୍କରେ ମଧ୍ୟ ଏହି ସବୁ ନୃତ୍ୟ ପ୍ରଦର୍ଶନ କରାଯାଏ ।

ଗଦବା ନୃତ୍ୟସବୁ ଅତ୍ୟନ୍ତ ଆକର୍ଷଣୀୟ ଓ ଆମୋଦଦାୟକ ହୋଇଥାଏ । ଗଦବାମାନେ ବ୍ୟବହାର କରୁଥିବା ବାଦ୍ୟଯନ୍ତ୍ରଗୁଡ଼ିକ ହେଲା ଢ଼ୋଲ, ଟମକ ଓ ମହୁରୀ । ସଂଗୀତର ଶୈଳୀଗୁଡ଼ିକ ପ୍ରାଚୀନ ଓ ସରଳ । ଗୀତଗୁଡ଼ିକ ସାଧାରଣ ତାଳ ସହିତ ତିନିରୁ ଚାରି ଧାଡ଼ିର ହୋଇଥାଏ ।

### ଖରିଆ ନୃତ୍ୟ ( ମୟୂରଭଞ୍ଜ)

ଖରିଆ ଯୁବକ ଯୁବତୀ ଏକତ୍ର ନୃତ୍ୟ କରନ୍ତି । କେବେ କେବେ ସେମାନେ ପୃଥକ୍ ହୋଇ ଅଲଗା ଅଲଗା ଧାଡ଼ିରେ ନୃତ୍ୟ କରନ୍ତି । କେତେକ କ୍ଷେତ୍ରରେ ବୃଦ୍ଧବୃଦ୍ଧାମାନେ ନୃତ୍ୟରେ ଅଂଶ ଗ୍ରହଣ କରନ୍ତି । ବାଦ୍ୟଯନ୍ତ୍ର ଓ ଗୀତ ସାଙ୍ଗରେ ନୃତ୍ୟ ପରିବେଷଣ କରାଯାଏ । ମୁଖ୍ୟତଃ, ଖରିଆ ନୃତ୍ୟକୁ ୫ ଗୋଟି ଶ୍ରେଣୀରେ ବିଭକ୍ତ କରାଯାଇଛି । ଯଥା : (କ) ହରିଆରୋ, (ଖ) କିନଭର୍ (ଗ) ହଲ୍କା, (ଘ) କୁଡ୍ବିଙ୍ଗ୍ ଓ (ଙ) ଯଦୁରା । ତାଳ ଅନୁସାରେ ଶରୀରକୁ ଦୋଳାୟମାନ କରିବା ଖରିଆ ନୃତ୍ୟର ଆକର୍ଷଣୀୟ ବୈଶିଷ୍ଟ୍ୟ । ପର୍ଯ୍ୟାୟକ୍ରମେ ଆଗକୁ ଓ ପଛକୁ ଗତି କରି, ହାଲ୍କା ଭାବେ ଓ ଜୋର୍‌ରେ ପାଦ ପକାଇ ଏବଂ ବେଳେବେଳେ ଚକ୍ରାକାରରେ ସ୍ତମ୍ଭ ଭଳି ଖରିଆମାନେ ନୃତ୍ୟ କରିଥାନ୍ତି ।

### କୋୟା ନୃତ୍ୟ (କୋରାପୁଟ) :

କୋୟାମାନେ ଏକ ଅଦ୍ଭୁତ ନୃତ୍ୟ ପ୍ରଦର୍ଶନ କରନ୍ତି ଯେଉଁଥିରେ ପୁରୁଷମାନେ ସେମାନଙ୍କ ମୁଣ୍ଡରେ ମଇଁଷି କିମ୍ବା ବନ୍ୟ ମଇଁଷିର ଶିଙ୍ଗକୁ ବାନ୍ଧି ଦିଅନ୍ତି ଓ ଛାୟା ଯୁଦ୍ଧରେ ବ୍ୟାପୃତ ହୋଇଯାଆନ୍ତି । ମହିଳାମାନେ ମଧ୍ୟ ଜଣେ ଅନ୍ୟ ଜଣଙ୍କ କାନ୍ଧରେ ହାତ ପକାଇ ବୃତ୍ତାକାରରେ ଅତି ସୁନ୍ଦର ଭାବେ ନୃତ୍ୟ କରନ୍ତି ।

### ପରଜା ନୃତ୍ୟ (କୋରାପୁଟ) :

ପରଜା ନୃତ୍ୟରେ ଗ୍ରାମର ସମସ୍ତ କିଶୋରୀ ଓ ଅଳ୍ପବୟସ୍କା ବିବାହିତା ମହିଳାମାନେ ଏକ ଶୃଙ୍ଖଳ ରଚନା କରି ଦଣ୍ଡାୟମାନ ହୁଅନ୍ତି । ଏଥିରେ ପ୍ରତ୍ୟେକ ଯୁବତୀ ତା'ର ପାର୍ଶ୍ୱରେ ଥିବା ଯୁବତୀର ଅଣ୍ଟାକୁ ଡ଼ାହାଣ ହାତରେ ଧରି ତୃତୀୟ ଯୁବତୀର ବାମ କହୁଣୀକୁ ଜାବୁଡ଼ି ଧରେ । କିଶୋରୀମାନେ ସେମାନଙ୍କର ଆକାର ଅନୁସାରେ ନିଜକୁ ସଜାଡ଼ି ରଖନ୍ତି – ନ'ରୁ ଏଗାର ବର୍ଷ ଭିତରେ ଥିବା କମ୍ ବୟସର ପିଲା ଗୋଟିଏ ପାର୍ଶ୍ୱରେ ଛିଡ଼ା ହୁଅନ୍ତି ଏବଂ ଅପର ପାର୍ଶ୍ୱରେ ଦଳର ମୁଖ୍ୟ ସମୟ ସୂଚାଇବା ପାଇଁ ତାଙ୍କ ଡ଼ାହାଣ ହାତରେ ଏକ ମୟୂର ପରର ଦଣ୍ଡ ଧରି ରହିଥାଆନ୍ତି । ତିନିରୁ ଚାରିଜଣ ଯୁବକ ନୃତ୍ୟ ହେଉଥିବା ସ୍ଥାନର ମଧ୍ୟସ୍ଥଳରେ ଛିଡ଼ା ହୁଅନ୍ତି ଏବଂ ଗୀତାର ଭଳି ଏକ ବାଦ୍ୟଯନ୍ତ୍ର ବଜାଇ ଗୀତ ଗାୟନ କରନ୍ତି । ସେତିକିବେଳେ ଲମ୍ବା ଶୃଙ୍ଖଳରେ ଏକତ୍ରିତ ହୋଇଥିବା ଯୁବତୀମାନେ ସେମାନଙ୍କର ଦଳପତିଙ୍କ ଦୋଳାୟିତ ଦଣ୍ଡର ନିର୍ଦ୍ଦେଶ ଅନୁଯାୟୀ ଯଥା ସମୟରେ ନୃତ୍ୟ କରନ୍ତି । ଏଥିରେ ସେମାନେ ପର୍ଯ୍ୟାୟକ୍ରମେ କେତେବେଳେ ଲମ୍ବାଧାଡ଼ି ତ

ଆଉ କେତେବେଳେ ବକ୍ରକୁଣ୍ଡଳୀ ଆକାରରେ ଓ ଆଠ ଅଙ୍କ (୮) ଆକୃତିରେ ହୃଦୟଗ୍ରାହୀ କଳା ନୈପୁଣ୍ୟ ପ୍ରଦର୍ଶନ କରିଥାଆନ୍ତି, ପୁଣି ତା'ପରେ ସେମାନେ ସେମାନଙ୍କର ପୂର୍ବ ଧାଡ଼ିକୁ ଫେରିଯାଇ ଗୋଟିଏ ଧାଡ଼ିରେ ଦଣ୍ଡାୟମାନ ହୁଅନ୍ତି । ସେମାନେ ସାପ ଭଳି କିଛି ଉଜ୍ଜ୍ୱଳ ରଙ୍ଗୀନ୍ ଜିନିଷକୁ ପବନରେ ଫୁଙ୍କି ବାରମ୍ବାର କେତେବେଳେ ଭିତରକୁ ତ କେତେବେଳେ ବାହାରକୁ, କେତେବେଳେ ଧୀରେ ତ କେତେବେଳେ ଅତି ସୁନ୍ଦର ଭାବେ ଜୋର୍‌ରେ ନୃତ୍ୟ ପ୍ରଦର୍ଶନ କରନ୍ତି । ଏହାକୁ ଦର୍ଶକମାନେ ଦେଖି ହର୍ଷୋଲ୍ଲାସରେ ବିଭୋର ହୋଇଯାଆନ୍ତି । ନୃତ୍ୟାଙ୍ଗନାମାନେ ନିଗୂଢ଼ ଅର୍ଥସମ୍ବଳିତ ଗୀତ ବୋଲି ଅତ୍ୟନ୍ତ ଆନନ୍ଦିତ ହୋଇ ଉଠନ୍ତି, ମାତ୍ର ମଧ୍ୟସ୍ଥଳରେ ଥିବା ଯୁବକମାନେ ଅନବରତ ଗୀତ ଗାୟନ କରି ଚାଲିଥାଆନ୍ତି । ନୃତ୍ୟ କରୁଥିବା ଦଳର ମୁଖ୍ୟ ପ୍ରାୟ ୬ ପ୍ରକାର ଭିନ୍ନ ଭିନ୍ନ ତାଳରେ ପାଦ ପକାଏ ଏବଂ ସେତିକିବେଳେ ନୃତ୍ୟରତା ଯୁବତୀମାନେ ସଙ୍ଗୀତର ତାଳେ ତାଳେ ସେମାନଙ୍କର ଶରୀରକୁ ଗତିଶୀଳ କରିବା ସଙ୍ଗେ ସଙ୍ଗେ ସେମାନେ ପରିଧାନ କରିଥିବା ଏକ ପ୍ରକାର ମିଶ୍ରିତ ଧାତୁରେ ନିର୍ମିତ ଚୁଡ଼ିରେ ରୁଣୁଝୁଣୁ ଶବ୍ଦ ସୃଷ୍ଟି କରନ୍ତି । ଉତ୍ତମ ରୂପେ ତୈଳ ଲଗାଇ ଓ ପୁଷ୍ପରେ ସଜ୍ଜିତ ହୋଇଥିବା ମଧୁଚନ୍ଦ୍ର ପରିଧାନ ପୂର୍ବକ ଏକ ହାସ୍ୟରସାତ୍ମକ ପରିବେଶରେ ଯୁବତୀମାନେ ଅତୀବ ସୁନ୍ଦର ଦେଖାଯାଆନ୍ତି ।

### ଓରାଓଁ ନୃତ୍ୟ (ସୁନ୍ଦରଗଡ଼):

ଗ୍ରାମ୍ୟ ମୁଖ୍ୟଙ୍କ ଘର ନିକଟସ୍ଥ (ଗାଁ କ୍ଲବ୍ ଗୃହ ଆଗରେ ଥିବା) ମଣ୍ଡପ ସମ୍ମୁଖରେ ମୁକ୍ତାକାଶରେ ଏହି ନୃତ୍ୟ ପ୍ରଦର୍ଶିତ ହୋଇଥାଏ । ଯେତେବେଳେ ଯୁବକମାନେ ମଣ୍ଡପ (ଆକ୍ଷରିକ ଅର୍ଥରେ ପିଣ୍ଡା) ନିକଟକୁ ଯାଇ ଢୋଲ ବାଦନ କରନ୍ତି, ଯୁବତୀମାନେ ସେମାନଙ୍କର ଘରୁ ବାହାରି ଯାଇ ସେଠାରେ ପହଞ୍ଚନ୍ତି । ଏହି ନୃତ୍ୟର ବୈଶିଷ୍ଟ୍ୟ ହେଉଛି ଗୋଲାକୃତିରେ ସଜ୍ଜିତ ହୋଇ ନୃତ୍ୟ ପରିବେଷଣ । ପ୍ରତ୍ୟେକ ପ୍ରତ୍ୟେକଙ୍କର ହାତ ଧରି ଯୁବକମାନେ ନୃତ୍ୟ ଆରମ୍ଭ କରନ୍ତି ଓ ଜଣେ କୁଶଳୀ ନର୍ତ୍ତକଙ୍କ ନେତୃତ୍ୱରେ ଅନେକ ଥର ଗୋଲାକାରରେ ସଜ୍ଜିତ ହୋଇ ନୃତ୍ୟ କରନ୍ତି । ତା'ପରେ ଡ୍ରମ୍‌ର ତାଳ ପରିବର୍ତ୍ତନ ହୁଏ, ଯାହାକି ପ୍ରକୃତ ନୃତ୍ୟର ପ୍ରାରମ୍ଭର ସୂଚନା ଦିଏ । ସେତେବେଳେ ନୃତ୍ୟ ଆରମ୍ଭ ହେବା ପାଇଁ ଅନେକ ସମୟ ଧରି ଅପେକ୍ଷା କରି ରହିଥିବା ଯୁବତୀମାନେ ନୃତ୍ୟ ଆରମ୍ଭ କରନ୍ତି । ସେମାନେ ବାମ ଗୋଡ଼ ଆଗକୁ ଓ ଡ଼ାହାଣ ଗୋଡ଼ ପଛକୁ କରି ତଥା ଶରୀରକୁ ଆଗକୁ ଓ ପଛକୁ ବଙ୍କା କରି ବୃତ୍ତାକାରରେ ନୃତ୍ୟ କରନ୍ତି । ସେତେବେଳେ ସେମାନେ ସେମାନଙ୍କର ଉଭୟ ପାର୍ଶ୍ୱରେ ଥିବା ଯୁବତୀଙ୍କ ଅଣ୍ଟାରେ ହାତକୁ ହାତ ଛନ୍ଦି ଠିଆ ହୋଇଥାଆନ୍ତି । ଡ୍ରମ୍ ବାଦ୍ୟ ତାଳର ପରିବର୍ତ୍ତନ ଅନୁଯାୟୀ ନୃତ୍ୟର ପଦଚାଳନା ମଧ୍ୟ ବଦଳିଥାଏ ।

ଶରୀରର ଅଣ୍ଟା ଠାରୁ ଉପରକୁ ଅଙ୍ଗଚାଳନା, ଆଣ୍ଠୁ ଭାଙ୍ଗି ନାଚିବା, ଡ଼ାହାଣ ପାଦକୁ ପଛକୁ ପକାଇବା ଓ ବାମପାଦକୁ ଆଗକୁ ନେବା ଏବଂ ନିତମ୍ବର ଚଳନ ଆଦି ଏହି ନୃତ୍ୟର କେତେକ ନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟ ।

ଗୀତ ଓ ବାଦ୍ୟର ତାଳେ ତାଳେ ଏହି ନୃତ୍ୟ ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ଚାଲେ । ନୃତ୍ୟ ମଝିରେ ବେଳେ ବେଳେ ହାସ୍ୟରସ ପରିବେଷଣକାରୀମାନଙ୍କ ଆବିର୍ଭାବ ଘଟେ । ଏହି ଚରିତ୍ରମାନେ ସାଧାରଣତଃ କୌତୁହଳପ୍ରଦ ପୋଷାକ ପରିଧାନ କରିଥିବା କିଛି ବୟସ୍କ ବ୍ୟକ୍ତି । ସେମାନେ ମଦ୍ୟପାନ କରିଥାଆନ୍ତି । ସେମାନଙ୍କ ଆଚରଣ ମହିଳା ଓ ପିଲାମାନଙ୍କୁ ଆନନ୍ଦ ପ୍ରଦାନ କରିଥାଏ ।

### କିଶାନ ନୃତ୍ୟ (ସୁନ୍ଦରଗଡ଼)

କିଷାନମାନେ ଭିନ୍ନ ଭିନ୍ନ ଉତ୍ସବରେ ଫାଗୁଣ୍, ଯଦୁର୍, କର୍‌ମା, ଝୁମର୍ ଓ ବିଣା ନୃତ୍ୟ ପ୍ରଦର୍ଶନ କରନ୍ତି । ପ୍ରତ୍ୟେକ ନୃତ୍ୟର ସ୍ୱତନ୍ତ୍ର ପଦଚାଳନା ଓ ଭଙ୍ଗୀ ରହିଛି । ସେମାନେ ମଧ୍ୟ ବୃତ୍ତାକାରରେ ନୃତ୍ୟ ପ୍ରଦର୍ଶନ କରନ୍ତି । ସେଥିରେ ଉଭୟ ପୁରୁଷ ଓ ମହିଳା ଅଂଶଗ୍ରହଣ କରନ୍ତି । ବିହା ବା ବିବାହ ନୃତ୍ୟରେ ସେମାନେ ନିଜ ଭାଷାରେ ବିବାହ ଗୀତ ଗାୟନ କରନ୍ତି । ସେମାନଙ୍କର ସମସ୍ତ ନୃତ୍ୟରେ ମାଦଳ ହେଉଛି ଏକମାତ୍ର ବାଦ୍ୟଯନ୍ତ୍ର ।

### ଚାଙ୍ଗୁ ନୃତ୍ୟ (ସୁନ୍ଦରଗଡ଼)

ବଣାଇର ପାର୍ବତ୍ୟାଞ୍ଚଳର ଘଞ୍ଚ ଜଙ୍ଗଲରେ ବସବାସ କରୁଥିବା ପାହାଡ଼ି ଭୂୟାଁମାନଙ୍କ ମଧ୍ୟରେ ଚାଙ୍ଗୁ ନୃତ୍ୟ ଏବେ ମଧ୍ୟ ପ୍ରଚଳିତ ଅଛି । ଏକା ଗ୍ରାମର ଅଥବା ପଡୋଶୀ ଗ୍ରାମର ଭୂୟାଁ ଯୁବକଯୁବତୀମାନେ ନିଜ ଇଚ୍ଛାନୁସାରେ ଏକାଠି ନାଚିବାର ସ୍ୱାଧୀନତା ଅର୍ଜନ କରିଥାନ୍ତି । ନୃତ୍ୟ ପ୍ରଦର୍ଶନ ସମୟରେ ଜଣେ ଯୁବକ ପସନ୍ଦ ମୁତାବକ ବିବାହ ଇଚ୍ଛା ରଖି ଅନ୍ୟ ଜଣେ ଯୁବତୀର ହାତ ଧରି ଜଙ୍ଗଲକୁ ଚାଲିଯାଏ । ଅଧିକାଂଶ ସମୟରେ ଏଭଳି ବିବାହ ଦେଖିବାକୁ ମିଳେ ଓ ଏଗୁଡ଼ିକୁ ପାରମ୍ପରିକ ସାମାଜିକ ସ୍ୱୀକୃତି ମିଳିଥାଏ ।

ଭୂୟାଁମାନଙ୍କର ଚାଙ୍ଗୁର କେତେକ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ରହିଛି, ମାତ୍ର ଅନ୍ୟ ଜନଜାତିଙ୍କ ନୃତ୍ୟ ପରି ଏହା ଏତେ ଜୀବନ୍ତ ନୁହେଁ । ପ୍ରତ୍ୟେକ ଚାଙ୍ଗୁବାଦକ ଗୋଟିଏ ଲେଖାଁଏ ଚାଙ୍ଗୁ ବଜାଇ ବୃତ୍ତାକାରରେ ଡ଼େଇଁ ଡ଼େଇଁ ଚାଲନ୍ତି । ସେମାନେ ଗ୍ରାମର ଗୀତିକାରମାନଙ୍କ ଦ୍ୱାରା ରଚିତ ଛାନ୍ଦ, ଚଉପଦୀ ଓ ଅନ୍ୟାନ୍ୟ କାମୋଦ୍ଦୀପକ ଗୀତ ଗାନ କରନ୍ତି । ଯୁବତୀମାନେ ନୃତ୍ୟ କରୁଥିଲାବେଳେ ସାଧାରଣତଃ ନିଜକୁ ଆବୃତ ରଖିଥାନ୍ତି ଓ ଯୁବକମାନଙ୍କର ଠିକ୍ ବିପରୀତ ପାର୍ଶ୍ୱରେ ନୃତ୍ୟ କରନ୍ତି । ସେମାନେ ଆଗକୁ ଗଲେ ଯୁବକମାନେ ପଛକୁ ଯାଆନ୍ତି ଓ ଅନୁରୂପଭାବରେ ଯୁବକମାନେ ଆଗକୁ ଗଲେ ଯୁବତୀମାନେ ପଛକୁ ଯାଇଥାଆନ୍ତି । କଟିଦେଶର ଚାଳନା ଓ ଭଙ୍ଗୀକୁ ଏହି ନୃତ୍ୟରେ ପ୍ରାଧାନ୍ୟ ଦିଆଯାଇଥାଏ ।

### ଝୁମର୍ ନୃତ୍ୟ (ସୁନ୍ଦରଗଡ଼)

ଝୁମର୍ ନୃତ୍ୟ ବଣାଇ ଅଞ୍ଚଳର ମୁଣ୍ଡାମାନଙ୍କ ମଧ୍ୟରେ ପ୍ରଚଳିତ । ଝୁମର୍ ଗୀତ ଅନୁସାରେ ଏହି ନୃତ୍ୟ ପ୍ରଦର୍ଶନ ହେଉଥିବାରୁ ଏହାର ନାମକରଣ ଏପରି ହୋଇଛି । ଏହା ଏକ ଦଳଗତ ନୃତ୍ୟ ଏବଂ ଏଥିରେ ଉଭୟ ପୁରୁଷ ଓ ମହିଳା ଅଂଶ ଗ୍ରହଣ କରିଥାଆନ୍ତି । ମହନ୍ତୋମାନେ ମଧ୍ୟ ଝୁମର ନୃତ୍ୟ କରନ୍ତି, କିନ୍ତୁ ଏଥିରେ କେବଳ ପୁରୁଷମାନେ ଅଂଶ ଗ୍ରହଣ କରିଥାଆନ୍ତି । ଚୈତ୍ର ପର୍ବ, କୁମାର ଉତ୍ସବ ଓ କାଳୀପୂଜା ଅବସରରେ ମଧ୍ୟ ଏହି ନୃତ୍ୟ ପ୍ରଦର୍ଶନ କରାଯାଏ । ମଣିବନ୍ଧ, କଟିଦେଶ ଓ ଶରୀରର ତରଙ୍ଗାୟିତ ଗତି ହେଉଛି ଏହି ନୃତ୍ୟର ବିଶେଷତ୍ୱ । ଏହାର ମିଶ୍ରିତ ଅଙ୍ଗଭଙ୍ଗୀ ପାଇଁ ଏହି ନୃତ୍ୟ ଅତ୍ୟନ୍ତ ମୁଗ୍ଧକର ମନେ ହୋଇଥାଏ । ଏଥିରେ ତାଳ ଓ ନୃତ୍ୟର ସୁସମନ୍ୱୟ ଘଟିଥାଏ ।

### ବଣ୍ଡି ଚୁତାଲ (ସୁନ୍ଦରଗଡ଼)

ବଣ୍ଡି ଚୁତାଲର ଅର୍ଥ ହେଉଛି ଏକ ଭଙ୍ଗା ବୋତଲ । ଏହାର ଏଭଳି ନାମକରଣ ବିଷୟରେ କିଛି ଜଣାନାହିଁ । ମେଳା, ମହୋତ୍ସବ ଓ କେତେକ ପବିତ୍ର ଅବସରରେ ଏହି ନୃତ୍ୟ ପ୍ରଦର୍ଶିତ ହୋଇଥାଏ । ୨ ରୁ ୩ ଜଣ ପୁଅପିଲା ନିଜ ନିଜକୁ ଝିଅ ବେଶରେ ସଜାଇ ହୋଇ କାମୋଦ୍ଦୀପକ ମୁଦ୍ରାରେ ନୃତ୍ୟ କରନ୍ତି । ଆଉ ଜଣେ ବ୍ୟକ୍ତି କୌଣସି ନୀତି ନିୟମ ବିନା ସେମାନଙ୍କ ସହ ଏଣୁ ତେଣୁ ନୃତ୍ୟ କରେ । ସେମାନେ ସମସ୍ତେ ପ୍ରାୟତଃ ପ୍ରେମ ଗୀତ ଗାଇ ନୃତ୍ୟ କରନ୍ତି । ଏହି ଗୀତଗୁଡ଼ିକୁ ସମବେତ ସ୍ୱରରେ ଗୋଟିଏ ଗାୟକ ଦଳ ପୁନର୍ବାର ଦୋହରାଇଥାଆନ୍ତି । ବେଳେବେଳେ ପୁରାଣ କଥାକୁ ନେଇ ଗୀତ ଗାନ କରାଯାଏ । ନୃତ୍ୟ ସହିତ ଢ଼ୋଲକ ଓ ପିତ୍ତଳ ଝାଞ୍ଜ ବଜାଯାଇଥାଏ । କେବେକେବେ ନୃତ୍ୟର ଠାଣି ଓ ଗୀତଗୁଡ଼ିକ ଅଶ୍ଳୀଳ ମନେହୋଇଥାଏ ଓ ନୃତ୍ୟଟି ଲଘୁ ଆମୋଦପ୍ରମୋଦର ମାଧ୍ୟମ ହୋଇଥାଏ ।

### କର୍‌ମା ନୃତ୍ୟ (ସମ୍ବଲପୁର):

ସମ୍ବଲପୁରର ବିଞ୍ଝାଲ, ଖରିଆ, ଓରାଓଁ, କିଶାନ ଓ କୋଲ ଜନଜାତିର ସବୁଠୁ ବେଶୀ ମନୋରମ ନୃତ୍ୟ ହେଉଛି କରମା । ଏହି ପାରମ୍ପରିକ ନୃତ୍ୟ 'କର୍‌ମସାନି' ବା 'କରମାରାଣୀ' ଦେବୀଙ୍କ ସମ୍ମାନାର୍ଥେ ପ୍ରଦର୍ଶନ କରାଯାଏ । ସେ ସନ୍ତାନପ୍ରାପ୍ତିର ଆର୍ଶୀବାଦ ଦିଅନ୍ତି ତଥା ସୌଭାଗ୍ୟ ଓ ଦୁର୍ଭାଗ୍ୟ ପାଇଁ ଦାୟୀ ଅଟନ୍ତି । ଭାଦ୍ର ଶୁକ୍ଳ ଏକାଦଶୀ ଦିନ ଯୁବକଯୁବତୀମାନେ ଗୀତ ଗାଇ ଓ ଢୋଲ ବଜାଇ ଜଙ୍ଗଲ ମଧ୍ୟକୁ ପ୍ରବେଶ କରନ୍ତି । 'କରମ' ବା ଶାଳ ବୃକ୍ଷର ଏକ ଡ଼ାଳ ଗ୍ରାମକୁ ନିଆଯାଏ । ଗ୍ରାମ ପୂଜକ

ଏହି ଡ଼ାଳ ଉପରେ ମଦ ଢ଼ାଳି ପୂଜା କରନ୍ତି ଏବଂ ଚାଉଳ (ଭାତ) ଓ ମିଠା ଭୋଗ ରୂପେ ଅର୍ପଣ କରନ୍ତି । ଗୋଟାଏ କୁକୁଡ଼ା ବଳି ପଡ଼େ ଓ ଏହାର ରକ୍ତ ସେହି ଡ଼ାଳ ଉପରେ ଅର୍ପଣ କରାଯାଏ ।

ନୃତ୍ୟ ପ୍ରଦର୍ଶନ ପୂର୍ବରୁ ନୃତ୍ୟଶିଳ୍ପୀମାନେ ମଞ୍ଚସ୍ଥଳୀକୁ ଦୁଇ ଧାଡ଼ିରେ ପ୍ରବେଶ କରନ୍ତି । ଢୋଲ ଓ ଝାଞ୍ଜବାଦକ ତଥା ଗାୟକମାନେ ସମତାଳରେ ସେମାନଙ୍କ ସହ ଯୋଗଦିଅନ୍ତି । ବିଞ୍ଝାଲ ନୃତ୍ୟଶିଳ୍ପୀମାନେ ଯୁବସୁଲଭ ଉତ୍ସାହ ଓ ଉନ୍ମାଦନାରେ ନୃତ୍ୟ ପରିବେଷଣ କରନ୍ତି ଓ ଏହା ଖୁବ୍ ମନୋରମ ତଥା ଆନନ୍ଦଦାୟକ ହୋଇଥାଏ । ନୃତ୍ୟ ଚାଲିଥିଲାବେଳେ ଡ୍ରମ୍‌ର ତାଳ ଅନୁସାରେ ନୃତ୍ୟଶିଳ୍ପୀମାନେ କେବଳ "ହାଏ" ଶବ୍ଦ ଉଚ୍ଚାରଣ କରନ୍ତି । ନୃତ୍ୟ ଦଳର ପ୍ରତ୍ୟେକଟି ସଦସ୍ୟ ନାଲି ପଗଡ଼ି ପରିଧାନ କରନ୍ତି । ମୁଣ୍ଡ ଉପରେ ମୟୂର ପର ବନ୍ଧାଯାଇଥାଏ ଓ ନୃତ୍ୟ କଲାବେଳେ ସମସ୍ତେ ଡ଼ାହାଣ କିମ୍ବା ବାମ ହାତରେ ଏକ ଦର୍ପଣ ଧରିଥାଆନ୍ତି । କୁମାରୀମାନେ ଖୁବ୍ ଆଗ୍ରହର ସହିତ ନୃତ୍ୟ ଉପଭୋଗ କରନ୍ତି ଏବଂ ନୃତ୍ୟ କରୁଥିବା ଯୁବକମାନଙ୍କ ମଧ୍ୟରୁ ସେମାନେ ନିଜ ନିଜର ପସନ୍ଦ ମୁତାବକ ଜୀବନସାଥୀ ବାଛିବା ପାଇଁ ସୁଯୋଗ ପାଆନ୍ତି । ଯୁବକମାନଙ୍କର ନୃତ୍ୟ ବନ୍ଦ ହେବା ପରେ ଯୁବତୀମାନେ ନୃତ୍ୟ କରିବା ଆରମ୍ଭ କରନ୍ତି ଏବଂ ବିଭିନ୍ନ ମୁଦ୍ରାରେ ନୃତ୍ୟ କରନ୍ତି । ସେମାନେ ସେମାନଙ୍କ ଶରୀରକୁ ଆଗ ଓ ପଛ, ଡ଼ାହାଣ ଓ ବାମ କରି, ଆଣ୍ଠୁ ଭାଙ୍ଗି, ପ୍ରତ୍ୟେକ ପ୍ରତ୍ୟେକଙ୍କର ହାତ ଛନ୍ଦି ନୃତ୍ୟ କରନ୍ତି ଓ ମଝିରେ ମଝିରେ ତାଳି ମାରନ୍ତି । ନୃତ୍ୟ ମଝିରେ ଯୁବତୀମାନେ ଭିନ୍ନ ଭିନ୍ନ ସ୍ୱରରେ ଏକ ସୁଦୀର୍ଘ ଗୀତ ଗାଇ ବର୍ଷା ପାଇଁ ପ୍ରାର୍ଥନା କରିଥାଆନ୍ତି । ଯୁବତୀମାନଙ୍କ ନୃତ୍ୟ ଶେଷରେ ଉଭୟ ଯୁବକ ଓ ଯୁବତୀ ଦୁଇଟି ଅଲଗା ଅଲଗା ଧାଡ଼ିରେ ପରଦିନ ସକାଳ ପର୍ଯ୍ୟନ୍ତ ନୃତ୍ୟ କରନ୍ତି । ପ୍ରତ୍ୟୁଷରେ ବୃକ୍ଷଡ଼ାଳକୁ ଏକ ଶୋଭାଯାତ୍ରାରେ ନିଆଯାଇ ଏକ ପୁଷ୍କରିଣୀ ବା ଝରଣାରେ ବିସର୍ଜନ କରାଯାଏ ।

### ଡ଼ାଲଖାଇ ନୃତ୍ୟ (ସମ୍ବଲପୁର):

ଦଶହରା, ଭାଇ ଜିଉନ୍ତିଆ, ଫଗୁଣ ପୁନେଇଁ ଓ ଅନ୍ୟ ପର୍ବପର୍ବାଣୀରେ ବିଞ୍ଝାଲ ସଉରା, କୁନ୍ଦା ଓ ମିର୍ଦ୍ଧା ଜନଜାତିର ଯୁବତୀମାନେ ନୃତ୍ୟ ପରିବେଷଣ କରନ୍ତି । ନୃତ୍ୟ ଆରମ୍ଭରେ ଯୁବତୀମାନେ ଗୋଟିଏ ଧାଡ଼ିରେ ବା ଅର୍ଦ୍ଧ–ବୃତ୍ତାକାରରେ ଦଣ୍ଡାୟମାନ ହୁଅନ୍ତି ଏବଂ ଗୀତ ଗାୟନ କରନ୍ତି । ଏହାକୁ ଡ଼ାଲଖାଇ ନୃତ୍ୟ କୁହାଯାଏ ।

ନୃତ୍ୟ ପରିବେଷଣ ବେଳେ ବିଭିନ୍ନ ପ୍ରକାରର ଡ୍ରମ୍ ଯଥା– ଢ଼ୋଲ, ନିଶାଣ ଓ ଟମ୍‌କୀ ଏବଂ ତୁରୀ, ମହୁରୀ ଆଦି ବାଦ୍ୟଯନ୍ତ୍ର ବଜାଯାଇଥାଏ । ନୃତ୍ୟଦଳ ସହିତ ଢ଼ୋଲବାଦକ ମଧ୍ୟ ନୃତ୍ୟ କରିଥାଆନ୍ତି । ଅନ୍ୟ କଳାକାରମାନେ ନିଜ ନିଜର ସ୍ଥାନରେ ବସି ରହି ସେମାନଙ୍କର ବାଦ୍ୟଯନ୍ତ୍ର ବଜାଇଥାଆନ୍ତି ।

### କୋଇସାବାଡ଼ି ନୃତ୍ୟ (ସମ୍ବଲପୁର):

ଗଣ୍ଡା ବର୍ଗର ଗଣ୍ଡ ଓ ଭୂୟାଁ ଜନଜାତିମାନଙ୍କ ମଧ୍ୟରେ ଏହି ନୃତ୍ୟ ପ୍ରଚଳିତ । ଦୁଇଫୁଟ ଲମ୍ବର ବାଡ଼ି ଧରି କେବଳ ପୁରୁଷ ନର୍ତ୍ତକ ଏହି ନୃତ୍ୟ କରିଥାଆନ୍ତି । ସେମାନେ ଗାନ କରୁଥିବା ଗୀତର ତାଳ ଅନୁସାରେ ବାଡ଼ିକୁ ବାଡ଼ିରେ ବଜାଇ ବିଭିନ୍ନ ମୁଦ୍ରାରେ ନୃତ୍ୟ କରନ୍ତି । ସ୍ଥାନୀୟ ବାଦ୍ୟଯନ୍ତ୍ର ମଧ୍ୟ ବଜାଯାଇଥାଏ । ଗୀତଗୁଡ଼ିକ ମୁଖ୍ୟତଃ ରାଧାକୃଷ୍ଣଙ୍କ ସ୍ୱର୍ଗୀୟ ପ୍ରେମକଥା ଉପରେ ସ୍ଥାନୀୟ ଭାଷାରେ ରଚନା କରାଯାଇଥାଏ ।

### ହୁମୋ ଓ ବଉଲି ନୃତ୍ୟ (ସମ୍ବଲପୁର):

ବିଭିନ୍ନ ପବିତ୍ର ଉତ୍ସବାନୁଷ୍ଠାନରେ ଅବିବାହିତ ଯୁବତୀମାନଙ୍କ ଦ୍ୱାରା ଉପରୋକ୍ତ ଦୁଇଗୋଟି ନୃତ୍ୟ ପ୍ରଦର୍ଶିତ ହୋଇଥାଏ । ସେମାନେ ଦଳଗତ ଭାବେ ଗୀତ ଓ ନୃତ୍ୟ ପ୍ରଦର୍ଶନ କରନ୍ତି । ନୃତ୍ୟ ପ୍ରଦର୍ଶନ ବେଳେ କୌଣସି ପ୍ରକାର ବାଦ୍ୟଯନ୍ତ୍ର ବ୍ୟବହୃତ ହୋଇନଥାଏ । ନୃତ୍ୟର ପାଦଚାଳନା ଓ ଗତି ଅତ୍ୟନ୍ତ ମନ୍ଥର ହୋଇଥାଏ ।

### ଯାତ୍ରା:

ଯାତ୍ରା କହିଲେ ଗଣନାଟ୍ୟକୁ ବୁଝାଇଥାଏ । ଏଥିରେ ନାଟକ ପ୍ରଦର୍ଶିତ ହୋଇଥାଏ, ଯେଉଁଥିରେ କି ସମ୍ପୂର୍ଣ୍ଣ ଭାବେ ଚରିତ୍ରମାନେ ସେମାନଙ୍କର ଭୂମିକା ପ୍ରଦର୍ଶନ କରିଥାଆନ୍ତି । ଏଥିରେ ସଂଗୀତ, ନୃତ୍ୟ, ଅଭିନୟ, ଗୀତ

ଓ ନାଟକୀୟ ଦ୍ୱନ୍ଦ୍ୱ ସମିଶ୍ରିତ ହୋଇଥାଏ । ପୂର୍ବରୁ ଏହି ଶକ୍ତିଶାଳୀ ଗଣନାଟ୍ୟ ମାଧ୍ୟମରେ ଜନସାଧାରଣଙ୍କୁ ଧାର୍ମିକ ମୂଲ୍ୟବୋଧ ବିଷୟରେ ଅବଗତ କରାଯାଉଥିଲା । ସମ୍ପ୍ରତି ଯାତ୍ରା ନିମନ୍ତେ ନାଟକ ରଚନା ଶୈଳୀରେ ଅନେକ ପରିବର୍ତ୍ତନ ହୋଇଛି । ଯାତ୍ରାଗୁଡ଼ିକ କେବଳ ପୌରାଣିକ, ଐତିହାସିକ କିମ୍ବା କାଳ୍ପନିକ ବିଷୟ ଉପରେ ଆଧାରିତ ହୋଇ ରହିନାହିଁ, ଏଗୁଡ଼ିକ ଆଧୁନିକ ସ୍ୱାଦକୁ ଖାପ ଖୁଆଇ ସାମାଜିକ କଥାବସ୍ତୁକୁ ନେଇ ରଚିତ ହେଉଛି ।

ଏକ ସାଧାରଣ ରଙ୍ଗମଞ୍ଚ ଉପରେ ଯାତ୍ରା ପରିବେଷଣ କରାଯାଏ ଓ ଏହା ଚାରିପଟେ ଦର୍ଶକମାନେ ଉପବେଶନ କରିଥାଆନ୍ତି । ରଙ୍ଗମଞ୍ଚ ବାହାରେ ସମବେତ ସଂଗୀତ ଶିଳ୍ପୀମାନେ ଓ ବାଦ୍ୟକାରମାନେ ସେମାନଙ୍କର ସ୍ଥାନ ଗ୍ରହଣ କରନ୍ତି । ରଙ୍ଗମଞ୍ଚ ଉପରେ ଗୋଟିଏ ମାତ୍ର ସିଟ୍ (ବସିବା ସ୍ଥାନ)କୁ ଏକ ସିଂହାସନ, ଏକ ଶଯ୍ୟା ବା ରାସ୍ତାପାର୍ଶ୍ୱର ଏକ ବେଞ୍ଚଭାବେ ବିଭିନ୍ନ ଉଦ୍ଦେଶ୍ୟରେ ବ୍ୟବହାର କରାଯାଏ ।

ଅଭିନେତାମାନେ ନାଟକୀୟ ଭଙ୍ଗୀରେ ଗତି କରନ୍ତି । ସେମାନେ ଉଚ୍ଚସ୍ୱରରେ ସଂଳାପଗୁଡ଼ିକୁ କହିଥାଆନ୍ତି, ଯା'ଫଳରେ ରଙ୍ଗମଞ୍ଚ ଚତୁଃପାର୍ଶ୍ୱରେ ବସିଥିବା ଦର୍ଶକମାନଙ୍କୁ ସେମାନେ ସହଜରେ ଆକର୍ଷିତ କରିପାରିବେ । ସେମାନଙ୍କର ପୋଷାକ ଆଖି ଝଲସାଇ ଦିଏ । ଖଣ୍ଡା ଚକ୍‌ଚକ୍ କରେ ଏବଂ ଜୋର୍‌ରେ ବାଜୁଥିବା ଝାଞ୍ଜ ଶବ୍ଦ ମଧ୍ୟରେ ସେମାନଙ୍କର ସଂଳାପର ଗର୍ଜନ ଶୁଣାଯାଏ । ବେଳେବେଳେ ଅଭିନେତାମାନେ ପ୍ରେମ, ଦୁଃଖ, କରୁଣ ଭଳି ସୂକ୍ଷ୍ମାତିସୂକ୍ଷ୍ମ ଭାବାବେଗକୁ ପ୍ରକାଶ କରିବାରେ ପାରଙ୍ଗମ ହୋଇଥାଆନ୍ତି । କିନ୍ତୁ ସବୁକଥାକୁ ସେମାନଙ୍କୁ ଅତିରଞ୍ଜିତ ଭାବେ ଉପସ୍ଥାପନ କରିବାକୁ ପଡ଼ିଥାଏ । କାରଣ ସାଧାରଣ ଜୀବନରେ ଥିବା ଚରିତ୍ରଗୁଡ଼ିକଠାରୁ ସେମାନେ ନିଜକୁ ଅଧିକ ଭାବେ ପ୍ରଦର୍ଶିତ କରିବାକୁ ଚାହିଁଥାଆନ୍ତି । ସାଧାରଣ ଜୀବନକୁ ଛୁଇଁପାରୁଥିବା ଶ୍ରୁତିମଧୁର ପାରମ୍ପରିକ ସଂଗୀତ, ନୃତ୍ୟଶୈଳୀ, ଗୀତ, ଅଭିନୟ ଓ ହାସ୍ୟରସ ପାଇଁ ଯାତ୍ରା ମନୋରଞ୍ଜନର ଏକ ବଳିଷ୍ଠ ମାଧ୍ୟମ ରୂପେ ଉଭା ହୋଇଛି । ସାମଗ୍ରିକ ଭାବେ ଓଡ଼ିଶାର ଯାତ୍ରା ସଂସ୍କୃତି ସର୍ବସାଧାରଣଙ୍କ ପାଇଁ ଶିକ୍ଷାଲାଭର ଏକ ବଳିଷ୍ଠ ଅନୁଷ୍ଠାନ ଭାବେ ରହିଆସିଛି ।

**ପାଲା:**

ପାଲା ହେଉଛି ଏକ ଦୀର୍ଘ ସାଙ୍ଗୀତିକ ବର୍ଣ୍ଣନା, ଯାହା ବିଭିନ୍ନ ଉଦ୍ଧୃତାଂଶ ସହିତ ସରଳ ଭାବେ ବୁଝାଇ ଦିଆଯାଏ । ଜଣେ ଗାୟକ ପାଲା ଅନୁଷ୍ଠାନର ମୁଖ୍ୟ ଭାବେ ବିଭିନ୍ନ ବିଷୟ ଉପରେ ଆଲୋକପାତ କରିଥାଆନ୍ତି ଏବଂ ସେ ୪ ରୁ ୫ ଜଣ ସହଯୋଗୀ ବା ପାଳିଆଙ୍କର ସହାୟତା ନିଅନ୍ତି । ସେମାନଙ୍କ ମଧ୍ୟରୁ ଜଣେ ମୃଦଙ୍ଗ ବଜାଇବା ବେଳେ ଅନ୍ୟମାନେ ଝାଞ୍ଜ ଭଳି ବାଦ୍ୟଯନ୍ତ୍ର ବଜାନ୍ତି । ପାଲା ଗାୟକ ମହାଭାରତ, ରାମାୟଣ କିମ୍ବା ଅନ୍ୟାନ୍ୟ ପୁରାଣ ଶାସ୍ତ୍ରର ଉପାଖ୍ୟାନମାନ ବର୍ଣ୍ଣନା କରନ୍ତି । ବାଦ୍ୟ ବଜାଉଥିବା ଅନ୍ୟ ସାଥୀମାନେ ତାଙ୍କୁ ଉପଯୁକ୍ତ ସମୟରେ ମୂଳ ବିଷୟବସ୍ତୁର କଥାକୁ ସମବେତ ଭାବେ ଗାନ କରି ସାହାଯ୍ୟ କରିଥାନ୍ତି । କଥା ବର୍ଣ୍ଣନା ସମୟରେ ଖୁବ୍ ଜୋର୍‌ରେ ମୃଦଙ୍ଗ ଓ ଝାଞ୍ଜ ବଜାଯାଏ । ଗାୟକ ଓ ତାଙ୍କର ସାଥୀମାନେ ଗୀତ ଗାଉଥିବାବେଳେ ଅତି ସରଳ ତାଳରେ ପାଦ ପକାଇ ନୃତ୍ୟ କରନ୍ତି ।

ପ୍ରାରମ୍ଭରେ ପାଲା ଗାୟକ କୌଣସି ଦେବଦେବୀ ବିଶେଷ କରି 'ମା ଶାରଳା'ଙ୍କୁ ଆବାହନ କରି ତାଙ୍କର ଆଶୀର୍ବାଦ ଭିକ୍ଷା କରନ୍ତି ଓ ଗାଉଥିବା ଗୀତର ସଂକ୍ଷିପ୍ତ ଅର୍ଥ ପ୍ରକାଶ କରନ୍ତି । ପାଲା ପରିବେଷଣ ବେଳେ ଆଉ ଜଣେ ଗାୟକ ମୁଖ୍ୟ ଗାୟକଙ୍କୁ ପ୍ରଶ୍ନ ପଚାରନ୍ତି ବା କୌଣସି ବିଷୟକୁ ବିଶଦ୍‌ଭାବେ ଅବତାରଣା କରିବାକୁ ଅନୁରୋଧ କରନ୍ତି । ପ୍ରାୟତଃ ପାଲାଗୀତଗୁଡ଼ିକ ସମୃଦ୍ଧ ଓଡ଼ିଆ କାବ୍ୟ ଓ ସାହିତ୍ୟ ଭଣ୍ଡାରରୁ ନିଆଯାଏ, ଯାହାର ସଂସ୍କୃତ କାବ୍ୟ ସହିତ ମଧ୍ୟ ଯଥାର୍ଥ ପ୍ରାସଙ୍ଗିକତା ରହିଥାଏ । ପାଲା ଗାୟକ ବର୍ଣ୍ଣନାତ୍ମକ ସଂଗୀତ ପରିବେଷଣ କରିବା ସଙ୍ଗେ ସଙ୍ଗେ ଶ୍ରୋତାମାନଙ୍କୁ ନିଜ ସହ ବାନ୍ଧି ରଖିବା ପାଇଁ ନିଜ ମନରୁ ନୂଆ ନୂଆ ପ୍ରସଙ୍ଗ ଉପରେ ମଧ୍ୟ ଆଲୋକପାତ କରନ୍ତି । ପାଲା ଗାୟକ ଉଜ୍ଜ୍ୱଳ ପୋଷାକ ପରିଧାନ କରିବା ସଙ୍ଗେ

ସଙ୍ଗେ ମୁଣ୍ଡରେ ଏକ ଅଳଙ୍କୃତ ପଗଡ଼ି ମଧ୍ୟ ବାନ୍ଧିଥାଆନ୍ତି । ସେ ତାଙ୍କ ହାତରେ ଏକ ଚାମର ଧରିଥାଆନ୍ତି, ଯାହାକୁ ସେ ଆବଶ୍ୟକ ଅନୁଯାୟୀ କେତେବେଳେ ଏକ ଅସ୍ତ୍ର, ପଙ୍ଖା ବା କଲମ ଭାବେ ବ୍ୟବହାର କରନ୍ତି ତ ଅନ୍ୟ ସମୟରେ ସେ ଏହାକୁ ଈଶ୍ୱରୀୟ ଆଶୀର୍ବାଦର ପ୍ରତୀକସ୍ୱରୂପ ବ୍ୟବହାର କରନ୍ତି । ଏହାକୁ ସେ ଏପଟ ସେପଟ ତରଙ୍ଗାୟିତ ଭାବେ ଉତ୍ତୋଳିତ କରି ଧରନ୍ତି । ଏହିପରି ଭାବେ ସେ ନାଟକ, ଗୀତ ଓ ନୃତ୍ୟକୁ ଏକତ୍ରିତ କରି ଜଣେ ବର୍ଣ୍ଣନାକାରୀ ରୂପରେ ଅଭିନୟ କରନ୍ତି । ସେତେବେଳେ ସେ ମୂଳ ଉପାଖ୍ୟାନର ସଂଗୀତ ଠାରୁ ଦୂରେଇ ଯାଇଥାଆନ୍ତି ।

ପାଲା ଯାତ୍ରା ଭଳି ହୋଇଥିଲେ ମଧ୍ୟ ଏହା ଏତେ ବିସ୍ତାରିତ ହୋଇନଥାଏ । ଉଦାହରଣସ୍ୱରୂପ, ପାଲାର ପୂର୍ଣ୍ଣାଙ୍ଗ ଚରିତ୍ର ସବୁ ନଥାଏ କି ଏହାର ଦୃଶ୍ୟଗୁଡ଼ିକ ପୃଥକ୍ ପୃଥକ୍ ଭାବେ ପ୍ରଦର୍ଶିତ ହୋଇନଥାଏ । ଏହାର ବିଷୟବସ୍ତୁ ଇତଃସ୍ତତ ଭାବେ ଥରକୁ ଥର ପରିବେଷଣ କରାଯାଏ, ଜଣେ ଦେବତାଙ୍କୁ ଶୁଭସୂଚକ ଭାବେ ଆବାହନ କରାଯାଏ ଓ ଏହା ଏକ ପବିତ୍ର ବାତାବରଣ ସୃଷ୍ଟି କରିଥାଏ । ବିଷୟବସ୍ତୁକୁ ସରଳଭାବେ ବୁଝାଇବା ନିମନ୍ତେ ଗାୟକ ଗୀତର ପ୍ରତ୍ୟେକ ଧାଡ଼ିକୁ ଗଦ୍ୟରେ ପରିପ୍ରକାଶ କରିଥାନ୍ତି । ଏହାକୁ ଜଣେ ବ୍ୟକ୍ତିଙ୍କର ପ୍ରଦର୍ଶନ ଭାବରେ ବର୍ଣ୍ଣନା କରାଯାଇପାରେ ।

**ଦାସକାଠିଆ:**

ଦାସକାଠିଆ ମଧ୍ୟ ଓଡ଼ିଶାର ଆଉ ଏକ ଆକର୍ଷଣୀୟ ଲୋକକଳା । ସାଧାରଣତଃ ଏହାକୁ ଦୁଇଜଣ ବ୍ୟକ୍ତି – ଜଣେ ଗାୟକ ଓ ଅନ୍ୟ ଜଣେ ସାଥୀ, ପରିବେଷଣ କରିଥାନ୍ତି ଏବଂ ଏହା ପାଲାଠାରୁ ମଧ୍ୟ ଅଧିକ ସରଳ । ଏଥିରେ ପୌରାଣିକ କିମ୍ବା ଧର୍ମୀୟ କଥାବସ୍ତୁକୁ ଗୀତି କବିତା ମାଧ୍ୟମରେ ବ୍ୟାଖ୍ୟା କରାଯାଏ । ଦୁଇଟି ଛୋଟ ମୋଟା କାଠ ଖଣ୍ଡରେ ନିର୍ମିତ ଏକ ବାଦ୍ୟଯନ୍ତ୍ର (ଦାସକାଠିଆ)ର ନାମ ଅନୁସାରେ ଏହା ନାମିତ । ଗାୟକମାନେ ଦୁଇଟି କାଠଖଣ୍ଡ ମଧ୍ୟରେ ଥିବା ଫାଙ୍କରେ ଏହାକୁ ବାମହାତର ବିଶି ଆଙ୍ଗୁଠିରେ ଧରି ତାଙ୍କ ଡ଼ାହାଣ ହାତରେ ଦାସକାଠିଆର ଦୁଇ ପାର୍ଶ୍ୱକୁ ବଜାଇ ଏକ ଛନ୍ଦୋମୟ ଶବ୍ଦ ସୃଷ୍ଟି କରନ୍ତି । ପାଲା ଗାୟକଙ୍କ ଭଳି ସେ ମଧ୍ୟ ପ୍ରାରମ୍ଭରେ କୌଣସି ଦେବତାଙ୍କର ଆଶୀର୍ବାଦ ଭିକ୍ଷା କରନ୍ତି । ସମଗ୍ର ବିଷୟବସ୍ତୁକୁ ବର୍ଣ୍ଣନା କଲାବେଳେ ପ୍ରଥମରୁ ସମର୍ପିତ ଥିବା ଦେବତାଙ୍କ ଉଦ୍ଦେଶ୍ୟରେ ମଝିରେ ମଝିରେ ଗୀତ ଗାନ କରାଯାଏ । ପାଲା ତୁଳନାରେ ଦାସକାଠିଆ ପ୍ରଦର୍ଶନର ସମୟ ଅପେକ୍ଷାକୃତ କମ୍ ହୋଇଥାଏ । ଗାୟକମାନେ ଅତ୍ୟନ୍ତ ସାଦାସିଧା ପୋଷାକ ପରିଧାନ କରିଥାଆନ୍ତି ଓ ସାଧୁ ସନ୍ନ୍ୟାସୀଭାବେ ପ୍ରତିଭାତ ହୋଇଥାଆନ୍ତି ।

ଯାତ୍ରା, ପାଲା ଓ ଦାସକାଠିଆ ଓଡ଼ିଆ ଲୋକସଂସ୍କୃତିର ପ୍ରଧାନ ବାର୍ତ୍ତାବହ ଅଟେ । ଗ୍ରାମୀଣ ଲୋକଙ୍କ ଜୀବନ ଉପରେ ଏସବୁର ଅଖଣ୍ଡ ପ୍ରଭାବ ରହିଛି । ଏସବୁ କାର୍ଯ୍ୟକ୍ରମ ଏବେ ଟେଲିଭିଜନ୍ ମାଧ୍ୟମରେ ପ୍ରସାରିତ ହେଉଛି । ଫଳରେ ସହରାଞ୍ଚଳରେ ବସବାସ କରୁଥିବା ଲୋକମାନେ ଏହିସବୁ ଲୋକକଳା ସହିତ ପରିଚିତ ହୋଇ ପାରୁଛନ୍ତି ।



# ଓଡ଼ିଆ ସଂସ୍କୃତି ଓ ଓଡ଼ିଆ ଖାଦ୍ୟ

ଡକ୍ଟର ଶ୍ରୀହରି ପଣ୍ଡା

ସାଧାରଣତଃ ସଂସ୍କୃତି ଶବ୍ଦକୁ ବ୍ୟାପକ ଅର୍ଥରେ ପ୍ରୟୋଗ କରାଯାଇଥାଏ । କେହି କେହି ଏହାକୁ ସଭ୍ୟତା ସହିତ ଯୋଡି ଦେଉଥିବା ବେଳେ କେହି ଏହାକୁ ଇଂରାଜୀ କଲ୍‌ଚର(ଓଡିଆ କୃଷ୍ଟି–ଯାହା ସମସ୍ତ କୃଷକ ଦଳକୁ ବୁଝାଏ) ସଙ୍ଗେ ଯୋଡିଥାନ୍ତି । କିନ୍ତୁ 'ସଂସ୍କୃତି' ଶବ୍ଦ ସଭ୍ୟତା ଓ କୃଷ୍ଟିଠାରୁ ମଧ୍ୟ ବ୍ୟାପକ ମନେହୁଏ । ସମାଜବିଜ୍ଞାନୀ ଟାଲୋର କହନ୍ତି, ଜ୍ଞାନ,ବିଶ୍ୱାସ, କଳା, ଶିଳ୍ପ, ନୀତି, ଆଇନ କାନୁନ, ପ୍ରଥା, ଅନୁଷ୍ଠାନ, ଅଭ୍ୟାସ ଇତ୍ୟାଦି ଯାବତୀୟ କାର୍ଯ୍ୟ ହିଁ ସାମାଜିକ ମନୁଷ୍ୟର ସଂସ୍କୃତି ଜ୍ଞାପକ । ସେହିଭଳି ହର୍ଟନ କହନ୍ତି, ଜ୍ଞାନ,ବିଶ୍ୱାସ, କଳା, ଶିଳ୍ପ, ନୀତି, ଆଇନ ଇତ୍ୟାଦି ସଂସ୍କୃତିର ପରିସରଭୁକ୍ତ । ମୁଖ୍ୟତଃ ଯାହାକିଛି ଆମେ ସମାଜରୁ ଶିକ୍ଷାକରୁ ଓ ଆଦାନ ପ୍ରଦାନ କରୁ, ସେ ସକଳର ପ୍ରକାଶ ହିଁ ସଂସ୍କୃତି । ସେହିପରି ଅନେକ ସମାଜବିଜ୍ଞାନୀ ମତ ଦିଅନ୍ତି ସାମାଜିକ ମନୁଷ୍ୟର ନୃତ୍ୟ, ଗୀତ, ଶିଳ୍ପ, ସ୍ଥାପତ୍ୟ ହିଁ ସଂସ୍କୃତି । ଏହିପରି ଭାବରେ ସଂସ୍କୃତି ଶବ୍ଦର ବହୁ ଅର୍ଥ ଥିବାବେଳେ ବ୍ୟାକରଣ ସୂତ୍ରରେ ସମ୍‌–କୃ–ତି ହେଲା ସଂସ୍କୃତି । ଏହା ଜ୍ଞାନଗତ ଉତ୍କର୍ଷତା, ଶିକ୍ଷାଦ୍ୱାରା ବା ଚର୍ଚ୍ଚା ଦ୍ୱାରା ଲବ୍ଧ ବିଦ୍ୟା–ବୁଦ୍ଧି–ଶିଳ୍ପ–କଳା–ରୁଚି–ନୀତି ଆଦିର ଉତ୍କର୍ଷତାକୁ ହିଁ ବୁଝାଇଥାଏ । ସଂସ୍କୃତି ମାର୍ଜିତ, ସଂଶୋଧିତ, ପବିତ୍ରୀକୃତ, ପରିଷ୍କୃତ, ମନ୍ତ୍ରପୂତ ହେଲେ ସଂସ୍କୃତ ହୁଏ । ସାରା ସଂସାରରେ କେବଳ ମନୁଷ୍ୟ ଜାତିର ସଂସ୍କୃତି ଅଛି । ମନୁଷ୍ୟ ହିଁ ତା'ର ସ୍ରଷ୍ଟା ଏବଂ ସଂସ୍କୃତି ପାଇଁ ମନୁଷ୍ୟ ଜୀବଜଗତର ଶ୍ରେଷ୍ଠ ପ୍ରାଣୀ ରୂପେ ବିବେଚିତ ହେଉଛି । ନିଜର ଜୀବନ ମାର୍ଗକୁ ସହଜ, ସରସ ଓ ସୁନ୍ଦର କରିବା ନିମନ୍ତେ ସେ ନାନାବିଧ ଉପାୟ ଅବଲମ୍ବନ କରିଆସିଛି । ଜୀବନକୁ ମଧୁମୟ କରିବା ନିମନ୍ତେ ଅନାଦି କାଳରୁ ସେ ଯେଉଁ ରୀତି, ନୀତି ଓ ମାର୍ଗ ଅନୁସରଣ କରି ସଫଳତା ହାସଲ କରିଛି, ତାକୁ ଅଖଣ୍ଡ, ଅବ୍ୟାହତ ରଖିବାକୁ ସେ ପ୍ରାଣପଣେ ଉଦ୍ୟମ କରିଛି । ଏହାର ସାମଗ୍ରିକ ରୂପ ହିଁ ସଂସ୍କୃତି । ମାନବ ପ୍ରକୃତିର ଅଭିବ୍ୟକ୍ତି, ଚିନ୍ତା ଓ ଚେତନା, ଦୃଷ୍ଟି ଓ ଦର୍ଶନ, ଚାହାଣି ଓ ଚଳଣି, ଧର୍ମ ଓ ସାହିତ୍ୟ, ସୃଷ୍ଟି ଓ କୃଷ୍ଟି, ଆନନ୍ଦ ଓ ବିଷାଦ ମଧ୍ୟରେ ପ୍ରକଟିତ ମୂଲ୍ୟବୋଧ, ଲକ୍ଷ୍ୟ ଓ ଚିନ୍ତାର ସଂହତି– ଏହା ଏକ ସାମାଜିକ ପରମ୍ପରା, ଯାହା ଆମେ ଶିକ୍ଷା ଭିତରେ ଦେଇ ପୂର୍ବ ପୁରୁଷଙ୍କଠାରୁ ପାଇଥାଉ । ଜ୍ଞାନ ବିଜ୍ଞାନ, ବିଶ୍ୱାସ,କଳା, ନୈତିକତା, ଆଇନ, ରାଜନୀତି ସମ୍ପର୍କୀୟ ମୂଲ୍ୟବୋଧ ହିଁ ସଂସ୍କୃତି । ପ୍ରାଞ୍ଜିକ ଆଚାର, ଯାହା ଗୋଟିଏ ସମାଜ ଦ୍ୱାରା ପ୍ରସାରିତ ହୁଏ । ତାହାକୁ ମଧ୍ୟ ସଂସ୍କୃତି ବୋଲି କୁହାଯାଇପାରେ । ଏହା ବ୍ୟକ୍ତିଗତ ନୁହେଁ । ମାତ୍ର ବ୍ୟକ୍ତିର ସୌନ୍ଦର୍ଯ୍ୟ ଚେତନା ଏବଂ ଆଧ୍ୟାତ୍ମିକ ଉତ୍ତରଣ ଏହା ମଧ୍ୟରେ ପ୍ରକଟିତ ହୁଏ । ଏହା ମନୁଷ୍ୟକୁ ପଶୁଠାରୁ ସ୍ୱତନ୍ତ୍ର କରେ, ତାହାର ଆଚାରକୁ ନିୟନ୍ତ୍ରିତ କରେ ଏବଂ ସମାଜରେ ସୁସ୍ଥ ଭାବରେ ରହିବାକୁ ପ୍ରେରଣା ଦିଏ । ସଂସ୍କୃତି ହେଉଛି ଜୀବନ ଧାରଣର ରୂପ । ସଂସ୍କୃତି ନିର୍ମାଣରେ ଦେଶରେ ପ୍ରାକୃତିକ ପରିବେଶ ଓ ଜଳବାୟୁ ପ୍ରଭାବ ବିସ୍ତାର କରେ । ଜନଜୀବନ ନିୟନ୍ତ୍ରଣ ପାଇଁ ଓ ଚଳଣିର ପରମ୍ପରା ସୃଷ୍ଟି ପାଇଁ ଏହି ପ୍ରକୃତି ହିଁ ପ୍ରଧାନ କାରଣ ହୁଏ । ଭୂଗୋଳ ଓ ପ୍ରକୃତିର ଦାନରେ ସଭ୍ୟତାର ମହାଦ୍ରୁମ ପୁଷ୍ଟ ହୁଏ । ସଂସ୍କୃତିର ଫୁଲମାଳ

କୁସୁମିତ ହୁଏ । ସଂସ୍କୃତି ହେଉଛି ଏକ ଗୁଣାତ୍ମକ ସ୍ପୃହା । ବ୍ୟକ୍ତିଗତ ଏବଂ ସାମୂହିକ ଆବିଷ୍କାରର ପ୍ରେରଣା । ବ୍ୟକ୍ତିଗତ ମନୁଷ୍ୟ ସବୁ ମଣିଷଙ୍କ ସହିତ ଭାବଗତ ସ୍ତରରେ ମିଳିତ ହେବାର ଆକାଂକ୍ଷାକୁ ସଂସ୍କୃତିର ଏକ ସମୃଦ୍ଧ ରୂପ କୁହାଯାଏ । ତେଣୁ ସଂସ୍କୃତି ଏକ ଅନ୍ୱେଷଣ । ଏକକ ଉଦ୍ୟମ ଆହ୍ୱାନର ଆବିଷ୍କାର ଏବଂ ସେଗୁଡିକ ସହିତ ସମ୍ମୁଖୀନ ହେବାର ଅଭୀପ୍ସା ଜୀବନ ପ୍ରବାହର ଏକ ସୁନିପୁଣ ଏବଂ ବିକଶିତ ରୂପ, ସଂସ୍କୃତି ଜୀବନ ପଥରେ ସତ୍ୟପାଇଁ ଦ୍ୱାର ଉନ୍ମୁକ୍ତ କରିବାର ଏକ ସ୍ପର୍ଦ୍ଧା । ଏଥିପାଇଁ ସଂସ୍କୃତି ହିଁ ଜୀବନ ଓ ଜୀବନ ହିଁ ସଂସ୍କୃତି । ରୀତି ନୀତି ଚାଲିଚଳଣ, ଧର୍ମକର୍ମ ଯାନିଯାତ୍ରା, ବିବାହୋତ୍ସବ, ବିଧିବିଧାନ, ଖାଦ୍ୟପାନୀୟ ମଧ୍ୟରେ ଏହା ସଂଗୁପ୍ତ ଏବଂ ଯୁଗଯୁଗର ଜୀବନଧାରାକୁ ନେଇ ଏହା ବଳିଷ୍ଠ । ପରମ୍ପରା ପାଇଁ ଏହା ଯେତିକି ଗୌରବାନ୍ୱିତ ନୂତନତାକୁ ସ୍ୱାଗତ କରିବାରେ ଏହା ସେତିକି ବ୍ୟଗ୍ର । ତେଣୁ ଏହା ଏକ କ୍ରମ ବିବର୍ତ୍ତିତ ଏକ ସାରସ୍ୱତ ରୂପ । ଓଡିଆ ସଂସ୍କୃତିରେ ଏକ ଅବିଚ୍ଛେଦ୍ୟ ଅଙ୍ଗ ଓଡିଶୀ ଖାଦ୍ୟ । ଓଡିଶୀ ପିଠାପଣା ଓ ଓଡିଶୀ ପରସା, ଭୂରିଭୋଜନ ପ୍ରଶାନ୍ତି ତଥା ସୁସ୍ଥିର ଏକ ଚରମ କାରଣ । ଆମ କୃଷି, ଆମ ଉତ୍ପାଦନକୁ ଉପଜୀବ୍ୟ କରି ଗଢି ଉଠିଛି ଆମ ଚଳଣି, ଆମ ସଂସ୍କୃତି । ଆମର ଯାହା ପ୍ରିୟ ତାହା ହିଁ ଆମେ ନୈବେଦ୍ୟ ବାଢୁ ଠାକୁରଙ୍କୁ । ଏଣୁ ପୂଜାବିଧି, ଭୋଗ–ରାଗ ସବୁ ମଣିଷର ସମ୍ବଳ ଓ ନିଜସ୍ୱ ରୁଚିକୁ ନେଇ ଗଢି ଉଠିଛି ।

ଧାନ ଆମର ପ୍ରଧାନ ଉତ୍ପାଦିତ ଶସ୍ୟ । ଏଣୁ ଧାନରୁ ଚାଉଳ କରୁ ଆମେ । ସେ ଉଷୁନା ହେଉ ବା ଅରୁଆ ହେଉ । ଦୋ ଉଷୁଆଁ ହଉ ବା ଏକ ଉଷୁଆଁ ହେଉ ଆମେ ଭାତପ୍ରିୟ । ପୁଣି ଚାଉଳରୁ ମୁଢି, ଚୁଡା, ଧାନରୁ ଖଇ ବା ଲିଆ ଆମ ଆଦରର ଜଳଖିଆ । ପଖାଳ ଆମ ଦୀନ ଦୁଃଖୀ ପରିବାରର ତୃପ୍ତି ଓ ଭରସା । ବଡି ସକାଳୁ ବିଲକୁ ହଳନେଇ ବାହାରିବା ଆଗରୁ ମୁଢି, ଚୁଡା ନ ପାଇଲେ ଚଷା ବେଲାଏ ପଖାଳ, ଗୋଟିଏ ପିଆଜ ଆଉ ଦୁଇଟା କଞ୍ଚା ମରିଚ ଲୁଣରେ ଚକଟି ସଅଳ ସଅଳ ଖାଇ ବିଲକୁ ବାହାରିପଡେ ।

ପଖାଳ ଭାତ ଆମକୁ ଯୋଗାଏ ଶ୍ୱେତସାର ଖାଦ୍ୟ ଓ ଅଧିକ ଶକ୍ତି । ତା'ସାଙ୍ଗକୁ ତୋରାଣି ବି ଦିଏ ପାଣି ଆଉ ଶକ୍ତି । ମନକୁ ମତୁଆଲା ରଖିବାର ଅଫୁରନ୍ତ ପ୍ରେରଣା । ଏଣୁ ସିନା ଆମେ ବିଲରେ ସକାଳୁ ଦିନ ଗୋଟାଏ ଯାକେ ନିର୍ବିଘ୍ନରେ ଏତେ କଷ୍ଟ ଦେହ ମିହନ୍ତ କରିବାକୁ ସକ୍ଷମ ହେଉ । ଏଣୁ ଆମ ସଂସ୍କୃତିକୁ ପଖାଳ ସଂସ୍କୃତି କହିଲେ ବି ଦୁଃଖ ନାହିଁ । ହୁଏତ ଦିନ ଥିଲା ଯେତେବେଳେ ଆମ ସଂସ୍କୃତିକୁ ବଟୁଆ ସଂସ୍କୃତି ବି କୁହାଯାଉଥିଲା । ସବୁରି କାନ୍ଧରେ ବଟୁଆ, ସବୁରି ଅଣ୍ଟାରେ ବଟୁଆ, ସବୁରି ପାଟିରେ ଖିଲେ ପାନ, ଏ ବଟୁଆ ସଂସ୍କୃତିର ଥିଲା ପରିଚାୟକ । ହୁଏତ ସାମ୍ପ୍ରତିକ ଅବସ୍ଥାରେ ବଟୁଆ ସଂସ୍କୃତିର ପରମ୍ପରା ବଦଳି ଗଲାଣି । କିନ୍ତୁ ପଖାଳ ସଂସ୍କୃତି ବଦଳି ନାହିଁ । ବଦଳିବା ସହଜ ବି ନୁହେଁ । ଅନେକ ଓଡିଆ ପୁଅ ନିଜ ସଂସ୍କୃତିକୁ ଥଟ୍ଟା କରନ୍ତି । ଅଳ୍ପକେ ସନ୍ତୁଷ୍ଟ ହେବା ଜାତି କୁଆଡେ ଆମେ । ବେଲାଏ ବାସୀପଖାଳ ଆମ ପାଇଁ ଯଥେଷ୍ଟ । ହୁଏତ କେତେକାଂଶରେ ସତ । କିନ୍ତୁ ଯେଉଁ ଜାତି ଅଳ୍ପକେ ସନ୍ତୁଷ୍ଟ ହୁଏ, ସେହି ପୁଣି ସବୁଠାରୁ ବଡ, ସବୁଠାରୁ ସୁନ୍ଦର ମନ୍ଦିର ନିର୍ମାଣ କରି ବାରଶ' ବଢେଇଙ୍କୁ ନେଇ ବାରବର୍ଷ ଲାଗି । ସେଇ ପୁଣି ଆଗଙ୍ଗା ଗୋଦାବରୀ କଳିଙ୍ଗ ସାମ୍ରାଜ୍ୟର ସୀମା ବିସ୍ତାର କରେ । ସେଇ ପୁଣି ସଂସ୍କୃତ ଅଭିମାନୀ ପଣ୍ଡିତମାନଙ୍କର ନାସିକା କୁଞ୍ଚନକୁ ଧିକ୍କାର କରି ସୃଷ୍ଟିକରେ ସଂସ୍କୃତ ସମତୁଲ ସାହିତ୍ୟ ନିଜସ୍ୱ ଭାଷାରେ, ଓଡିଆରେ । ଏଣୁ କୌଣସି ଜାତି କୌଣସି ସଭ୍ୟତା ବା କୌଣସି ସଂସ୍କୃତିର ଗୋଟିଏ ଦିଗ ଦେଖି ତାକୁ ବିଚାର କରିବା ଅସମୀଚୀନ ।

ଯିଏ ପଖାଳରେ ସନ୍ତୁଷ୍ଟ ହୁଏ ସିଏ ବି ଖିରୀ, ପୁରୀ, କାକରା, ମଣ୍ଡା, ମାଲପୁଆ, ରସାବଳୀ, କ୍ଷୀରୀ କରିପାରେ । ନିଜ ପ୍ରିୟ ଠାକୁରଙ୍କୁ ପୂଜାଦିଏ । ଭୋଗବାଢେ ଆଉ ନିଜେ ଖାଏ । ଓଡିଆ ସଂସ୍କୃତିର ଆରାଧ୍ୟ ଦେବ ଶ୍ରୀଜଗନ୍ନାଥ ଛପନଭୋଗୀ । ଐଶ୍ୱର୍ଯ୍ୟଶାଳୀ ସମ୍ରାଟ୍‌ଙ୍କର ଛପନ ଭୋଗ ପ୍ରାୟ ତାଙ୍କ ପାଇଁ ବି ଛପନ ଭୋଗ ହୁଏ । ଷାଠିଏ ପଉଟି ଭୋଗ ଲଗାଏ ତାଙ୍କ ପାଖେ ଓଡିଆ ପୁଅ ।

ପ୍ରାଚୁର୍ଯ୍ୟ ଓ ଐଶ୍ୱର୍ଯ୍ୟରେ ତାଠୁ ଅଧିକ ବିଳାସୀ ଆଉ କିଏ ହୋଇପାରେ । ତା' ଠାକୁରଙ୍କୁ ନିଦ ଆସେନା ବୀଣା ବାଦନ ନ ହେଲେ, ଦେବଦାସୀ ନୃତ୍ୟ ନ ଦେଖିଲେ, କଂସାପାତ୍ରରେ ପଇଡପାଣିର ସୋମରସ ନପିଇଲେ, ଫୁଲରେ ବଡସିଂହାର ବେଶ ନ ହେଲେ ।

ଅବଶ୍ୟ ଏକଥା ସ୍ୱୀକାର୍ଯ୍ୟ ଯେ ଓଡିଆ ପ୍ରାଣ ନିରାମିଷ ଭକ୍ଷଣରେ ତୁଷ୍ଟ ଥିଲା । କାରଣ ଜୀବ ହତ୍ୟାକୁ ସେ ଘୃଣା କରୁଥିଲା । ଅବଶ୍ୟ କେତେକ ସମାଲୋଚକ ଏହି ନିରାମିଷ ଆହାରକୁ କେବଳ ବୈଷ୍ଣବୀୟ ଚିନ୍ତାଧାରା ବା ଧର୍ମଧାରଣାର ବୋଲି ଅଭିହିତ କରନ୍ତି । କୁହାଯାଏ ଶକ୍ତିପୂଜା ତଥା ତାନ୍ତ୍ରିକ ମତବାଦରେ ଆମିଷ ଭୋଗ ଓ ଆମିଷ ଆହାର ସାମାଜିକ ଚଳଣିର ଗୃହୀତ ହୋଇଥିଲା । କିନ୍ତୁ ତନ୍ତ୍ର ମନ୍ତ୍ରର ଆଦରର ଶକ୍ତି, ଶିବ ଓ ବିଷ୍ଣୁଙ୍କର ବହୁ ପୂର୍ବରୁ ଓଡିଶାରେ ବସବାସ କରୁଥିବା ଶବରମାନଙ୍କ କଥା ଦେଖାଯାଉ । ଆଜକୁ ହଜାର ହଜାର ବର୍ଷ ତଳେ ବିଶ୍ୱାବସୁ ପୂଜା କରୁଥିଲା ନୀଳମାଧବଙ୍କୁ । ଏ ହେଲା କଳିଯୁଗର ପ୍ରାରମ୍ଭକାଳର କଥା । କାରଣ ତା'ର ପୂର୍ବପୁରୁଷ ଜାରାର ଶରରେ ଆହତ ହୋଇଥିଲେ ଶ୍ରୀକୃଷ୍ଣ ଦ୍ୱାପର ଯୁଗର । ତାଙ୍କର ଶରୀର କଳିଯୁଗରେ ଦାରୁବ୍ରହ୍ମ ଜଗନ୍ନାଥ । ସେ ଯୁଗରେ ବିଶ୍ୱାବସୁ ବି ନୀଳମାଧବଙ୍କୁ ଅନ୍ନ ଭୋଗ ବାଢିବା ଉପାଖ୍ୟାନ ସର୍ବଜନବିଦିତ । କୌଣସିଠାରେ ସେ ମାଧବଙ୍କୁ ମାଂସ ଭକ୍ଷଣ ପାଇଁ ଭୋଗ ବାଢିନି । ନିଜର ଅତି ପ୍ରିୟ ଠାକୁରଙ୍କୁ ମଣିଷ ସବୁଠାରୁ ଆଦର ଖାଦ୍ୟଦେଇ ଭୋଗ ବାଢେ । ଆଉ ଠାକୁରଙ୍କୁ ନୈବେଦ୍ୟ ପରେ ତାଙ୍କରି ଉଚ୍ଛିଷ୍ଟକୁ ପ୍ରସାଦ କରି ସେବନ କରେ । ଏଥିରୁ ଜଣାଯାଏ କାଳେ କାଳେ ଓଡିଆ ନିରାମିଷ ଆହାରରେ ହିଁ ତୃପ୍ତି ଲାଭ କରିଛି ।

ଆଜି ସମଗ୍ର ବିଶ୍ୱରେ ନିରାମିଷ ଆହାର ଭକ୍ଷଣର ସପକ୍ଷରେ ବହୁ ଯୁକ୍ତି ବଢାଯାଉଛି । ଧୂମପାନ ବର୍ଜନ କରି ବହୁ ଶ୍ୱେତାଙ୍ଗ ୟୁରୋପବାସୀ ନିରାମିଷ ଭକ୍ଷଣକୁ ଆଦରରେ ଗ୍ରହଣ କରିନେଲେଣି । କୋଲେଷ୍ଟ୍ରଲ, ଟ୍ରାଇଗ୍ଲିସାରାଇଡ ଫ୍ରି ଫ୍ୟାଟି ଏସିଡ ଆଦି ଚର୍ବି ଜାତୀୟ ବହୁଳତା ହୃଦ୍‌ରୋଗ ଓ ଉଚ୍ଚ ରକ୍ତଚାପ ଆଦିର କାରଣ । ଏ ସବୁର ଆଧିକ୍ୟ ନିରାମିଷ ଆଚରଣରେ ହିଁ ଦେଖାଯାଏ । ଜ୍ଞାନର ପରିସୀମାରେ ଓଡିଆ ପୁଅ ହଜାର ହଜାର ବର୍ଷ ତଳୁ ଏହି ନିରାମିଷକୁ ଆଦରି ନେବା ଓ ଭଲପାଇ ବସିବା କେତେ ବିଜ୍ଞାନସମ୍ମତ ଓ ସ୍ୱାସ୍ଥ୍ୟକର ତାହା ବେଶ ଅନୁମେୟ ।

ଆଜି ଆମର ଖାଦ୍ୟ ଆମ ଆହାର ବୈଦେଶିକ ହେବାରେ ଅନେକଟା ହୁଏତ ବଦଳି ଯାଇଛି । କିନ୍ତୁ ଏଠାରେ ଆମର ପାରମ୍ପରିକ ଖାଦ୍ୟକଥା ବିଚାରକୁ ନିଆଯାଉ । ଏହା ହୁଏତ ସେତେଟା ସରଳ ବା ସହଜ ପାକ ପ୍ରଣାଳୀରେ ପର୍ଯ୍ୟବସିତ ନୁହେଁ । କିନ୍ତୁ ଏହା ଦକ୍ଷିଣ ଭାରତ ଓ ଉତ୍ତର ଭାରତର ତଥା ପଶ୍ଚିମ ଭାରତର ଖାଦ୍ୟ ପରମ୍ପରାର ଏକ ସମନ୍ୱୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଦକ୍ଷିଣ ଭାରତର ବିରି ଓ ତତ୍‌ସମ୍ଭୁତ ବିଭିନ୍ନ ଖାଦ୍ୟର ପ୍ରଚଳନ, ନଡିଆ ଓ ତତ୍‌ସୃଷ୍ଟ ବିଭିନ୍ନ ମିଷ୍ଟଖାଦ୍ୟ ସାମଗ୍ରୀ, ଦହି ଓ ଅନ୍ନର ପ୍ରଚଳନ ସାଙ୍ଗକୁ ପଶ୍ଚିମ ଭାରତର ଖାରା ଓ ଲୁଣି ଜଳଖିଆ, ଅଟା ମଇଦାର ବିଭିନ୍ନ ଖାଦ୍ୟ ଏବଂ ଉତ୍ତର ଭାରତର ଭିନ୍ନ ଭିନ୍ନ ସ୍ୱାଦିଷ୍ଟ ମିଠା ଜଳଖିଆ, ଲହୁଣୀ, ଖୁଆମଣ୍ଡା, ବୁନ୍ଦିଆ ଖିରୀ, ମାଠପୁଳି, ମହୁରୀ ଖେଚୁଡି, ଲଡୁ, ଫେଣି, ଗଜା ସବୁକିଛିର ସମନ୍ୱୟ ଓଡିଆ ସଂସ୍କୃତିରେ ପରିଲକ୍ଷିତ ହୁଏ । ଏହାର ଶ୍ରେଷ୍ଠ ଉଦାହରଣ ନିଜେ ଜଗନ୍ନାଥ ଓ ତାଙ୍କର ଦୈନନ୍ଦିନ ଭୋଜନ ସାମଗ୍ରୀ । ଶ୍ରୀଜଗନ୍ନାଥଙ୍କର ବହୁ ପୁରାକାଳରୁ ପ୍ରଚଳିତ ଭୋଗର ଟିପ୍‌ପଣୀ ଅନୁଧ୍ୟାନ କଲେ ଜଣାଯାଏ ଯେ ଏହା ଭାରତୀୟ ସମନ୍ୱୟ ଖାଦ୍ୟ ପରମ୍ପରା । ଭିନ୍ନ ଭିନ୍ନ ଭୌଗୋଳିକ ଭୂଖଣ୍ଡର ରୁଚିବନ୍ତ ସ୍ୱାଦିଷ୍ଟ ଖାଦ୍ୟକୁ ଓଡିଆ ନିଜର ରନ୍ଧନପ୍ରଣାଳୀ ମଧ୍ୟରେ ନୂତନ ରୂପ ଦେଇ ଗ୍ରହଣ କରିଛି । ଏହା ହିଁ ତା'ର ବୈଶିଷ୍ଟ୍ୟ ଓ ସ୍ୱାତନ୍ତ୍ର୍ୟ ।

ଆଉ ଗୋଟିଏ କଥାହେଲା ଆମ ଡାଲମା । ଭାରତର ସବୁଠାରେ ଡାଲି ହୁଏ ତରକାରୀ ବି ହୁଏ । ତରକାରୀ ଗୋଟିଏ ପରିବାରେ ବେଶ ହୁଏ । କିନ୍ତୁ ଓଡିଆ ଡାଲି ଓ ତରକାରୀକୁ ଏକାଠି କରି ଡାଲମା କରେ । ତା' ଉପରେ ଜିରା, ଫୁଟଣ ଓ ମସଲାର ଛୁଙ୍କଦେଇ ବଢାଯାଏ ।

ଏହା ବାତ ପାଇଁ, ରୁଚିପାଇଁ ତଥା ଯେକୌଣସି ଖାଦ୍ୟପାଇଁ ଉପଯୁକ୍ତ । ଶାଗ ଆଜି ମଣିଷର ଏକାନ୍ତ ଆବଶ୍ୟକ ଖାଦ୍ୟ । ଜୀବସାରଠୁ ଆରମ୍ଭ କରି ଅନ୍ତନାଳିର ସ୍ୱାସ୍ଥ୍ୟରକ୍ଷାର ରକ୍ଷାକବଚ । ଏଣୁ ଓଡ଼ିଆପୁଏ ସଜନା, ନିମଠୁ ଆରମ୍ଭ କରି କୋଶଳା, ମେଥି, ପାଳଙ୍ଗ, ଶୁନଶୁନିଆ, ଲେଉଟିଆ ଆଦି ସିଝାଇ ଖରଡି ନଡିଆ ବଡିଦେଇ ସୁଆଦିଆ କରି ବାଢିଦିଏ ।

ମନୁଷ୍ୟ ତା'ର ଆବଶ୍ୟକତାଠାରୁ ଠାକୁରଙ୍କ ପାଖେ ବି ଏହି ଶାଗକୁ ପରିଚିତ କରାଇଲା । ଠାକୁରଙ୍କ ଭୋଗ ନୈବେଦ୍ୟରେ ଶାଗ ସ୍ଥାନ ପାଇଲା । ବୈଜ୍ଞାନିକମାନେ ମଧ୍ୟ ତୁଷ୍ଟହେଲେ ଖାଦ୍ୟକୁ ସର୍ବଗୁଣସମ୍ପନ୍ନ କରି । ଆମ ତରକାରୀ ମହୁର ଓ ବେସର ମଧ୍ୟ ସ୍ୱତନ୍ତ୍ର । ବିହାର, ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ ଆଦିରେ ଦେଖାଯାଉଥିବା ଏକକ ତରକାରୀଠୁ ଏହା ନିଶ୍ଚୟ ଅଲଗା । ଏଠି ସବୁ ପରିବା ବିଭିନ୍ନ ପରିମାଣରେ ଏକାଠି ମିଶି ରନ୍ଧାଯାଏ । ଦଶ ବାର ପ୍ରକାର ପନିପରିବାରୁ ଅଧିକ ହେଲେ ଏହାକୁ ଘାଣ୍ଟ ତରକାରୀ କୁହାଯାଏ । ସୋରିଷର ମାତ୍ରା ଅଧିକ ହେଲେ ଏହା ବେସର ନଚେତ୍ ଅନ୍ୟାନ୍ୟ ମସଲା ପଡି ତରକାରୀ ହେଲେ ମହୁର କୁହାଯାଏ । ପୁଣି ବିରି ତିଆରି ବଡି ଆମର ତରକାରୀର ଏକ ବିଶେଷ ଅଙ୍ଗ । ଖଣ୍ଡ ଖଣ୍ଡ ନଡିଆ ବି ତରକାରୀର ସ୍ୱାଦ ପରିବର୍ଦ୍ଧନ କରେ । ଘାଣ୍ଟ ତରକାରୀରେ ବୁଟସିଝା, କାକୁଡି, କଦଳୀ, ଲାଉ, ଅମୃତଭଣ୍ଡା, କଖାରୁଠାରୁ ଗଜାମୁଗ ଯାଏଁ ଅନେକ କିଛି ମିଶିଥାଏ । ପଣସକଠାର ତରକାରୀ ନିରାମିଷ ଆହାର ପ୍ରାୟ ମାଂସାଳ ଓ ସ୍ୱାଦିଷ୍ଟ କରାଯାଏ । ଦହି ନଡିଆ, ଦହିବଡି, ଦହି ବାଇଗଣ ଓ ଦହି ପାଚେଡି ବି ଆମର ବିଶେଷତ୍ୱ ।

ଏଣୁ ଖାଦ୍ୟକୁ ସ୍ୱାଦିଷ୍ଟ ଓ ରୁଚି ସମ୍ପନ୍ନ କରିବାକୁ ଓଡିଆ ଘରଣୀ ବହୁ ଗବେଷଣା କରିଥିବାର ଅନୁମାନ କରାଯାଏ । କେବଳ ଖାଦ୍ୟ ଯେ ସୁଆଦିଆ ହୁଏ ତାହା ନୁହେଁ ଅତ୍ୟଧିକ ତେଲମସଲା ବ୍ୟବହାର କରାନଯାଇ କିପରି ସ୍ୱାସ୍ଥ୍ୟକର ଖାଦ୍ୟ ଓଡିଆ ପ୍ରାଣକୁ ଆକୁଳିତ କରିଛି ତାହା ହିଁ ବିଚାର କରିବାର କଥା ।

ଜଗନ୍ନାଥ ମନ୍ଦିରରେ କୁଡୁଆରେ ରନ୍ଧା ଏକ ସର୍ବୋତ୍ତମ ସ୍ୱାସ୍ଥ୍ୟକର ନୀତି । ମାଟିପାତ୍ରରେ ରନ୍ଧା ଏ ଜାତିର ଇତିହାସ ଓ ପରମ୍ପରାଗତ । ଲୌହ ଓ ତାମ୍ରପାତ୍ର ରନ୍ଧାଠାରୁ ତା'ର ସ୍ୱାଦ ଭିନ୍ନ ଓ ସ୍ୱତନ୍ତ୍ର । ପୁଣି ଅଭଡା ଅନ୍ନ କଥା ଦେଖନ୍ତୁ । ବୈଜ୍ଞାନିକମାନେ କହନ୍ତି ଭାତ ରାନ୍ଧି ଗାଳିଦେଲେ ପେଜରେ ଯଥେଷ୍ଟ ଭିଟାମିନ ବା ଜୀବସାର ବାହାରିଯାଏ । କିନ୍ତୁ ଓଡିଆ ସେ ଜୀବସାର ତା'ର ସଂରକ୍ଷଣ ପାଇଁ ମାଟି କୁଡୁଆର ତଳ ଭାଗରେ ଗୋଟିଏ କଡକୁ ଛୋଟ କଣାଟିଏ କରେ ଓ ପେଜ ନିଗଡାଏ । ଅବଢା ଅନ୍ନ ଗଳା ଯାଏନି । ଏଣୁ ଜୀବସାର ସ୍ତରୀଭୂତ ଅନ୍ନର ବିଭିନ୍ନ ସ୍ତର ଭିତର ସଂରକ୍ଷିତ ହୁଏ । ଯାହା ନଷ୍ଟ ହୁଏ ତାହା ସାମାନ୍ୟ ।

ବର୍ଷର ଭିନ୍ନ ଭିନ୍ନ ସମୟରେ ପାଳିତ ହେଉଥିବା ପର୍ବପର୍ବାଣିମାନଙ୍କରେ ମଧ୍ୟ ଓଡିଆ ଅଲଗା ଅଲଗା ପିଠାପଣା ଓ ଖାଦ୍ୟ ସାମଗ୍ରୀ କରିଥାଏ । ଏହା ତତ୍କାଳୀନ ଉତ୍ପାଦନ ଓ ସହଜ ଲଭ୍ୟ ଖାଦ୍ୟ ଉପଦାନକୁ ନେଇ ପ୍ରଚଳିତ ହେବା ସ୍ୱୀକୃତ । ମହାବିଷୁବ ସଂକ୍ରାନ୍ତିରେ ପଣା ଓ ଛତୁଆ କଥା ଦେଖାଯାଉ । ବେଲଗଛରେ ବେଲ ପାଚିଥାଏ ବୈଶାଖରେ । ଆଉ ଘରକୁ ଉତ୍ପନ୍ନ ରବି ଫସଲ ମଧ୍ୟ ଅମଳ ହୋଇସାରିଥାଏ । ଏଣୁ ବୁଟ ଓ ଗହମର ଛତୁ ସାଙ୍ଗକୁ ବେଲପଣା ପେଟକୁ ଆରାମ ଦିଏ । କୋଷ୍ଠକାଠିନ୍ୟ ଦୂର କରେ । ବୈଶାଖରେ ସ୍ୱେଦ ନିର୍ଗତ ଜଳ ଓ ଲବଣ ଜାତୀୟ ଦ୍ରବ୍ୟର ଭରଣା ହୁଏ ପଣା ଓ ଛତୁରେ ।

ଚିତଉ ଅମାବାସ୍ୟାରେ ଚିତଉ ପିଠା ହୋଇଥାଏ । ଧାରାଶ୍ରାବଣରେ ମଣିଷର ପାଚନ ଶକ୍ତି କମିଯାଏ । ଏଣୁ ଚାଉଳ ଚୂନା ଓ ନଡିଆକୁ ସ୍ୱତନ୍ତ୍ର ଭାବରେ ବାମ୍ଫଦେଇ ପିଠା ପ୍ରସ୍ତୁତ କରାଯାଏ । ଉଭୟ ଉପାଦାନ ଏତେ ନରମ ଓ ସିଦ୍ଧ ହୋଇଥାଏ ଯେ ପରିପାକରେ କଷ୍ଟ ହୁଏନି । ପାଣିରେ ସିଝାଇବାଠାରୁ ବାମ୍ଫରେ ସିଝାଇବାରେ ପାଚନ ପ୍ରକ୍ରିୟା ସହଜ ହୋଇଥାଏ । ଆମ ଖାଦ୍ୟରେ ପାଣିମଣ୍ଡା

ମଧ୍ୟ ଆଦୃତ । ତେଲ ଘିଅଠାରୁ ବେଶ ସ୍ୱାସ୍ଥ୍ୟକର ଏହି ମଣ୍ଡା । ତହିଁ ଭିତରେ ଛେନାଗୁଡ ବା ନଡିଆ ଗୁଡ ପୁର ଆକାରରେ ଦିଆଯାଇଥାଏ । ବଉଳ ଅମାବାସ୍ୟାରେ ବଉଳଙ୍କୁ ପୁର ଆକାରରେ ଦେଇ ମଣ୍ଡା କରାଯାଏ । ଏହି ମଣ୍ଡାରେ ବଉଳ ଶରୀରର ରୋଗପ୍ରତିରୋଧକ ଶକ୍ତି ବଢ଼ାଇଥାଏ । ହାଡଫୁଟି ଓ ମିଳିମିଳାଠୁଁ ମଣିଷଙ୍କୁ ଦୂରେଇ ରଖେ । ଏତଦବ୍ୟତୀତ ବଉଳ ଅମାବାସ୍ୟାରେ ଆଉ ଏକ ସୁଆଦିଆ ଖାଦ୍ୟହେଲା ବଉଳ ଗଇଁଠା । ଚାଉଳ ଚୂନା ସିଝାଯାଇ ସେଥିରେ ଗଇଁଠା କରାଯାଇ ଦୁଧରେ ପୁଣି ଥରେ ତାକୁ ସିଝାଯାଏ । ଏହା ଏକ ସର୍ବଗୁଣସମ୍ପନ୍ନ ଖାଦ୍ୟ । ଏଥିରେ ଦୁଧର ପୁଷ୍ଟିସାର ସ୍ନେହସାର ସାଙ୍ଗକୁ ଗଇଁଠାର ଶ୍ୱେତସାର ସଂଯୋଗ ଏହାକୁ ସୁଷମ କରେ ।

ଆଶ୍ୱିନ କୃଷ୍ଣପକ୍ଷ ଅଷ୍ଟମୀ ତିଥିରେ ଦ୍ୱିତୀୟା ଓଷା ହୁଏ । ସେତେବେଳେ ଧରା ସବୁଜିମାରେ ଭରା । ପନିପରିବା ବେଶ ହୋଇଥାଏ ଓଡିଶାର ପୁରପଲ୍ଲୀ, ସହର ଓ ନଗର ଅଞ୍ଚଳରେ । ଏଣୁ ସବୁ ପରିବା ଫଳକୁ ଏକାଠି ଦୁତିବାମନଙ୍କ ପାଖେ ବାଢି ତାଙ୍କର ପ୍ରସାଦ ରାନ୍ଧେ ଓଡିଆ ଘରଣୀ । ଘାଣ୍ଟ ତରକାରୀ ଘରେ ଘରେ ହୁଏ । ସବୁ ପନିପରିବାର ଏକ ସମ୍ମିଶ୍ରିତ ତରକାରୀ । ଯେମିତି ସୁସ୍ୱାଦୁ, ସେମିତି ପୁଷ୍ଟିକର ।

ଏହାପରେ ଆସେ ଦଶହରା । ଦେବୀପୂଜା ସହ ଘରେ ଘରେ ହୋମ-ଧୂପ-ନୈବେଦ୍ୟ । ଖେଚେଡି ତରକାରୀ, କ୍ଷିରୀ, ମଣ୍ଡା, କାକରା, ବିରିଲଡୁ, ମିଷ୍ଟାନ୍ନ ଏମିତି କେତେ କଣ ହୁଏ । ଓଡିଶାର ଶକ୍ତିପୂଜାର ଅବସର ଏକ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାତାବରଣରେ ହେଲେବି ଖାଦ୍ୟପେୟ ଦିଆନିଆ ବେଶ୍ ଜମାଣିଆ ହୁଏ । ସଭିଏଁ ଭୂରିଭୋଜନରେ ଆମୋଦିତ ହୋଇଥାନ୍ତି । ଆଶ୍ୱିନ ମାସରେ ଏକ ଧାନ ଅମଳ ହୋଇଥାଏ । ପନିପରିବା ବେଶ୍ ପର୍ଯ୍ୟାପ୍ତ ମିଳେ । ଏଣୁ ଆମ ସଂସ୍କୃତିରେ ଏ ମହୋତ୍ସବ-ଏ ଯାତ୍ରା ।

ମାର୍ଗଶିରରେ ଧାନ ଅମଳ ପରେ ଘରେ ଘରେ ବିଜେ କରନ୍ତି ଲକ୍ଷ୍ମୀ ଠାକୁରାଣୀ । ଲକ୍ଷ୍ମୀପୂଜା ଆମର ଏକ ପାରମ୍ପରିକ ଉତ୍ସବ । ମାର୍ଗଶିର ଚାରି ଗୁରୁବାରରେ ଲକ୍ଷ୍ମୀପୂଜା ହୁଏ । ନୂଆ ଧାନମେଣ୍ଟା ପୂଜା ହେବା ସଙ୍ଗେ ସଙ୍ଗେ ପ୍ରତିଥର ଅଲଗା ଅଲଗା ଭୋଗଲାଗେ ମାଆ ପାଖେ । ଚିତଉ ତରଣ, କ୍ଷିରୀପୁଳି, ଦହିଭାତ, ମୂଳାଶାଗ, ମଣ୍ଡାକାକରା, ଆରିସା, ବିରିଲଡୁ ଆଦି ଭିନ୍ନ ଭିନ୍ନ ପାଳିରେ ଭୋଗ ବଢା ହୁଏ । ଏଥିରୁ ପ୍ରତୀତ ହୁଏ ଯେ ଏ ସମସ୍ତ ଖାଦ୍ୟ କେବଳ ଆମର ପ୍ରିୟ ବୋଲି ଆମେ ଲକ୍ଷ୍ମୀ ଠାକୁରାଣୀଙ୍କୁ ବାଢିଥାଉ ।

ମାର୍ଗଶିର କୃଷ୍ଣପକ୍ଷ ଅଷ୍ଟମୀରେ ପ୍ରଥମାଷ୍ଟମୀ ହୁଏ । ପରିବାରର ବଡ ସନ୍ତାନ ସନ୍ତତିଙ୍କ ପାଇଁ ପୂଜା ବଢାଯାଏ । ଏଥିରେ ଏଣ୍ଡୁରିପିଠା ଅଥାର ବାନ୍ଧି ବାଙ୍ଗରେ ଏଣ୍ଡୁରିପିଠା ହୁଏ । ବିରି ଚାଉଳ ଚୂନାକୁ ପାଣିରେ ଫେଣ୍ଟି ବା ବିରିଚାଉଳ ବାଟି ଥାକ ଥାକ କରି ବାଙ୍ଗରେ ହଳଦୀପତ୍ର ଗୁଡାଇ ଏ ପିଠା ସିଝାଯାଏ । ସାଦା ଓ ପୁରଦିଆ ପିଠା ମଧ୍ୟ କରାଯାଏ । ଏହା ଲଘୁପାକ ହୁଏ, ବେଶ ନରମ ମଧ୍ୟ ହୁଏ । ବେଶ ତୃପ୍ତିକର ଓ ପୁଷ୍ଟିକର ।

ଏତଦ୍‌ବ୍ୟତୀତ କୁମାରୋତ୍ସବରେ ଛେନାଖଇ, ଦୀପାବଳିରେ ମିଠେଇ, ଲଡୁ ଓ ମିଷ୍ଟାନ୍ନ, ବଡବଡୁଆ ଶ୍ରାଦ୍ଧରେ ଆଖୁ, ନଡିଆ, କଦଳୀ ଓ ଖଇ ଭୋଗ, ମକର ସଂକ୍ରାନ୍ତିରେ ମକର ଚାଉଳ, କଦଳୀ, ନଡିଆ ଭୋଗ, ଶିବରାତ୍ରିରେ ରାଶିପିଠା, ତେଲୁଆ ଓ ଚଣାଭୋଗ, ଦୋଳରେ ଚଣା, ଉଖୁଡା, କଦଳୀ ଭୋଗ, ସରସ୍ୱତୀ ପୂଜା ଓ ଗଣେଶ ପୂଜାରେ ରାଶିଲଡୁ, ଖଇ, ଉଖୁଡା, କଦଳୀ, ନଡିଆ, ଆଖୁ ପୂଜା, ଦେବସ୍ନାନ ପୂର୍ଣ୍ଣିମାରେ ଖେଚୁଡି ଭୋଗ ଆମର ପାରମ୍ପରିକ । ଏସବୁର ଏକ ସଂକ୍ଷିପ୍ତ ତାଲିକା ତଳେ ପ୍ରଦତ୍ତ ହେଲା -

୧-ମହାବିଷୁବ ସଂକ୍ରାନ୍ତି - ପଣା ଓ ଛତୁଆ ।

୨-ରଜ ସଂକ୍ରାନ୍ତି -ପୋଡପିଠା ।

୩-ଦେବସ୍ନାନ ପୂର୍ଣ୍ଣିମା -ଖେଚୁଡି ।

୪ -ଝୁଲଣ ପୂର୍ଣ୍ଣିମା - ଏଣ୍ଡୁରି ପିଠା, ମାଲପୁଆ ।

୫ -ଜନ୍ମାଷ୍ଟମୀ - ମଣ୍ଡା, କାକରା, ଚୁଡାଘଷା ଓ ଫଳ ।

୬ – ଦ୍ୱିତୀୟା ଓଷା – ଘାଣ୍ଟ ତରକାରୀ ।

୭ – ଦଶହରା – ମଣ୍ଡା କାକରା, ଖେଚୁଡି, କ୍ଷିରୀ, ପୁଳି, ମିଷ୍ଟାନ୍ନ ଆଦି ।

୮ – କୁମାର ପୁନେଇ – ଖଇଛେନା, ମିଷ୍ଟାନ୍ନ, କାକୁଡି, ତାଳଗଜା, ନଡିଆ, କଦଳୀ ।

୯ – ଦୀପାବଳି – ନାନାଦି ମିଷ୍ଟାନ୍ନ ।

୧୦ – ବଡଓଷା – ମୁଆଁଗଜ, ମଣ୍ଡାଗଜ ଓ ତରଣ ।

୧୧ – କାର୍ତ୍ତିକ ପୂର୍ଣ୍ଣିମା –ଠୁଙ୍କାପୁରି, ଦହିବରା, ଆଳୁଦମ, ଛେନା ତରକାରୀ (ଏହା ଅବଶ୍ୟ ଭୋଗ ଲାଗେନା) ।

୧୨ – ପ୍ରଥମାଷ୍ଟମୀ – ଏଣ୍ଡୁରି ପିଠା, ଚୁଡାଘଷା, କ୍ଷିରୀ, ପୁଳି, ମିଷ୍ଟାନ୍ନ ଓ କାଞ୍ଜି ।

୧୩ – ମାର୍ଗଶିର ଗୁରୁବାର – ଚିତଉ, ତରଣ, କ୍ଷିରୀପୁଳି, ଦହିଭାତ, ମୂଳାଶାଗ, ମଣ୍ଡାକାକରା, ଆରିସା, ବିରିଲଡୁ ।

୧୪ – ଧନୁ ସଂକ୍ରାନ୍ତି – ଧନୁମୁଆଁ, ଖଇମୁଆଁ ।

୧୫ – ବଉଳ ଅମାବାସ୍ୟା – ମଣ୍ଡା, ବଉଳମଣ୍ଡା, ବଉଳ ଗଇଁଠା, ଅଟକାଳି ।

୧୬– ମକର ସଂକ୍ରାନ୍ତି– ମକର ଚାଉଳ, କଦଳୀ ଓ ନଡିଆ ।

୧୭– ଚତଉ ଅମାବାସ୍ୟା – ଚିତଉ ପିଠା ।

୧୮ – ଗଣେଶ ଚତୁର୍ଥୀ – ରାଶି, ଖସାଲଡୁ, ଖଇ ଉଖୁଡା, କଦଳୀ, ନଡିଆ, ଫଳମୂଳ ।

୧୯ – ଶ୍ରୀପଞ୍ଚମୀ – ଖଇଉଖୁଡା, ଫଳମୂଳ ।

୨୦– ଶିବରାତ୍ରି– ଜାଗର ଚଣା, ଉଖୁଡା, ରାଶିପିଠା, ତିଲୁଆ ।

୨୧ – ଦୋଳ – ଆମ୍ବକଷି, ଚଣା, ଖଇଉଖୁଡା, ଫଳ ।

୨୨ – ମଙ୍ଗଳବାର ଓଷା – ଗେଟେଇ ପିଠା ।

୨୩ –ଶାମ୍ବ ଦଶମୀ – କାକରା, ମଣ୍ଡା, ଚକୁଳି, ଆରିସା ପିଠା, ଚୁଡା ଚକୁଳି ଓ ମିଷ୍ଟାନ୍ନ ।

୨୪ – ଭାଲୁକୁଣୀ – ଖଇ, ଉଖୁଡା, ନଡିଆ, କଦଳୀ ।

୨୫ –ମାଘ ପୂର୍ଣ୍ଣମୀ – ବାଇଗଣ ପୋଡା ।

୨୬ – ଅଶୋକାଷ୍ଟମୀ –ଅଶୋକ କଢି ।

୨୭– ମାଘ ସପ୍ତମୀ– ଖସା ଯାଉ, ଲାଉଶିମ୍ବ ରାଇତା ।

୨୮ – ସପ୍ତପୁରୀ ଅମାବାସ୍ୟା – ସାତପତ୍ର ଫେଣି ।

ଆମ ସଂସ୍କୃତିରେ ପ୍ରତିଫଳିତ ଖାଦ୍ୟ ପରମ୍ପରା କେବଳ ରୁଚିକର ନୁହେଁ, ସ୍ୱାସ୍ଥ୍ୟ ବିଜ୍ଞାନସମ୍ମତ ସହଜ ପାକପ୍ରଣାଳୀ ଉପରେ ସନ୍ନିବେଶିତ । ଅଧୁନାତନ ପରିପ୍ରେକ୍ଷୀରେ ଏଥିରେ ହେଉଥିବା ପରିବର୍ତ୍ତନମାନ କେତେଦୂର ଗ୍ରହଣୀୟ ତାହା ବିଚାର କରିବା କଥା ।

ଗୌଡ଼ଗାଁ, କପ୍ତିପଦା, ମୟୂରଭଞ୍ଜ



# କଳିଙ୍ଗର ନୌବାଣିଜ୍ୟ ଓ ପାରାଦ୍ୱୀପ ବନ୍ଦର

ପ୍ରଭାତ କୁମାର ନନ୍ଦ

ସମଗ୍ର ବିଶ୍ୱରେ ଭାରତୀୟମାନେ ନୌବାଣିଜ୍ୟ କ୍ଷେତ୍ରରେ ବିଶେଷ ଅଗ୍ରଗତି କରିଥିଲେ । ତନ୍ମଧ୍ୟରେ କଳିଙ୍ଗର ସାଧବମାନଙ୍କର ନୌବାଣିଜ୍ୟିକ କୀର୍ତ୍ତିର ତୁଳନା ନାହିଁ । ବିଶ୍ୱ ନୌବାଣିଜ୍ୟ ମାନଚିତ୍ରରେ ଜଗତସିଂହପୁର ଜିଲ୍ଲା ଅଞ୍ଚଳର ନୌବାଣିଜ୍ୟିକ ପ୍ରସିଦ୍ଧି ଖ୍ରୀଷ୍ଟପୂର୍ବ ସମୟରୁ ପ୍ରମାଣିତ ହୋଇଛି । ବିଶେଷତଃ କଳିଙ୍ଗର ନୌବାଣିଜ୍ୟ ଇତିହାସକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ସାଧବମାନେ ଜଗତସିଂହପୁର ଜିଲ୍ଲାରେ ଖ୍ରୀଷ୍ଟପୂର୍ବ ସମୟରୁ ସକ୍ରିୟ ଭାବରେ ପ୍ରତିଷ୍ଠିତ ମନ୍ନଦ ବନ୍ଦରକୁ ନୌବାଣିଜ୍ୟ ନିମିତ୍ତ ବ୍ୟବହାର କରୁଥିଲେ । ବିଶ୍ୱ ପ୍ରସିଦ୍ଧ ଜଳପଥ ଆବିଷ୍କାର ଟଲେମି ଭାରତର ପୂର୍ବ ଉପକୂଳରେ ପ୍ରତିଷ୍ଠିତ ବନ୍ଦର ରୂପେ ମନ୍ନଦ ବନ୍ଦର କଥା ଉଲ୍ଲେଖ କରିଛନ୍ତି । ଏହି ମତକୁ ପରବର୍ତ୍ତୀ ଭୂଗୋଳବିତ୍ ଟି.ଇ.ଜେରିନି ମଧ୍ୟ ସମର୍ଥନ କରିଛନ୍ତି ।

କଳିଙ୍ଗର ନୌବାଣିଜ୍ୟିକ ପ୍ରସିଦ୍ଧିକୁ ଲକ୍ଷ୍ୟ କଲେ ନିମ୍ନଲିଖିତ ଭୌଗୋଳିକ ତଥ୍ୟ ସମ୍ମୁଖକୁ ଆସେ–

୧. କଳିଙ୍ଗ ସାଧବମାନେ ପଣ୍ୟ ଦ୍ରବ୍ୟ ଏକତ୍ର କରିବାକୁ ନଦୀ ତୀର ବା ସମୁଦ୍ର ତଟକୁ ବ୍ୟବହାର କରୁଥିଲେ ।

୨. ବିଶେଷତଃ ବିଭିନ୍ନ ନଦୀ ପଥରେ ବୋଇତ ଚଳାଇ ସାଧବମାନେ ନଦୀ ଓ ସାଗରର ସଙ୍ଗମସ୍ଥଳରେ ପହଞ୍ଚୁଥିଲେ ।



୩. ସମୁଦ୍ରବକ୍ଷରେ ଦୀର୍ଘଦିନ ପାଇଁ ଜଳଯାତ୍ରା ସମୟରେ ବ୍ୟବହାର ନିମିତ୍ତ ଖାଦ୍ୟସାମଗ୍ରୀ, ପାନୀୟ ଜଳ ସଂଗ୍ରହ ଓ ଦକ୍ଷ ନାବିକମାନଙ୍କୁ ଚୟନ କରୁଥିଲେ ।

୪. ସମୁଦ୍ରରେ ଦକ୍ଷିଣ–ପୂର୍ବ ଦିଗକୁ ବାୟୁର ପ୍ରବାହ ହେବା ବେଳେ କଳିଙ୍ଗ ସାଧବମାନେ ନୌଯାତ୍ରା ଆରମ୍ଭ କରୁଥିଲେ ।

୫. ପ୍ରତ୍ୟାବର୍ତ୍ତନ ସମୟରେ ଉତ୍ତର–ପଶ୍ଚିମ ଦିଗକୁ ବାୟୁ ପ୍ରବାହିତ ହେଲାବେଳେ କଳିଙ୍ଗ ସାଧବମାନେ

ଜଳପଥରେ ଦକ୍ଷିଣ-ପୂର୍ବ ଏସିଆ ଦ୍ୱୀପପୁଞ୍ଜରୁ କଳିଙ୍ଗ ଅଭିମୁଖେ ନୌ-ଯାତ୍ରା କରୁଥିଲେ ।

୬. ସମୁଦ୍ରତଟରେ ଥିବା ନଦୀ ମୁହାଣ ଦେଇ ସେମାନେ ନଦୀ ତୀରରେ ଥିବା ବନ୍ଦରରେ ପହଞ୍ଚୁଥିଲେ ଏବଂ ବିଦେଶରୁ ଆଣୁଥିବା ପଣ୍ୟଦ୍ରବ୍ୟକୁ ବିକ୍ରୟ କରିବା ପାଇଁ ସେଠାରେ ଗଚ୍ଛିତ କରି ରଖୁଥିଲେ ।

ଓଡ଼ିଆ ଜାତିର ଅନ୍ୟତମ ଶ୍ରେଷ୍ଠ ପୌରାଣିକ ଓ ଐତିହାସିକ ପର୍ବ, କାର୍ତ୍ତିକ ପୂର୍ଣ୍ଣିମା ଦିବସର ବୋଇତବନ୍ଦାଣ ଉତ୍ସବ ଉପରୋକ୍ତ ନୌ-ଯାତ୍ରାର ସ୍ମାରକୀ ହୋଇ ରହିଛି । ଓଡ଼ିଶାର ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହେଉଥିବା ବାଲିଯାତ୍ରା ଉପରୋକ୍ତ ନୌବାଣିଜ୍ୟିକ ପ୍ରସିଦ୍ଧି ସହ ସଂପୃକ୍ତ । ତତ୍କାଳୀନ କଳିଙ୍ଗର ସମସ୍ତ ଅଞ୍ଚଳରେ ନୌବାଣିଜ୍ୟ ହେଉଥିଲେ ମଧ୍ୟ ଜଗତସିଂହପୁର ଜିଲ୍ଲା ଅଞ୍ଚଳରେ ତାହା ଅଧିକ ରୂପାୟିତ ହେଉଥିଲା । ଏଥିରେ ସନ୍ଦେହର ଅବକାଶ ନାହିଁ ଯେ, ମହାନଦୀ ଓଡ଼ିଶାର ସବୁଠାରୁ ଦୀର୍ଘତମ ନଦୀ । ଏହି ନଦୀ ଓଡ଼ିଶାର ସମସ୍ତ ସମୃଦ୍ଧ ବାଣିଜ୍ୟ କେନ୍ଦ୍ର ଦେଇ ପ୍ରବାହିତ ହୋଇଛି । ଅନ୍ୟ ଭାବରେ କହିଲେ ମହାନଦୀର କୂଳରେ ତତ୍କାଳୀନ ଶାସକମାନେ ପ୍ରତିଷ୍ଠିତ ସହର ଓ ବାଣିଜ୍ୟ କେନ୍ଦ୍ର ନିର୍ମାଣ କରିଥିଲେ । ଓଡ଼ିଶାର ସମସ୍ତ ନଦୀ ମଧ୍ୟରୁ ମହାନଦୀର ଶାଖାନଦୀ ଓ ଉପନଦୀର ସଂଖ୍ୟା ସର୍ବାଧିକ । ପୂର୍ବକାଳରେ ପଣ୍ୟଦ୍ରବ୍ୟ ପରିବହନ ନିମିତ୍ତ ନୌକାକୁ ଅଧିକ ବ୍ୟବହାର କରାଯାଉଥିଲା । ତେଣୁ ଏକଥା ସ୍ୱୀକାର କରିବାକୁ ହେବ ଯେ ଓଡ଼ିଶାର ସମ୍ବଲପୁରଠାରୁ ଆରମ୍ଭ ହୋଇ ପାରାଦ୍ୱୀପ ପର୍ଯ୍ୟନ୍ତ ବିଭିନ୍ନ ସହରଗୁଡ଼ିକର ବଣିକମାନେ ପଣ୍ୟଦ୍ରବ୍ୟ ସଂଗ୍ରହ କରି ବୋଇତରେ ଆଣି ମହାନଦୀର କଳିଙ୍ଗ ସାଗର ସହିତ ସଙ୍ଗମସ୍ଥଳ ମନ୍ନଦ ବନ୍ଦରରେ ପହଞ୍ଚାଉଥିଲେ । ପରେ ସମୁଦ୍ରରେ ଦକ୍ଷିଣ-ପୂର୍ବ ଏସିଆ ଦ୍ୱୀପପୁଞ୍ଜକୁ ନୌ-ଯାତ୍ରା କରିବା ପାଇଁ ଅନୁକୂଳ ବାୟୁପ୍ରବାହ ହେବା ପରେ ସାଧବମାନେ ପାଲଟଣା ନୌ-ଯାତ୍ରା ଆରମ୍ଭ କରିଥିଲେ । ଏହି ଦୃଷ୍ଟିରୁ ସମଗ୍ର କଳିଙ୍ଗକୁ ମାନବର ଶରୀର ଭାବରେ କଳ୍ପନା କଲେ ଜଗତସିଂହପୁର ଜିଲ୍ଲାର ମନ୍ନଦ ବନ୍ଦର ବା ମହାନଦୀର ମୁହାଣ କ୍ଷେତ୍ରକୁ ଶରୀରର ମୁଖମଣ୍ଡଳ କହିଲେ ଅତ୍ୟୁକ୍ତି ହେବନାହିଁ ।

ମହାନଦୀର ସଙ୍ଗମସ୍ଥଳ ନିକଟରେ ପୂର୍ବ ନୌବାଣିଜ୍ୟ କାର୍ଯ୍ୟକଳାପର ବହୁ ପ୍ରାକୃତିକ ଓ ଐତିହାସିକ ସ୍ମାରକୀ ରହିଛି । ମହାନଦୀ ମୁହାଣ ନିକଟରେ 'ବୋଇତରା' କୁଦ ନାମରେ ଗୋଟିଏ ଦ୍ୱୀପ ରହିଛି । ଏହି ପ୍ରାବନ୍ଧିକ ଏହି ଶବ୍ଦର ଅର୍ଥ ବିଷୟରେ ଅଧିକ ଜ୍ଞାନଲାଭ କରିବା ପାଇଁ ପାରାଦ୍ୱୀପ ନିକଟସ୍ଥ ବିଭିନ୍ନ କୈବର୍ତ୍ତଙ୍କ ସହିତ ଆଲୋଚନା କରିଛି । ସେମାନଙ୍କ ଦୃଷ୍ଟିରେ ବର୍ତ୍ତମାନର ବୋଇତରା କୁଦର ପୂର୍ବନାମ 'ବୋଇତରୁହା' ଦ୍ୱୀପ ଥିଲା । କଳିଙ୍ଗର ମହାନଦୀ କୂଳସ୍ଥ ବିଭିନ୍ନ ବନ୍ଦରରୁ ପଣ୍ୟଦ୍ରବ୍ୟ ନେଇ ଆସୁଥିବା ବୋଇତଗୁଡ଼ିକ ବୋଇତରୁହା କୁଦରେ ଆସି ଏକତ୍ର ହେଉଥିଲେ । ସେଠାରେ ସାଧବମାନେ ଦୀର୍ଘକାଳ ଜଳଯାତ୍ରା ନିମିତ୍ତ ଖାଦ୍ୟପଦାର୍ଥ, ପାନୀୟ ଜଳ, ଅଧିକ ପାଲ ପ୍ରଭୃତିର ବ୍ୟବସ୍ଥା କରି ପଣ୍ୟଦ୍ରବ୍ୟଗୁଡ଼ିକୁ ବୋଇତରେ ସୁସଜ୍ଜିତ କରି ରହୁଥିଲେ । ପରେ ଦକ୍ଷ ନାବିକମାନଙ୍କୁ ନିଯୁକ୍ତ କରି ଦଳଦଳ ହୋଇ ନୌ-ଯାତ୍ରା ଆରମ୍ଭ କରୁଥିଲେ ।

ପାରାଦ୍ୱୀପ ନିକଟସ୍ଥ ବିଭିନ୍ନ କୈବର୍ତ୍ତ ପଲ୍ଲୀ ଦକ୍ଷ ଓ ସାହସିକ ନାବିକମାନଙ୍କର ଗନ୍ତାଘର ଥିଲା । ଏବେ ପାରାଦ୍ୱୀପରୁ କୁଜଙ୍ଗ ମଧ୍ୟରେ ପ୍ରସିଦ୍ଧ କୈବର୍ତ୍ତ ପଲ୍ଲୀ ମଧ୍ୟରୁ ଗଣ୍ଡିକପୁର, ମଙ୍ଗରାଜପୁର, ଗୋପିଆକୁଦ, କାଳିଆପାଟ, ବରେଇ ଇତ୍ୟାଦି ଉଲ୍ଲେଖଯୋଗ୍ୟ । କୁଜଙ୍ଗ ଇତିହାସକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ଏହି କୈବର୍ତ୍ତମାନେ କ୍ଷେଣ୍ଡବଂଶ ରାଜାମାନଙ୍କ ନେତୃତ୍ୱରେ ଦୁର୍ଦ୍ଧର୍ଷ ନୌବାହିନୀ ରୂପେ ପ୍ରମାଣିତ ହୋଇଥିଲେ ଓ ଇଂରେଜମାନଙ୍କ ଶାସନ କାଳରେ ତାଙ୍କର ଜାହାଜଗୁଡ଼ିକର ଚଳାଚଳରେ ବାଧା ସୃଷ୍ଟି କରିଥିଲେ ।

ବୋଇତରୁହା କୁଦ ନିକଟରେ ଶାରଳୀକୁଦ ନାମରେ ଆଉ ଗୋଟିଏ ଛୋଟ ଦ୍ୱୀପ ରହିଛି । ଏକଥା ସ୍ୱୀକାର୍ଯ୍ୟ ଯେ କଳିଙ୍ଗର ସାଧବମାନେ ନୌ-ଯାତ୍ରା କରିବା ପୂର୍ବରୁ ମାତୃଶକ୍ତିକୁ ପୂଜାର୍ଚ୍ଚନା କରୁଥିଲେ । ଜଗତସିଂହପୁର ଅଞ୍ଚଳର

ଅଧିଷ୍ଠାତ୍ରୀ ଦେବୀ ରୂପେ 'ଶାରଳା' ବହୁକାଳରୁ ପ୍ରସିଦ୍ଧ । କଳିଙ୍ଗର ନାବିକମାନେ ଦୁଃସାହସିକ ନୌ-ଯାତ୍ରା କରିବା ପୂର୍ବରୁ ଦେବୀ ଶାରଳାଙ୍କର ପୂଜାର୍ଚ୍ଚନା କରୁଥିଲେ ଓ ସେହି ପୂଜା-ଅର୍ଚ୍ଚନା ନିମିତ୍ତ ଶାରଳାଙ୍କ ନାମାନୁସାରେ ଶାରଳୀକୁଦର ନାମକରଣ ହୋଇଥିଲା । ଏହି କୁଦରେ ଏକ ନିର୍ଦ୍ଦିଷ୍ଟ ଜାତୀୟ ସୁନ୍ଦର ପକ୍ଷୀ ଆତଯାତ ହେବାର ଦେଖାଯାନ୍ତି । ଏହି ପକ୍ଷୀଗୁଡ଼ିକୁ ଶାରଳୀ ନାମରେ ସ୍ଥାନୀୟ ଲୋକମାନେ ଅଦ୍ୟାବଧି ନାମିତ କରିଅଛନ୍ତି ।

ବୋଇତରା କୁଦ ନିକଟରେ ମୂଷାଡିଆ ଓ କାଉଡ଼ିଆ ନାମରେ ଆଉ ଦୁଇଟି ଦ୍ୱୀପ ରହିଛି । ମୂଷାଡ଼ିଆ ଦ୍ୱୀପରେ କଳିଙ୍ଗର ସାଧବମାନେ ବିଭିନ୍ନ ପଣ୍ୟଦ୍ରବ୍ୟ ଗଚ୍ଛିତ କରି ରଖୁଥିଲେ । ତନ୍ମଧ୍ୟରୁ ଓଡ଼ିଶାର ସରୁ ଚାଉଳ ଓ ବିଭିନ୍ନ ବନସ୍ପତି ଜନିତ ସାମଗ୍ରୀ ଅଧିକ ପରିମାଣରେ ଥିଲା । ଏ ସମସ୍ତ ପଦାର୍ଥର ଗଚ୍ଛିତ ସ୍ଥଳରେ ମୂଷାମାନଙ୍କର ପ୍ରାଦୁର୍ଭାବ ରହିବା ସ୍ୱାଭାବିକ ଏବଂ ସେହି ଅନୁସାରେ କୁଦଟିର ନାମ ମୂଷାଡ଼ିଆ ରଖାଯାଇଛି । ମୂଷାଡ଼ିଆ ନିକଟସ୍ଥ କାଉଡ଼ିଆ ଦ୍ୱୀପରେ ନାବିକମାନେ ବିଭିନ୍ନ ଖାଦ୍ୟ ସଂଗ୍ରହପୂର୍ବକ ଅବସ୍ଥାନ କରୁଥିଲେ । ବିଭିନ୍ନ ପଶୁପକ୍ଷୀଙ୍କର ମାଂସ ଓ ବିଭିନ୍ନ ଜାତୀୟ ମାଛ ତାଙ୍କର ଖାଦ୍ୟଦ୍ରବ୍ୟ ଥିଲା । ଏ ସମସ୍ତ ଦ୍ରବ୍ୟର ଗଚ୍ଛିତ ସ୍ଥଳରେ କାଉମାନଙ୍କର ବାସସ୍ଥଳୀ ହେବା ସ୍ୱାଭାବିକ । ସେହି ଅନୁସାରେ କୈବର୍ତ୍ତମାନେ ସେହି ଦ୍ୱୀପର ନାମକୁ କାଉଡ଼ିହ ରଖିଥିଲେ । କାଳକ୍ରମେ ଜନମୁଖରେ ମୂଷାଡ଼ିହ ପରିବର୍ତ୍ତିତ ହୋଇ କାଉଡ଼ିଆ ନାମରେ ନାମିତ ହୋଇଛି । ଏ ସମସ୍ତ ଭୌଗୋଳିକ ଓ ଐତିହାସିକ ସ୍ମାରକୀକୁ ଅନୁଧ୍ୟାନ କଲେ ସ୍ପଷ୍ଟ ଅନୁମିତ ହୁଏ ଯେ, ଜଗତସିଂହପୁର ଜିଲ୍ଲାର ଅଧୁନା ପାରଦ୍ୱୀପ ଓ ତା'ର ନିକଟ କ୍ଷେତ୍ର ସମଗ୍ର ଭାରତର ଅନ୍ୟତମ ନୌବାଣିଜ୍ୟିକ କେନ୍ଦ୍ରଥିଲା । ଜଗତସିଂହପୁର ଜିଲ୍ଲାର ସମୃଦ୍ଧ ଇତିହାସକୁ ଆଲୋଚନା କଲାବେଳେ ସମଗ୍ର ବିଶ୍ୱର ଭୂଗୋଳ, ଇତିହାସ ଓ ତହିଁରେ କଳିଙ୍ଗର ବିଶେଷତ୍ୱ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ । ଜିଲ୍ଲାର ନାମକୁ ଆଲୋଚନା କଲେ, ତାହାର ପ୍ରତିଷ୍ଠା ପ୍ରତିପାଦିତ ହୋଇଥାଏ । ଜଗତର ସିଂହ ରୂପେ ନାମ ବହନ କରିଥିବା ସ୍ଥଳ ଯେ ମୂଳତଃ ସମୃଦ୍ଧ ହୋଇଥିବ, ତାହା ଯେକୌଣସି ବ୍ୟକ୍ତିର ମାନସ ପଟଳରେ ଆସିବା ସ୍ୱାଭାବିକ । ଧର୍ମ, ସାହିତ୍ୟ, ବାଣିଜ୍ୟ, ବ୍ୟକ୍ତିଗତ ପାରଦର୍ଶିତା ପ୍ରଭୃତି କ୍ଷେତ୍ରରେ ଓଡ଼ିଶା ଇତିହାସରେ ଜଗତସିଂହପୁର ଜିଲ୍ଲା ଅଗ୍ରଗାମୀ ହୋଇ ରହିଛି । ଏହି ଜିଲ୍ଲାର ଗଡ଼ କୁଜଙ୍ଗଠାରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କର ବ୍ରହ୍ମ ବହୁଦିନ ଧରି ପୂଜିତ ହେଉଥିଲେ ଓ ଏହି ଜିଲ୍ଲାର ଷେଣ୍ଢରାଜାଙ୍କ ନୌବାହିନୀର ପରାକ୍ରମ ସମଗ୍ର ବିଶ୍ୱର ନାବିକମାନଙ୍କୁ ଭୟଭୀତ କରିଥିଲା । କଳିଙ୍ଗ ଭୂଖଣ୍ଡର ଜଗତସିଂହପୁର ଅଞ୍ଚଳ ବିଷୟରେ ଆଲୋଚନା କଲାବେଳେ ସମଗ୍ର କଳିଙ୍ଗର ପ୍ରତିଷ୍ଠା ବିଷୟରେ ସମ୍ୟକ୍ ଆଲୋଚନା ପ୍ରାସଙ୍ଗିକ ହେବ ।

ସମଗ୍ର ବିଶ୍ୱକୁ ଭୂଗୋଳ ଓ ଇତିହାସକାରମାନେ ସାତଟି ଦ୍ୱୀପରେ ବିଭକ୍ତ କରି ତାହାକୁ 'ସପ୍ତଦ୍ୱୀପାମହୀ' ଭାବରେ ନାମିତ କରିଥିଲେ । ପ୍ରତ୍ୟେକ ଦ୍ୱୀପର ଅଂଶବିଶେଷଗୁଡ଼ିକୁ 'ବର୍ଷ' ଭାବରେ ଗ୍ରହଣ କରାଯାଇଥିଲା । ବର୍ଷଗୁଡ଼ିକ ବିଭିନ୍ନ ଦେଶ ବା ଅଞ୍ଚଳରେ ବିଭକ୍ତ କରାଯାଇ, ଭୌଗୋଳିକ ପରିବେଶ ଅନୁଯାୟୀ ବା ଗୁରୁତ୍ୱପୂର୍ଣ୍ଣ ଘଟଣା ଓ ମାନବକୁ କେନ୍ଦ୍ରକରି ସେଗୁଡ଼ିକୁ ନାମିତ କରାଯାଉଥିଲା । କଳିଙ୍ଗ ଦେଶର ଅବସ୍ଥିତି ଜମ୍ବୁଦ୍ୱୀପର ଭାରତବର୍ଷ ମଧ୍ୟରେ । ଏହି ବର୍ଷର ଅଗ୍ନିକୋଣରେ ବଙ୍ଗ, ମଗଧ, କୋଶଳ ଓ ଦକ୍ଷିଣାଞ୍ଚଳକୁ ପରିବ୍ୟାପ୍ତ କରି କଳିଙ୍ଗ ଦେଶ ଦୁଇ ଲକ୍ଷ ବର୍ଗ କିଲୋମିଟର, ଅଞ୍ଚଳରେ ଚିହ୍ନିତ ହୋଇଥିଲା । ପ୍ରାଚୀନ ସାହିତ୍ୟ 'ମହାଭାରତ'ରେ କଳିଙ୍ଗ ଶବ୍ଦର ସାର୍ଥକ ପ୍ରୟୋଗ ଲକ୍ଷ୍ୟ କରାଯାଇଛି । ପୂର୍ବଭାରତର ଶାସନକର୍ତ୍ତା 'ବାଳୀ'ଙ୍କ ସହଧର୍ମିଣୀ 'ସୁଦେଷ୍ଣା' ଋଷିପୁତ୍ର ଦୀର୍ଘତମାଙ୍କ କୃପାରୁ ପାଞ୍ଚୋଟି ପୁତ୍ରର ଜନନୀ ହୋଇଥିଲେ । । ତୃତୀୟ ପୁତ୍ରର ନାମ ଥିଲା କଳିଙ୍ଗ । ସେ ଜଣେ ପ୍ରତାପଶାଳୀ ରାଜା ଥିଲେ । ତାଙ୍କ ଦ୍ୱାରା ଶାସିତ ରାଜ୍ୟର ନାମ ଥିଲା କଳିଙ୍ଗ ଦେଶ । କଳିଙ୍ଗ ଶବ୍ଦର ପ୍ରୟୋଗ ବହୁ ପ୍ରାଚୀନ ପୁରାଣ ଓ ଧର୍ମଶାସ୍ତ୍ରରେ ହୋଇଥିଲେ ମଧ୍ୟ ମହାଭାରତର ଉପରୋକ୍ତ ଗାଥା ଅଧିକ ଅର୍ଥବୋଧକ ମନେହୁଏ ।

ପ୍ରସିଦ୍ଧ ଗ୍ରୀକ୍ ଐତିହାସିକ 'ପ୍ଲିନି'ଙ୍କ ଭାଷାରେ– ଗଙ୍ଗାନଦୀର ପାର୍ଶ୍ୱରେ 'କଳିଙ୍ଗ' ନାମକ ଏକ ଆଦିବାସୀ ଗୋଷ୍ଠୀ ବାସ କରୁଥିଲେ ଓ ସେମାନେ ଆର୍ଯ୍ୟଗୋଷ୍ଠୀର ବିରୋଧୀ ଥିଲେ । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ପ୍ରତିଷ୍ଠିତ ଭୂଗୋଳବିତ୍ 'ଟଲେମି'ଙ୍କ ଦୃଷ୍ଟିରେ ଗଙ୍ଗାନଦୀର ଦକ୍ଷିଣ ପାର୍ଶ୍ୱରେ ଏକ ଉନ୍ନତ ଆଦିବାସୀ ସଭ୍ୟତା ବିସ୍ତାର ଲାଭ କରିଥିଲା, ଯାହାକି ବୈଦିକ ଆର୍ଯ୍ୟ ଓ ସିନ୍ଧୁତଟର ଦ୍ରାବିଡ଼ଙ୍କ ମଧ୍ୟରେ ସମନ୍ୱୟ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲା । କଳିଙ୍ଗ ଶବ୍ଦକୁ କେନ୍ଦ୍ର କରି କେତେକ ସ୍ଥାନର ନାମ ଏପର୍ଯ୍ୟନ୍ତ ଓଡ଼ିଶା ଓ ଆନ୍ଧ୍ରପ୍ରଦେଶରେ ରହିଛି । ଫୁଲବାଣୀ ଜିଲ୍ଲାର 'କଳିଙ୍ଗାଘାଟୀ', ଗଞ୍ଜାମ ଜିଲ୍ଲାର 'କଳିଙ୍ଗନଗର', ଆନ୍ଧ୍ରପ୍ରଦେଶର 'କଳିଙ୍ଗପାଟଣା' ଏହାର କେତେକ ଉଦାହରଣ । ପୁରୀ ନିକଟରେ ରତ୍ନଝରା ନଦୀ କୂଳରେ 'କଳିଙ୍ଗେଶ୍ୱରୀ'ଙ୍କ ପ୍ରତିଷ୍ଠା ଅନ୍ୟ ଏକ ଉଦାହରଣ ।

କଳିଙ୍ଗ ଅଧିବାସୀମାନଙ୍କର ସ୍ୱାଭିମାନ ତତ୍କାଳୀନ ଭାରତୀୟ ସମାଜରେ ଉଚ୍ଚ ସ୍ଥାନ ଗ୍ରହଣ କରିଥିଲା । ଏ ଦେଶର ଇତିହାସ କାହିଁକି, ବିଦେଶୀ ଇତିହାସକାର ତଥା ପରିବ୍ରାଜକମାନେ ସ୍ୱୀୟ ରଚନାବଳୀରେ କଳିଙ୍ଗର ଭୂୟସୀ ପ୍ରଶଂସା କରିଛନ୍ତି । ମହାଭାରତର ରଚୟିତା ବର୍ଣ୍ଣନା କରିଛନ୍ତି ଯେ, ମାନୀ ଦୁର୍ଯ୍ୟୋଧନ କଳିଙ୍ଗର ସମ୍ରାଟ୍‌ଙ୍କୁ ଏକ ସହସ୍ର ଗଜାରୋହୀ ସହ ଯୁଦ୍ଧରେ ଯୋଗଦାନ କରିବାକୁ ନିମନ୍ତ୍ରଣ କରିଥିଲେ ଓ ତଦନୁସାରେ କଳିଙ୍ଗରାଜା ଏକସହସ୍ର ଗଜାରୋହୀ ଯୋଦ୍ଧାଙ୍କ ସହିତ ମହାଭାରତ ଯୁଦ୍ଧରେ ଯୋଗ ଦେଇଥିଲେ । ପୁରାଣ ପୃଷ୍ଠାରେ ଏହି ମର୍ଯ୍ୟାଦା କଳିଙ୍ଗର ଅଧିପତିଙ୍କୁ ପ୍ରଦାନ କରାଯାଇଛି । କଳିଙ୍ଗ ଜାତି ଯେ ଯୁଦ୍ଧନିପୁଣ ଓ ଶକ୍ତିଶାଳୀ ଥିଲେ, ତାହାର ପ୍ରମାଣ ଖ୍ରୀଷ୍ଟପୂର୍ବ ୨୬୧ରେ କଳିଙ୍ଗ ଯୁଦ୍ଧରେ ପ୍ରମାଣିତ ହୋଇସାରିଛି । କଳିଙ୍ଗର ଷାଠିଏ ହଜାର ସୈନ୍ୟଙ୍କୁ ପରାସ୍ତ କରିବାପାଇଁ ଚଣ୍ଡାଶୋକ– ଅଶୋକଙ୍କର ଦୁଇଲକ୍ଷ ପଚାଶ ହଜାର ସୈନିକଙ୍କୁ, ବହୁ କଷ୍ଟ ସ୍ୱୀକାର କରିବାକୁ ପଡିଥିଲା ଏବଂ ଯୁଦ୍ଧକ୍ଷେତ୍ରରେ ପରାଜୟକୁ ଏଡ଼ାଇବା ପାଇଁ କଳିଙ୍ଗ ଜନପଦରେ ନିରୀହ ଜନତାଙ୍କ ଉପରେ ଅତ୍ୟାଚାର କରିବାକୁ ପଡ଼ିଥିଲା । ଯୁଦ୍ଧରେ ହିଂସାକ୍ଷେତ୍ରରେ ପରାଜିତ ହୋଇଥିଲେ ମଧ୍ୟ ରାଜା ଅଶୋକଙ୍କୁ ଚଣ୍ଡାଶୋକରୁ ଧର୍ମାଶୋକରେ ରୂପାନ୍ତରିତ କରି ପୃଥିବୀ ଇତିହାସରେ କଳିଙ୍ଗ ଅକ୍ଷୟ ମର୍ଯ୍ୟାଦା ରକ୍ଷା କରିଥିଲା । ଧଉଳିଗିରିର ଅଶୋକଙ୍କ ଶିଳାଲେଖ ପ୍ରସ୍ତରଖଣ୍ଡ ଉର୍ଦ୍ଧ୍ୱରେ ବର୍ତ୍ତମାନ ସ୍ଥିତ ଅର୍ଦ୍ଧହସ୍ତୀର ପ୍ରତିମା ସମଗ୍ର ପୃଥିବୀର ବୌଦ୍ଧମାନଙ୍କର ପବିତ୍ର ଆରାଧନା ସ୍ଥଳୀ ରୂପେ ଗୃହୀତ ହୋଇ କଳିଙ୍ଗର ମର୍ଯ୍ୟାଦା ବର୍ଦ୍ଧନ କରୁଛି ।

ମହାମେଘବାହନ ଐର ଖାରବେଳ କଳିଙ୍ଗ ଇତିହାସର ଶ୍ରେଷ୍ଠ ନରପତି । ସେ ଥିଲେ ଆଦିବାସୀ ଅହରି (ଐର) ଶାଖା ତଥା ଚେଦିକୁଳର ମହାନ୍ ସମ୍ରାଟ୍ । ସେ ଜୈନଧର୍ମରେ ଦୀକ୍ଷିତ ହୋଇଥିଲେ । ଖାରବେଳଙ୍କ ରାଜତ୍ୱ କାଳ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ମଧ୍ୟପାଦରେ କଳିଙ୍ଗ ତା'ର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଥିଲା । ଅଶୋକଙ୍କ ଦ୍ୱାରା ଯୁଦ୍ଧର ପ୍ରଭାବରେ କଳିଙ୍ଗ ଯେଉଁ ସମ୍ମାନ ହରାଇଥିଲା, ତତ୍କାଳୀନ ମଗଧରାଜ ବୃହସ୍ପତି ମିତ୍ରଙ୍କୁ ପରାସ୍ତ କରି ଐର ଖାରବେଳ ତାହାର ପ୍ରତିପୂରଣ କରିଥିଲେ । ମଗଧରୁ ପ୍ରତ୍ୟାବର୍ତ୍ତନ ସମୟରେ ବିଜୟର ସ୍ମାରକୀ ସଦୃଶ ପୂର୍ବରୁ ମହାପଦ୍ମନନ୍ଦଙ୍କ ଦ୍ୱାରା ଅପହୃତ କଳିଙ୍ଗ ଜୀନାସନକୁ ସେ କଳିଙ୍ଗର ରାଜଧାନୀକୁ ଫେରାଇ ଆଣିଥିଲେ । କେବଳ ସେତିକି ନୁହେଁ, ମଥୁରା ପଥ ଦେଇ ନିଜର ଚତୁରଙ୍ଗ ସେନା ସହ ସେ ଗୋରଥଗିରି ରାଜାଙ୍କୁ ପରାସ୍ତ କରି ମଗଧର ତତ୍କାଳୀନ ରାଜଧାନୀ ରାଜଗୃହକୁ ଅବରୋଧ କରିଥିଲେ ଓ ଜୈନଧର୍ମର ପବିତ୍ର 'କଳ୍ପବୃକ୍ଷ'କୁ ଧରି କଳିଙ୍ଗକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ସଂସ୍କୃତ କବିଙ୍କ ରଚନା 'କଳିଙ୍ଗାଃ ସାହସିକାଃ' ଖାରବେଳଙ୍କ ରାଜତ୍ୱକାଳ ମଧ୍ୟରେ ସ୍ପଷ୍ଟ ପ୍ରମାଣିତ ହୋଇଥିଲା । ହୁଏତ ଐର ଖାରବେଳ ପ୍ରମାଣ କରିଦେବାକୁ ଚାହିଁଥିଲେ ଯେ ଆର୍ଯ୍ୟ ସଂସ୍କୃତି ବିଭିନ୍ନ କାରଣରୁ ପ୍ରଥମେ କଳିଙ୍ଗରେ ପ୍ରବର୍ତ୍ତନ ହୋଇପାରି ନଥିଲେ ମଧ୍ୟ ପରବର୍ତ୍ତୀ କାଳରେ ଆର୍ଯ୍ୟ ଓ ଦ୍ରାବିଡ଼ ଦୁଇ ସଂସ୍କୃତିର ସମନ୍ୱୟରେ କଳିଙ୍ଗ ସଭ୍ୟତା, ଆର୍ଯ୍ୟ ସଭ୍ୟତାଠାରୁ ଅଧିକ ଋଦ୍ଧିମନ୍ତ । ସମର, ଧର୍ମ, ଶିଳ୍ପକଳା, ଭାସ୍କର୍ଯ୍ୟ, ଲଳିତ କଳା ପ୍ରଭୃତି ସମସ୍ତ କ୍ଷେତ୍ରରେ ଐର ଖାରବେଳ କଳିଙ୍ଗର ମର୍ଯ୍ୟାଦା ରକ୍ଷା କରିଥିଲେ । ବିଶ୍ୱ ଜୈନଧର୍ମର ଅନ୍ୟତମ

ତୀର୍ଥ ଖଣ୍ଡଗିରି ଓ ଉଦୟଗିରିରେ ବିଶ୍ୱର ପ୍ରଥମ ଦ୍ୱିତଳବିଶିଷ୍ଟ ରାଣୀଗୁମ୍ଫା, ଗୁମ୍ଫା ପ୍ରସ୍ତର ଛତ୍ରେ ଛତ୍ରେ ଶିଳାକଳା ଓ ଶିଳାଲେଖ ଅଦ୍ୟାବଧି ଦଣ୍ଡାୟମାନ ରହି ସେହି ମର୍ଯ୍ୟାଦାର ଗୁଣଗାନ କରୁଛନ୍ତି ।

ବିଶ୍ୱ ଇତିହାସକୁ ପର୍ଯ୍ୟାଲୋଚନା କଲେ, ତହିଁରେ 'କଳିଙ୍ଗାଃ ସାହସିକାଃ'' ଖ୍ୟାତି ଅର୍ଜନ କରିବା ପାଇଁ ଯେଉଁ କେତେକ ବିଭାବକୁ ଗ୍ରହଣ କରାଯାଇଛି, ତହିଁରୁ ନିମ୍ନ ତିନୋଟିକୁ ଅଧିକ ଗୁରୁତ୍ୱ ଦିଆଯାଇଛି–

୧. ଅଶୋକଙ୍କ କଳିଙ୍ଗ ବିଜୟ ପରେ ଯୁବରାଣୀ 'କାରୁବାକୀ' ଯୁଦ୍ଧ କ୍ଷେତ୍ରରେ ବନ୍ଦିନୀ ହୋଇ ମଧ୍ୟ ଅଶୋକଙ୍କ ଅନ୍ତଃପୁରବାସିନୀ ହେବାପାଇଁ ପ୍ରତ୍ୟାଖ୍ୟାନ କରିବା ଓ ପରେ ଅଶୋକଙ୍କୁ ଅହିଂସା ଧର୍ମରେ ଦୀକ୍ଷିତ କରାଇବା ।

୨. ମହାମେଘବାହନ ଐର ଖାରବେଳଙ୍କ ଦ୍ୱାରା ସମଗ୍ର ଭାରତର ଅର୍ଦ୍ଧାଧିକ ଯୁଦ୍ଧ ବଳରେ ନିଜର ଶାସନାଧୀନ କରିବା ଓ ଶ୍ରେଷ୍ଠ ଚତୁରଙ୍ଗ ସେନା ପରିଚାଳନା କରିବା ।

୩. ଅବର୍ଣ୍ଣପୋତ ସାହାଯ୍ୟରେ ଜଳପଥରେ ଦୂରଦୂରାନ୍ତକୁ ପଣ୍ୟଦ୍ରବ୍ୟ ସହିତ ଯାତ୍ରା କରି ସମସ୍ତ ସାମୁଦ୍ରିକ ବାଧାବିଘ୍ନକୁ ପ୍ରତିହତ କରି ଜାଭା, ବାଲି, ସୁମାତ୍ରା ପ୍ରଭୃତି ଦ୍ୱୀପରେ ପହଞ୍ଚିବା ଓ ସେଠାରେ ବାଣିଜ୍ୟ ସହ ସଂସ୍କୃତିର ପ୍ରଚାର କରି ନିର୍ବିଘ୍ନରେ କଳିଙ୍ଗକୁ ଜଳପଥରେ ପ୍ରତ୍ୟାବର୍ତ୍ତନ କରିବା ।

ତେଣୁ କଳିଙ୍ଗବାସୀଙ୍କର ସାହସିକ ମର୍ଯ୍ୟାଦାଲାଭ ନିମିତ୍ତ ନୌବାଣିଜ୍ୟିକ ପରମ୍ପରାର ମୁଖ୍ୟ ଭୂମିକା ରହିଛି । ଭାରତର ପୂର୍ବ ଉପକୂଳରେ ଓ ଜଳପଥରେ କଳିଙ୍ଗ ନାବିକମାନଙ୍କର ପୋତ, ଏତେ ସଂଖ୍ୟାରେ ଯାତାୟାତ କରୁଥିଲା ଯେ, ଅଧୁନା ବଙ୍ଗୋପସାଗରର ପୂର୍ବ ନାମ କଳିଙ୍ଗ ସାଗର ଥିଲା । 'ଆର୍ଯ୍ୟମଞ୍ଜୁଶ୍ରୀ ମୂଳକଳ୍ପ' ପୁସ୍ତକରେ ଉଲ୍ଲେଖ ଅଛି– କଳିଙ୍ଗ ସାଗରର ସମସ୍ତ ଦ୍ୱୀପପୁଞ୍ଜକୁ 'କଳିଙ୍ଗ ଦ୍ରେଶୁ' ଭାବରେ ଚିହ୍ନିତ କରାଯାଇଥିଲା । ବିଶିଷ୍ଟ ଗବେଷକ ଜି.ଇ. ଜେରିନି, ଲଣ୍ଡନର ରୟାଲ୍ ଜିଓଗ୍ରାଫିକାଲ୍ ସୋସାଇଟି ଦ୍ୱାରା ପ୍ରକାଶିତ ଟଲେମିଙ୍କ ଭୌଗୋଳିକ ଗବେଷଣା ପୁସ୍ତକରେ ଲେଖିଛନ୍ତି ଯେ– 'କଳିଙ୍ଗର ପ୍ରତିଷ୍ଠା ଏବେ ମଧ୍ୟ ବିଭିନ୍ନ ଦ୍ୱୀପପୁଞ୍ଜରେ ଦେଖିବାକୁ ମିଳୁଛି । ଏବେ କ୍ଲିଙ୍ଗ ଜାତିର ଲୋକମାନେ ଏସୀୟ ଦ୍ୱୀପପୁଞ୍ଜରେ ରହିଛନ୍ତି ଓ ପେଗୁର ପୂର୍ବାଞ୍ଚଳକୁ ତ୍ରିକଳିଙ୍ଗ ଭାବରେ ନାମିତ କରାଯାଇଛି ।'

କଳିଙ୍ଗର ନାବିକ ଓ ବଣିକମାନେ କେବଳ ନୌବାଣିଜ୍ୟକ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରି ନଥିଲେ, ବରଂ ତାହାଠାରୁ ତାଙ୍କର ଅଧିକ ପ୍ରସିଦ୍ଧି ଥିଲା, ଜାହାଜ ନିର୍ମାଣକୌଶଳ ପ୍ରବର୍ତ୍ତନରେ । ଭୋଜରାଜ ଜାହାଜ ପ୍ରସ୍ତୁତ କରିବା ନିମୟାବଳୀ ଓ କୌଶଳ ଲିପିବଦ୍ଧ କରାଇ ଥିଲେ । ଏହା ସଂସ୍କୃତ ଭାଷାରେ ରଚିତ ହୋଇ 'ଯୁକ୍ତି କଳ୍ପତରୁ' ନାମରେ ପ୍ରକାଶିତ ହୋଇଥିଲା । ଏଥିରେ ଜାହାଜ ଗଠନର ସମସ୍ତ ବିଭାଗ ଆମୂଳଚୂଳ ବର୍ଣ୍ଣିତ ହୋଇଛି । ଜାହାଜ ନିର୍ମାଣ ନିମିତ୍ତ କାଷ୍ଠ ନିର୍ବାଚନଠାରୁ ଆରମ୍ଭ କରି ଜାହାଜର ଅଗ୍ରଭାଗର ଆକୃତି ବିଷୟ ପର୍ଯ୍ୟନ୍ତ ସମସ୍ତ କୌଶଳ ଭୋଜରାଜଙ୍କ ଦ୍ୱାରା ଲିଖିତ ।

ପରବର୍ତ୍ତୀ କାଳରେ ବିଶିଷ୍ଟ ପରିବ୍ରାଜକ ଫାହିୟାନ ତାମ୍ରଲିପ୍ତି ବନ୍ଦରର ପ୍ରସିଦ୍ଧି ସମ୍ପର୍କରେ ବିବରଣୀ ପ୍ରଦାନ କରିଛନ୍ତି । ବିଭିନ୍ନ ଗ୍ରନ୍ଥରୁ ଜଣାଯାଏ ଯେ କଳିଙ୍ଗରେ କୋଣାଗାର, କଟିକର୍ଦ୍ଦମ, ପାଲୁର, ଅଫେଟେରିଅନ୍, ତାମ୍ରଲିପ୍ତ ପ୍ରଭୃତି ବନ୍ଦରର ଅବସ୍ଥିତି ଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ସୁବର୍ଣ୍ଣରେଖା, ମନ୍ନଦ, ନରେଖା, ସାରଗୋ, ଛତ୍ରୁୟ, ବାଲେଶ୍ୱର, ଲୋଇଚନପୁର, ଚୁଡ଼ାମନ, ଧାମରା ପ୍ରଭୃତି ଓଡ଼ିଶା ଉପକୂଳରେ ପ୍ରଧାନ ବନ୍ଦର ହୋଇଥିଲା । ଇଂରେଜ ରାଜତ୍ୱ ସମୟରେ ହରିହରପୁର, ହରିଶପୁର, ବାଲେଶ୍ୱର, ଧାମରା, ହୁକିଟୋଲା, ଚାନ୍ଦବାଲି, ପୁରୀ, ଚିଲିକା ପ୍ରଭୃତି ବନ୍ଦରର ଗୁରୁତ୍ୱ ଥିଲା । ମାତ୍ର କଳିଙ୍ଗ ରାଷ୍ଟ୍ରର ମନ୍ନଦ, ତାମ୍ରଲିପ୍ତି, କଟିକର୍ଦ୍ଦମ ବା ପାଲୁର ପରି ତାହାର ଏତେ ପ୍ରାଧାନ୍ୟ ନଥିଲା ।

ସ୍ୱାଧୀନୋତ୍ତର ଭାରତବର୍ଷରେ କଳିଙ୍ଗର ନବରୂପାନ୍ତର ଓଡ଼ିଶାରେ ପୂର୍ବ ଭଳି ଅନେକ ବନ୍ଦର ନାହିଁ ।

ବର୍ତ୍ତମାନ ଓଡ଼ିଶାର ଉପକୂଳର ବନ୍ଦର କହିଲେ ପ୍ରଥମେ ପାରାଦ୍ୱୀପ, ଦ୍ୱିତୀୟତଃ ଗୋପାଳପୁରକୁ ଓ ତୃତୀୟତଃ ଧାମରାକୁ ଗ୍ରହଣ କରାଯାଏ । ଅନ୍ୟ ସମସ୍ତ କ୍ଷୁଦ୍ର ବନ୍ଦରର ଅନ୍ତର୍ଜାତୀୟ ଓ ଜାତୀୟ ନୌବାଣିଜ୍ୟିକ କ୍ଷେତ୍ରରେ ପରିଚିତି ନାହିଁ । ବର୍ତ୍ତମାନ ନବକଳିଙ୍ଗ ବା ଓଡ଼ିଶାର ମର୍ଯ୍ୟାଦା କହିଲେ ଯେଉଁ କେତେକ ସ୍ୱତ୍ତ୍ୱବିଭବକୁ ଚିହ୍ନଟ କରାଯାଇପାରିବ, ତନ୍ମଧ୍ୟରୁ ଜଗତସିଂହପୁର ଜିଲ୍ଲା ପାରାଦ୍ୱୀପ ବନ୍ଦର ଅଗ୍ରଗଣ୍ୟ ହେବ ।

ସ୍ୱାଧୀନତା ପରେ ଭାରତର ପୂର୍ବ ଉପକୂଳରେ ଚିଟାଗଙ୍ଗ ବନ୍ଦରକୁ ହରାଇବାକୁ ହେଲା । ଏହି ବନ୍ଦରର କ୍ଷତିକୁ ଭରଣା କରିବା ପାଇଁ ଭାରତ ସରକାର ୧୯୪୮ ମସିହାରେ ବନ୍ଦର ବୈଷୟିକ କମିଟି ଗଠନ କରିଥିଲେ । ଏହି କମିଟି ବିଶାଖାପାଟଣା ଓ କଲିକତା ମଧ୍ୟରେ ଏକ ବନ୍ଦର ନିର୍ମାଣ ପାଇଁ ପ୍ରସ୍ତାବ ଦେଇଥିଲେ । ୧୯୫୦ ମସିହାରେ କେନ୍ଦ୍ରୀୟ ଜଳ ଓ ଶକ୍ତି କମିଶନ ମହାନଦୀ ମୁହାଣରେ ଏକ ବନ୍ଦର ପ୍ରତିଷ୍ଠା ପାଇଁ ଅନୁମୋଦନ କରିଥିଲେ ଓ ପୁନଶ୍ଚ ୧୯୪୫ ମସିହାରେ ମହାନଦୀ ମୁହାଣ ବା ମହାନଦୀ ମୁହାଣର ନିକଟରେ ଏକ ବନ୍ଦର ପ୍ରତିଷ୍ଠା ପାଇଁ ଦୃଢ଼ ପ୍ରସ୍ତାବ ଦେଇଥିଲେ । ୧୯୫୬ ମସିହାରେ ଭାରତ ସରକାରଙ୍କ ବନ୍ଦର– ବିଶେଷଜ୍ଞ ଶ୍ରୀ ଆଇ.ଜି.ଚାକୋ, ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାରେ ପାରାଦ୍ୱୀପରେ ଏକ କ୍ଷୁଦ୍ର ବନ୍ଦର ପ୍ରତିଷ୍ଠା କରି ପରବର୍ତ୍ତୀ କାଳରେ ବୃହତ୍ ବନ୍ଦର ପ୍ରତିଷ୍ଠା ନିମିତ୍ତ ଅନୁମୋଦନ କରିଥିଲେ । ପରେ ପରେ ସେହି ବର୍ଷ ଜାପାନର କିନୋସିତା କମ୍ପାନୀ ପାରାଦ୍ୱୀପ ଓ ନିକଟବର୍ତ୍ତୀ ଲୌହପ୍ରସ୍ତର ଖଣିଅଞ୍ଚଳ ପରିଦର୍ଶନ କରି ବନ୍ଦର ନିର୍ମାଣ ନିମିତ୍ତ ଦୃଢ଼ ମତପୋଷଣ କଲେ । ୧୯୫୮ ମସିହାରେ ଭାରତ ସରକାରଙ୍କ ମଧ୍ୟମାନର ବନ୍ଦର ବିକାଶ କମିଟି, ପାରାଦ୍ୱୀପକୁ ମଧ୍ୟମାନ ବନ୍ଦରରୂପେ ଘୋଷଣା କରିଥିଲେ । ସେତେବେଳେ ସମୁଦ୍ର ମଧ୍ୟରେ ଅପେକ୍ଷାରତ ଜାହାଜରେ ଚଉମୁହାଣିରୁ ମଟରଲଞ୍ଚ ଦ୍ୱାରା ଟଣା ହୋଇଯାଉଥିବା ବାର୍ଜରୁ ଲୁହାପଥର ରପ୍ତାନି ହୋଇଥିଲା ।

୧୯୬୨ ମସିହାରେ ଓଡ଼ିଶା ସରକାର ବ୍ରିଟେନ୍‌ର 'ରଣ୍ଡେଲ, ପାଲ୍‌ମର ଏବଂ ଟ୍ରିଟେନ୍' କମ୍ପାନୀକୁ ପାରାଦ୍ୱୀପଠାରେ ଏକ ଗଭୀର ବନ୍ଦର ନିର୍ମାଣର ରୂପରେଖ ପ୍ରସ୍ତୁତି ନିମିତ୍ତ ନିଯୁକ୍ତ କରିଥିଲେ । ସେମାନେ ୧୯୬୨ ମସିହାରେ ସମସ୍ତ ଭୌଗୋଳିକ ଓ ସାମୁଦ୍ରିକ ତଥ୍ୟ ପ୍ରଦାନ କରିବା ପରେ, ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଓଡ଼ିଶା ସରକାର ୧୯୬୨ ମସିହା ନଭେମ୍ବର ୧୯ ତାରିଖରେ ବନ୍ଦର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ । ପୂର୍ବରୁ ସେହି ବର୍ଷ ଜାନୁଆରୀ ୩ ତାରିଖରେ ପାରଦ୍ୱୀପର ଘଞ୍ଚ ବନାନୀ ମଧ୍ୟରେ ପ୍ରାତଃକାଳରେ ଅପୂର୍ବ ଶଙ୍ଖ, ହୁଳହୁଳି ଓ ହରିବୋଲ ଧ୍ୱନି ମଧ୍ୟରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ପାରାଦ୍ୱୀପ ବନ୍ଦରର ଶିଳାନ୍ୟାସ କରି ଏହାକୁ ଦେଶ ଓ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ । ଓଡ଼ିଶା ସରକାରଙ୍କ ଦ୍ୱାରା ବନ୍ଦର ନିର୍ମାଣ କାର୍ଯ୍ୟ ଆଗେଇ ଚାଲିବା ପରେ ୧୯୬୫ ମସିହା ଜୁନ୍ ୧ ତାରିଖରେ ଭାରତ ସରକାର ପାରାଦ୍ୱୀପ ବନ୍ଦରର ପ୍ରଶାସନିକ ଦାୟିତ୍ୱ ଗ୍ରହଣ କରିଥିଲେ । ୧୯୬୬ ମସିହା ଅପ୍ରେଲ ମାସ ୧୮ ତାରିଖ ଦିନ ପାରାଦ୍ୱୀପ ବନ୍ଦରକୁ ଏକ ବୃହତ୍ ବନ୍ଦର ଭାବରେ ସ୍ୱୀକୃତି ଦିଆଯାଇ ଟ୍ରଷ୍ଟବୋର୍ଡ ନିୟନ୍ତ୍ରଣରେ ରଖାଗଲା । ବର୍ତ୍ତମାନ ପାରାଦ୍ୱୀପ ବନ୍ଦର ଭାରତର ୧୨ଟି ବୃହତ୍ ବନ୍ଦର ମଧ୍ୟରୁ ଗୋଟିଏ ଓ ଭାରତୀୟ ବୃହତ୍ ବନ୍ଦର ଅଧିନିୟମ ୧୯୬୩ର ପରିସରଭୁକ୍ତ । ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କର କ୍ରମାଗତ ପ୍ରୟାସ ଫଳରେ ପାରାଦ୍ୱୀପ ବନ୍ଦର ନିର୍ମିତ ହୋଇଥିବାରୁ ତାଙ୍କୁ ପାରାଦ୍ୱୀପ ବନ୍ଦରର ଜନକ ରୂପେ ଗ୍ରହଣ କରାଯାଇଛି । ବୃହତ୍ ବନ୍ଦର ଭାବେ ବିଶ୍ୱର ବୃହତ୍ ବନ୍ଦର ତାଲିକାରେ ସ୍ଥାନିତ ହେବା ପରଠାରୁ ପାରାଦ୍ୱୀପ ବନ୍ଦର ପ୍ରଗତି ପଥରେ ଅଗ୍ରସର କରି ଚାଲିଛି । ବର୍ତ୍ତମାନ ସୁଦ୍ଧା ପାରାଦ୍ୱୀପ ବନ୍ଦରର ଷୋହଳ ଗୋଟି ବର୍ଥ ରହିଛି । ଏହି ୧୬ଟି ବର୍ଥ ମଧ୍ୟରୁ ଗୋଟିଏ ଯାନ୍ତ୍ରିକ ଲୁହାପଥର ବୋଝେଇ ବର୍ଥ, ଦୁଇଟି ଯାନ୍ତ୍ରିକ କୋଇଲା ବୋଝେଇ ବର୍ଥ, ଗୋଟିଏ ତେଲ ବର୍ଥ, ପାରାଦ୍ୱୀପ ଫସଫେଟ୍ ଓ ଇଫ୍‌କୋଙ୍କ ରାସାୟନିକ ସାର ଶିଳ୍ପ ନିମିତ୍ତ

ଦୁଇଟି ବର୍ଥ, ଆଠଟି ସାଧାରଣ ପଣ୍ୟବର୍ଥ ଓ ଗୋଟିଏ ରୋ-ରୋ ବର୍ଥ ରହିଛି । ଏହା ବ୍ୟତୀତ ମହାନଦୀର ମୁହାଣ ନିକଟରେ ମାଛଧରା ବନ୍ଦର ନିର୍ମିତ ହୋଇଛି ।

୨୦୦୧ ମସିହାରୁ ୨୦୧୯ ମସିହା ପର୍ଯ୍ୟନ୍ତ ପାରାଦ୍ୱୀପ ବନ୍ଦରରେ କାରବାର ହୋଇଥିବା ପଣ୍ୟଦ୍ରବ୍ୟ ବିଷୟରେ ବିଶ୍ଳେଷଣ କଲେ ଜଣାଯାଏ ଯେ, ୨୦୦୦-୨୦୦୧ ଆର୍ଥିକ ବର୍ଷରେ ୧୯.୦୯ ନିୟୁତ ଟନ୍ ପଣ୍ୟଦ୍ରବ୍ୟ କାରବାର ହୋଇଥିଲାବେଳେ, ୨୦୧୮-୧୯ ଆର୍ଥିକ ବର୍ଷରେ ତାହା ୧୦୯.୨୭ ନିୟୁତ ଟନ୍‌କୁ ବୃଦ୍ଧି ପାଇଥିଲା । ଫଳରେ ପାରାଦ୍ୱୀପ ବନ୍ଦର ଭାରତର ସମସ୍ତ ବୃହତ୍ ବନ୍ଦର ମଧ୍ୟରେ ପଣ୍ୟଦ୍ରବ୍ୟ କାରବାର କ୍ଷେତ୍ରରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲା । ପ୍ରଥମ ସ୍ଥାନ ଦୀନଦୟାଲ (କାଣ୍ଡଲା) ବନ୍ଦର ଅଧିକାର କରି ୧୧୫.୪୦ ନିୟୁତ ଟନ୍ ପଣ୍ୟଦ୍ରବ୍ୟ କାରବାର କରିଥିଲା । ତନ୍ମଧ୍ୟରୁ ଅଧିକାଂଶ ପେଟ୍ରୋଲିୟମ୍ ଜାତ ପଣ୍ୟଦ୍ରବ୍ୟ, ଖଣିଜତୈଳ କାରବାରକୁ ବାଦ୍ ଦେଲେ, ସାଧାରଣ ପଣ୍ୟଦ୍ରବ୍ୟ କାରବାର କ୍ଷେତ୍ରରେ, ପାରାଦ୍ୱୀପ ବନ୍ଦର ଭାରତରେ ପ୍ରଥମ ସ୍ଥାନ ଅଧିକାର କରିଆସୁଛି ।

ବର୍ତ୍ତମାନ ପାରାଦ୍ୱୀପରେ ଭାରତୀୟ ତୈଳ ନିଗମ ଦ୍ୱାରା ସମୁଦ୍ର ମଧ୍ୟରେ ଭାସମାନ ଜାହାଜ ଆଶ୍ରୟକେନ୍ଦ୍ର ନିର୍ମାଣ କରାଯାଇ ପାଇପ ଲାଇନ୍ ଯୋଗେ ବଡ଼ବଡ଼ ଜାହାଜରୁ ବାର୍ଷିକ ପ୍ରାୟ ୩୮ ନିୟୁତ ତୈଳ ଆମଦାନି କରାଯାଇପାରିଛି । ବନ୍ଦରର ଗଭୀରତାକୁ ପୂର୍ବ ୧୩ ମିଟରରୁ ବର୍ତ୍ତମାନ ୧୮ ମିଟରକୁ ବୃଦ୍ଧି କରାଯାଇଛି । ବନ୍ଦରର ଗଭୀରତା ୧୮ ମିଟରକୁ ବୃଦ୍ଧି ପାଇବାରୁ ଏକଲକ୍ଷ ପଚାଶ ହଜାର ମେଟ୍ରିକ୍ ଟନ୍ ପରିବହନ କରୁଥିବା ଜାହାଜଗୁଡ଼ିକ ପାରାଦ୍ୱୀପ ବନ୍ଦର ମଧ୍ୟକୁ ଅନାୟାସାରେ ଯାତାୟାତ କରିପାରୁଛନ୍ତି ।

ବନ୍ଦରର ଥିବା ବର୍ଥ ସଂଖ୍ୟାକୁ ବଢ଼ାଇ ଅଧିକ ଜାହାଜ ଚଳାଚଳ ଓ ପଣ୍ୟଦ୍ରବ୍ୟ କାରବାର ନିମିତ୍ତ ଦକ୍ଷିଣ ଡକ୍ କମ୍ପ୍ଲେକ୍ସର ଯୋଜନା କରାଯାଇଛି । ଏହି ଡକ୍ କମ୍ପ୍ଲେକ୍ସରେ ଦୁଇଟି ତୈଳ ବର୍ଥ ଓ ଅନ୍ୟ ଦୁଇଟି କଣ୍ଟେନର୍ ବର୍ଥ ନିର୍ମିତ ହେବ । ଏ ସମସ୍ତ ଯୋଜନା କାର୍ଯ୍ୟକାରୀ ହେଲେ ପାରାଦ୍ୱୀପ ବନ୍ଦରର ବାର୍ଷିକ ପଣ୍ୟଦ୍ରବ୍ୟ କାରବାର ଦକ୍ଷତା ୨୦୩୦-୨୦୩୧ ଆର୍ଥିକ ବର୍ଷ ବେଳକୁ ୧୫୦ ନିୟୁତ ଟନ୍‌ରେ ପହଞ୍ଚିଥିବ, ଯାହାକି ବର୍ତ୍ତମାନର ପଣ୍ୟଦ୍ରବ୍ୟ କାରବାର କ୍ଷମତାଠାରୁ ବହୁ ଅଧିକ । ଏ ସମସ୍ତ ତଥ୍ୟକୁ ଆଧାର କରି ଆଲୋଚନା କଲେ ଜଣାଯାଏ ଯେ ପାରାଦ୍ୱୀପ ବନ୍ଦରହିଁ, ଓଡ଼ିଶାର ପୂର୍ବ ନୌବାଣିଜ୍ୟିକ ପ୍ରତିଷ୍ଠାକୁ ଆଧୁନିକ ଯୁଗରେ ପୁନରୁଦ୍ଧାର କରିଛି ।

ପାରାଦ୍ୱୀପ ବନ୍ଦରର ବିକାଶକୁ ପର୍ଯ୍ୟାଲୋଚନା କଲେ, ଆଧୁନିକ ଯୁଗରେ କୌଣସି ସମାଲୋଚକ ବା ଐତିହାସିକ କହିବାକୁ ସାହସ କରିବେ ନାହିଁ ଯେ ଓଡ଼ିଶାରୁ ସାଧବ ସଂସ୍କୃତିରୂପକ କର୍ପୂର ଉଡିଯାଇଛି ଓ କେବଳ ଲୋକ ଦେଖାଣିଆ ବୋଇତବନ୍ଦାଣ ଉତ୍ସବ ପାଳନରୂପକ କନା ପଡି ରହିଛି ବରଂ ପାରାଦ୍ୱୀପ ବନ୍ଦର ବିଶ୍ୱ ନୌବାଣିଜ୍ୟିକ ମାନଚିତ୍ରରେ କେବଳ ଓଡ଼ିଶାର ନୁହେଁ, ସମଗ୍ର ଭାରତର ସମୃଦ୍ଧ ନୌବାଣିଜ୍ୟିକ ପ୍ରତିଷ୍ଠାକୁ ଋଦ୍ଧିମନ୍ତ କରିଛି ।

'ଆତିଥ୍ୟ', ଏମ୍.ଆଇ.ଜି-୧-୨୨୭
ସତ୍ୟସାଇ ଏନ୍‌କ୍ଲେଭ, ଲେନ୍-୨୨
କୋଳଥିଆ, ଖଣ୍ଡଗିରି, ଭୁବନେଶ୍ୱର-୭୫୧୦୩୦



# ଏକାମ୍ର କ୍ଷେତ୍ରର ଇତିବୃତ୍ତି

**ମଧୁସୂଦନ ପଟ୍ଟନାୟକ**

ଶ୍ରୀଜଗନ୍ନାଥ ମନ୍ଦିର ସମଗ୍ର ଭାରତରେ ପ୍ରତ୍ନତତ୍ତ୍ୱ ଦୃଷ୍ଟିରୁ ଯେପରି ଏକ ଉପସିତ ଅଧିଷ୍ଠାନ ଓ ଏହା ଯେପରି ଧର୍ମକ୍ଷେତ୍ରରେ ହିନ୍ଦୁମାନଙ୍କ ପ୍ରଧାନ ପୀଠ, ସେହିପରି ଏକାମ୍ର କ୍ଷେତ୍ର ପ୍ରତ୍ନତତ୍ତ୍ୱ ଦୃଷ୍ଟିରୁ ଓ ଏହାର ଶିଳ୍ପ ଭାସ୍କର୍ଯ୍ୟ ଏବଂ କମନୀୟ କାରୁକାର୍ଯ୍ୟ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିଥିବା ସମଗ୍ର ଓଡ଼ିଶା ତଥା ପୂର୍ବଭାରତ ଏବଂ ଆନ୍ତର୍ଜାତିକ ସ୍ତରରେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ତୀର୍ଥସୌଧ ଅଟେ । ଓଡ଼ିଶାର ବହୁ ସ୍ଥଳ ପର୍ଯ୍ୟଟକମାନଙ୍କର ଅଦୃଷ୍ଟ ହୋଇ ରହିଯାଇଛି । ବର୍ତ୍ତମାନ ସରକାର ସେହି ସ୍ଥାନ ସମୂହ ଲୋକ ଲୋଚନକୁ ଆଣିବାକୁ ପ୍ରୟାସ ଜାରି ରଖିଛନ୍ତି । ଓଡ଼ିଶାର କାରୁକାର୍ଯ୍ୟ ଖଚିତ କୋଣାର୍କ, ଚିଲିକା ଓ ଅଂଶୁପା ହ୍ରଦ, ବିରଜାକ୍ଷେତ୍ର, କପିଳାସ କ୍ଷେତ୍ର, ବିନ୍ଦୁସାଗର, ଏକାମ୍ରକ୍ଷେତ୍ର, ଲିଙ୍ଗରାଜ ମନ୍ଦିର, ସାତକୋଶିଆ ଗଣ୍ଡ ଆଦି ବହୁ କ୍ଷେତ୍ର ପର୍ଯ୍ୟଟକ ମନରେ ଅପାର ଆନନ୍ଦ ପ୍ରଦାନ କରିଥାଏ । ଏମାନଙ୍କ ମଧ୍ୟରୁ ଏକାମ୍ର କ୍ଷେତ୍ର ଏକତମ ।

ଏକାମ୍ର କ୍ଷେତ୍ରର ଚତୁର୍ଦ୍ଦିଗ ଏକ କୋଶ ପରିମିତ ଅଞ୍ଚଳଟି କୋଟି ସଂଖ୍ୟକ ଲିଙ୍ଗଦ୍ୱାରା ପରିବୃତ୍ତ । ସେଠାରେ ପାର୍ବତୀପତି ନିଜ ଗଣମାନଙ୍କ ସହିତ ରହିଅଛନ୍ତି । ସେ ମନୁଷ୍ୟମାନଙ୍କ ମୁକ୍ତିଦାନକାରୀ ଓ ସାଧକମାନଙ୍କର ସିଦ୍ଧଦାନକାରୀ ।

ତ୍ରେତାଯୁଗରେ ମହାଦେବ ମହେଶ୍ୱର ବାରଣାସୀଠାରେ ଅବସ୍ଥାନ କରିଥିବା ସମୟରେ ଏହା ଜନାକୀର୍ଣ୍ଣ ହୋଇଥିବାରୁ ଏହା ତପସ୍ୟାର ବିଘ୍ନକାରକ ହୁଅନ୍ତେ ସେଠାରେ ବାସକରିବା ଅନୁପଯୁକ୍ତ ହେଲା । ଅଜ୍ଞ ଓ ନାସ୍ତିକମାନେ ଏଠାରେ ନାନା ଉପଦ୍ରବ ଆରମ୍ଭ କଲେ । ନାସ୍ତିକମାନଙ୍କର ପ୍ରଭାବ ବୃଦ୍ଧି ପାଇଲା । ଏପରି ସ୍ଥାନରେ ଦେବଗଣଙ୍କର ପୁଣ୍ୟ ଲୋପ ପାଇଯାଏ । ମହେଶ୍ୱର ପୂର୍ବକାଳରେ ପାର୍ବତୀଙ୍କ ପାଇଁ ଏହି କ୍ଷେତ୍ରଟି ଯତ୍ନ ସହକାରେ ନିର୍ମାଣ କରାଇଥିଲେ । ଯେଉଁ ସ୍ଥାନଟି ଗିରିଜାଙ୍କୁ ଭଲଲାଗେ ତାହା ମୋର ପ୍ରିୟତମ ସ୍ଥାନ ଅଟେ । ତେଣୁ ମହେଶ୍ୱର ନାରଦଙ୍କଠାରୁ ଅନ୍ୟ କେଉଁଠି ରହସ୍ୟମୟ ଓ ପରମ ଗୋପନୀୟ ସ୍ଥାନ ଅଛି ଜାଣିବାକୁ ପୁଚ୍ଛା କଲେ ।

ନାରଦଙ୍କଠାରୁ ଜାଣିଲେ ଯେ ଲବଣ ସମୁଦ୍ରତୀରରେ ନୀଳପର୍ବତ ନାମରେ ଏକ ପ୍ରସିଦ୍ଧ ପର୍ବତ ଅଛି, ତାହାର ଉତ୍ତର ଦିଗରେ ଏକାମ୍ର କ୍ଷେତ୍ର ମନୋରମ ତଥା ପ୍ରଖ୍ୟାତ । ସେଠାରେ ବାସୁଦେବ ନାମରେ ଲକ୍ଷ୍ମୀକାନ୍ତ ବିଷ୍ଣୁ, ଅନନ୍ତଙ୍କ ସହିତ ନିର୍ଜନ ବନରେ ରହିଛନ୍ତି । ଏହା ସ୍ଥାନଟି ପରମ ଗୋପନୀୟ ଏବଂ ଏ ବିଷୟରେ ବ୍ରହ୍ମା ମଧ୍ୟ ଜାଣନ୍ତି ନାହିଁ । ଏହି ଏକାମ୍ରକାନନ ଚକ୍ରଧାରୀ ଜଗନ୍ନାଥଙ୍କର ପରମ ଗୋପନୀୟ । ତାହାଙ୍କ କୋଳରେ ଥିବା ସାଗରକନ୍ୟା ଲକ୍ଷ୍ମୀ ମଧ୍ୟ ଜାଣନ୍ତି ନାହିଁ । ବିଷ୍ଣୁ ସେଠାରେ ସାକ୍ଷାତ୍ ମୂର୍ତ୍ତିମାନ ହୋଇ ଅନନ୍ତଙ୍କ ସହିତ ବାସ କରନ୍ତି । ଅନନ୍ତ କାଳ ତପସ୍ୟା କରିବ ପରେ ବାସୁଦେବ ପ୍ରସନ୍ନ ହେବାରୁ ମୁଁ ଏହି କ୍ଷେତ୍ର ବିଷୟରେ ଜାଣି ପାରିଛି । ସେଠାରେ ମୋ ସହିତ ଶେଷଦେବ ଓ ଜଗନ୍ନାଥ ବିରାଜ ଅଛନ୍ତି । ଏହି ତିନି ଦେବଙ୍କ ବ୍ୟତୀତ ଇନ୍ଦ୍ର ପ୍ରଭୃତି ଅନ୍ୟାନ୍ୟ ଦେବତାମାନଙ୍କର ଅବସ୍ଥିତ ସେଠାରେ ନାହିଁ ।

ଚ଼ଣ୍ଡୀପତି ଶିବ ଦେବର୍ଷିଙ୍କ ହସ୍ତଧରି ଏକାମ୍ରକାନନକୁ ଯିବାକୁ ମନସ୍ଥ କଲେ । ସେ ଶିବଗଣଙ୍କ ଅଧକ୍ଷ ନନ୍ଦିକେଶ୍ୱରଙ୍କୁ ଡକାଇ କହିଲେ– ହେ ପୁତ୍ର ! ମୁଁ ଏକାମ୍ରକାନନକୁ ଯାତ୍ରା କରିବି । ତୁମେ ମୋର ବାହନ ଓ ଗିରିଜାଙ୍କୁ ସଙ୍ଗରେ ଧରି ସେଠାରେ ଉପସ୍ଥିତ ହୁଅ । ନନ୍ଦିକେଶ୍ୱର ଗିରିଜା ଓ ବୃଷଭଙ୍କ ସହିତ ଶିବଙ୍କଠାରେ ଉପସ୍ଥିତ ହେଲେ । କୋଟି ଚନ୍ଦ୍ରର ଆଭାସ ସମ୍ପନ୍ନ ଓ ଅର୍ଦ୍ଧଚନ୍ଦ୍ରଦ୍ୱାରା ବିଭୂଷିତ ମୁକୁଟ ତାଙ୍କ ମସ୍ତକରେ ପିନ୍ଧାଇ ଦେଲେ । ମହାଦେବଙ୍କ ଲଲାଟ ପଟରେ କର୍ପୂର ମିଶ୍ରିତ ସୁବାସିତ ଶୀତଳ ଚ଼ନ୍ଦନ ଓ ମଣ୍ଡଫଳକରେ କୁଙ୍କୁମ ଓ ମୃଗମଦ କସ୍ତୁରୀ ଲେପନ କଲେ । ନନ୍ଦିକେଶ୍ୱର ମହାଦେବଙ୍କ ଅଧର ଭାଗରେ ଶୁଦ୍ଧ ତାମ୍ବୁଳ, ହୃଦୟରେ ମଣିମୟ ହାର, ଗଳାରେ ଚନ୍ଦନ ଯୁକ୍ତ ପୁଷ୍ପମାଳା ପିନ୍ଧାଇଲେ । ତତ୍ପରେ ସେ ପଦ୍ମରାଗ ମଣିଯୁକ୍ତ ଦୁଇଗୋଟି କଙ୍କଣ ଶିବଙ୍କ ହସ୍ତରେ ପିନ୍ଧାଇ ଦେଲେ । ଏହିପରି ଭାବରେ ନନ୍ଦିକେଶ୍ୱର ଦେବଦେବଙ୍କୁ ସୁନ୍ଦର ଭାବରେ ସୁସଜ୍ଜିତ କରାଇଲେ । ଅଙ୍ଗୁଳିରେ ବିଦ୍ୟୁତ୍‌ପରି କାନ୍ତିଯୁକ୍ତ ମୁଦ୍ରିକା, କଟିଦେଶରେ ପଟ୍ଟବସ୍ତ୍ର, ଗଭାରେ କ୍ଷୁଦ୍ର ଘଣ୍ଟିକାଯୁକ୍ତ ମେଖଳା ଏବଂ ଦୁଇ ପାଦରେ ଇନ୍ଦ୍ରନୀଳମଣି ନିର୍ମିତ ନୂପୁର ପିନ୍ଧାଇ ଦେଲେ । ଏହିପରି ଭାବରେ ନନ୍ଦୀକେଶ୍ୱର ଦେବଦେବୀଙ୍କୁ ସୁନ୍ଦରଭାବେ ସୁସଜ୍ଜିତ କରାଇଲେ । ସୁନ୍ଦର କେଶଯୁକ୍ତ, ଜ୍ୟୋତିସଂପନ୍ନ ଶ୍ରୀ ଯୁକ୍ତ ତଥା କୋଟିଚ଼ନ୍ଦ୍ର ସଦୃଶ ଆଭାଯୁକ୍ତ ଦେବ ହର, କୋଳରେ ପାର୍ବତୀଙ୍କୁ ଧରି ବୃଷଭ ଉପରେ ଉପବେଶନ କଲେ । ଏହିପରି ଭାବରେ କରୁଥିବା ଶିବ ସିଦ୍ଧ, ଗନ୍ଧର୍ବ ଓ କିନ୍ନରମାନଙ୍କ ଦ୍ୱାରା ପରିବେସିତ ହୋଇ ଗମନ କଲେ । ଭୃକୁଟୀ ଏକ ରୌପ୍ୟ ଶ୍ୱେତଛତ୍ର ଧାରଣ କଲେ । ଅନୁଚ଼ରମାନେ ଜୟ ଧ୍ୱନି କରି ନୃତ୍ୟ କରି ତ୍ରିଶୂଳ, ଡମ୍ବରୁ ଧାରଣ କରି ମହାଦେବ ନାରଦଙ୍କ ସହିତ ଏକାମ୍ର ବନରେ ପ୍ରବେଶ କଲେ । ସନାତନ ବାସୁଦେବଙ୍କୁ ଦର୍ଶନ କଲେ ଓ ସ୍ତୁତି ଆରମ୍ଭ କଲେ– ହେ ତ୍ରୈଲୋକ୍ୟ ନାୟକ ! ତୁମେ ଦେବତାମାନଙ୍କର ବର ଦାତା ଅଟ, ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ତୁମ୍ଭଙ୍କୁ ପ୍ରଣାମ । ତୁମର ସହସ୍ର ସହସ୍ର ରମଣୀୟ ସ୍ଥାନ ମୁଁ କିପରି ଜାଣି ପାରିଲି ନାହିଁ । ହେ ବିଷ୍ଣୁ, ହେ କେଶବ, ମୁଁ ତୁମ୍ଭ ପାଖରେ ରହିବାକୁ ଆସିଅଛି, ମୋତେ ତୁମ୍ଭର କରୁଣା ପ୍ରଦାନ କର । ମହାଦେବ ଉତ୍ତରରେ କହିଲେ– ହେ ଶମ୍ଭୁ! ତୁମ୍ଭର ରହିବା ଲାଗି ମୁଁ ଏଠାରେ ସ୍ଥାନ ଦେବି । କିନ୍ତୁ ମୋ ଆଗରେ ସତ୍ୟ କର ଯେ ଆଉ ତୁମ୍ଭେ କାଶୀକୁ ଫେରି ଯିବ ନାହିଁ ।

ଶଙ୍କର କହିଲେ– ମୁଁ କାଶୀନଗରକୁ ଫେରିଯିବି ନାହିଁ କିପରି ? ସେଠାରେ ପତିତପାବନୀ ଗଙ୍ଗା ଓ ପୂଜାକାରିଣୀ ମଣିକର୍ଣ୍ଣିକା ଅଛନ୍ତି । ଶଙ୍କର କହିଲେ– ମୋ ସମ୍ମୁଖରେ ଉଭୟ ଅଛନ୍ତି, କିନ୍ତୁ ପାଷାଣ ଗୁଳ୍ମଲତା ପ୍ରଭୃତିରେ ଆଚ୍ଛାଦିତ ଅଛନ୍ତି । ଏହା ନାରଦ ମଧ ଜାଣନ୍ତି ନାହିଁ । ତୁମ୍ଭର ଶୁଭକାରିଣୀ ଜାହ୍ନବୀ ମୋ ପାଦାଶ୍ରୟରୁ ବାହାରି ରହିଛନ୍ତି, ମୋ ପୃଷ୍ଠଭାଗ ଆଗ୍ନେୟ କୋଣରେ ଗଙ୍ଗାଯମୁନା ନାମ ଧାରଣ କରି ରହିଛନ୍ତି । ଏଠାରେ ଅନ୍ୟ ତୀର୍ଥମାନ ଅତି ଗୁପ୍ତ ଭାବରେ ରହିଛନ୍ତି ।

ଶଙ୍କର କହିଲେ– ହେ ମଧୁସୂଦନ ! ମୁଁ ପ୍ରତିଜ୍ଞା କରି କହୁଛି ତୁମ୍ଭ ଆଦେଶ ଅନୁସାରେ ମୁଁ ଏଠାରେ ରହିବି । କାଶୀ ଓ ଅନ୍ୟାନ୍ୟ କ୍ଷେତ୍ର ଛାଡ଼ି ଏହି ଏକାମ୍ରବନରେ ହିଁ ବାସ କରିବି । ଭଗବାନ ଶମ୍ଭୁ ବାସୁଦେବଙ୍କ ଦକ୍ଷିଣ ଦିଗରେ ଲିଙ୍ଗରୂପ ଧାରଣ କରି ରହିଛନ୍ତି । ଏହାଙ୍କର ମୂଳଭାଗ ସ୍ଫଟିକ ସଦୃଶ, ମଧଭାଗ ମହାନୀଳ ଓ ଊର୍ଦ୍ଧ୍ୱଦେଶ ମାଣିକ ସଦୃଶ ରହିଛି । ଏହି ଲିଙ୍ଗରୂପୀ ଶିବ, ''ତ୍ରିଭୁବନେଶ୍ୱରୀ'' ନାମରେ ବିଖ୍ୟାତ ହୋଇଛନ୍ତି ।

ସେହି କାଳରୁ ମହେଶ୍ୱର ଏହି କ୍ଷେତ୍ରରାଜରେ କୋଟି କୋଟି ଲିଙ୍ଗଦ୍ୱାରା ଆବୃତ ହୋଇ ରହିଛନ୍ତି ଏବଂ ଶ୍ରୀମାନ୍ ବାସୁଦେବ ତାଙ୍କର ପାଳନକର୍ତ୍ତା ଅଟନ୍ତି । ଯେଉଁମାନେ ଏକାମ୍ରରେ ଲିଙ୍ଗରାଜଙ୍କୁ ଦର୍ଶନ କରନ୍ତି, ସେମାନେ ବ୍ରହ୍ମହତ୍ୟା ପାପରୁ ମୁକ୍ତ ହୁଅନ୍ତି । ଏହିପରି ଭାବରେ ସନାତନ ବାସୁଦେବଙ୍କୁ ପ୍ରଣାମ କରି କୋଟି ଲିଙ୍ଗଧାରୀ ପ୍ରଭୁ ଶମ୍ଭୁ ଏହି ଏକାମ୍ର କାନନରେ ହିଁ ଅବସ୍ଥାନ କରିଛନ୍ତି ।

କୈବଲ୍ୟ, ଦଣ୍ଡତୋଟା, ପୁରୀ

# ମହିଳାଙ୍କ ଭରସା ନବୀନ

ମାନସ ରଞ୍ଜନ ମଙ୍ଗରାଜ

ପରିଣତ ବୟସରେ ପହଞ୍ଚିଥିବା ପ୍ରମିଳା ବିଷୋୟୀଙ୍କ ନାଁ ଯେତେବେଳେ ଆସିକା ଲୋକସଭା ଆସନ ପାଇଁ ବିଜେଡି ପ୍ରାର୍ଥୀଭାବେ ଘୋଷଣା ହେଲା ସେତେବେଳେ ଅନେକେ ଏହାକୁ ବିଶ୍ୱାସ କରିପାରି ନଥିଲେ । କାରଣ ପ୍ରମିଳା ଥିଲେ ସମସ୍ତଙ୍କ ପାଇଁ ନୂଆ । ଦଳର ସଭାପତି ତଥା ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ପ୍ରମିଳାଙ୍କ ନାମ ଘୋଷଣା କରିବା ସହିତ ଓଡ଼ିଶା ରାଜନୀତିରେ ଏକ ନୂଆ ଅଧ୍ୟାୟ ଆରମ୍ଭ କରିଥିଲେ । ପ୍ରମିଳା କୌଣସି ରାଜନୈତିକ ବ୍ୟକ୍ତି ନଥିଲେ କି ତାଙ୍କର ସେମିତି କିଛି ପ୍ରତିପତ୍ତି ନଥିଲା । ନିଜ ଅଞ୍ଚଳ ପାଇଁ ସେ ବି ସେଭଳି ପରିଚିତ ମୁହଁ ନଥିଲେ । ତାଙ୍କର ଏକମାତ୍ର ଗୁଣ ଥିଲା ନିଃସ୍ୱାର୍ଥପର ଜନସେବା । ଜୀବନସାରା ମହିଳାଙ୍କ ବିକାଶରେ ନିଜକୁ ଉତ୍ସର୍ଗ କରିଥିଲେ । ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀ ଗଠନ କରି ଗାଁ ଗହଳର ଗରିବ ମହିଳାଙ୍କ ବିକାଶ ଲାଗି ସେ ଅଣ୍ଟା ଭିଡିଥିଲେ ।



ଗୁଣ ଚିହ୍ନେ ଗୁଣିଆ ନ୍ୟାୟରେ ପ୍ରମିଳାଙ୍କ ଗୁଣ ଚିହ୍ନିଥିଲେ ନବୀନ । କିଛି ଲୋକଙ୍କ ନୀରବ ବିରୋଧ ସତ୍ତ୍ୱେ ବି ପ୍ରମିଳାଙ୍କୁ ସେ ଦିଲ୍ଲୀ ଦରବାରକୁ ପଠାଇଲେ । ସମଗ୍ର ଦେଶକୁ ଦେଲେ ମହିଳା ସଶକ୍ତିକରଣର ବାର୍ତ୍ତା । ଅଖ୍ୟାତ ପଲ୍ଲୀରୁ ଯାଇ ସଂସଦରେ ପହଞ୍ଚିଥିବା ପ୍ରମିଳା ବିଖ୍ୟାତ ହେବା ସହିତ ସମସ୍ତଙ୍କ ଦୃଷ୍ଟି ବି ଆକର୍ଷଣ କଲେ । କେବଳ ପ୍ରମିଳା ବିଷୋୟୀ ନୁହନ୍ତି ଅନେକ ମହିଳାଙ୍କୁ ଘରକୋଣରୁ ଆଣି ଜନସେବା କ୍ଷେତ୍ରରେ ନିୟୋଜିତ କରିଛନ୍ତି ନବୀନ

ପଟ୍ଟନାୟକ । କାରଣ ନବୀନ ଜାଣିଛନ୍ତି ଯେପର୍ଯ୍ୟନ୍ତ ଓଡ଼ିଶାରେ ମହିଳାଙ୍କ ବିକାଶ ନ ଘଟିଛି ସେପର୍ଯ୍ୟନ୍ତ ରାଜ୍ୟ ଆଗେଇ ପାରିବ ନାହିଁ । ତେଣୁ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀ ଗଠନ କରିବା ସହିତ ସେମାନଙ୍କ ଆର୍ଥିକ ବିକାଶ ପାଇଁ ଯୋଜନା ପରେ ଯୋଜନା ହେଉଛି । ନବୀନଙ୍କ ସଫଳ ଦିଗ୍‌ଦର୍ଶନ ଓ ରାଜ୍ୟ ସରକାରଙ୍କ ପ୍ରଚେଷ୍ଟା ଯୋଗୁଁ ରାଜ୍ୟରେ ଆଜି ପ୍ରାୟ ୭୦ ଲକ୍ଷ ମହିଳାଙ୍କୁ ନେଇ ସ୍ୱୟଂ ସହାୟିକା ଗୋଷ୍ଠୀ ଗଠନ ହୋଇପାରିଛି । ଏହି ଗୋଷ୍ଠୀଗୁଡିକ କିଭଳି ସ୍ୱାବଲମ୍ବୀ ହେବେ ସେଥିପାଇଁ ସେମାନଙ୍କୁ ବିନା ସୁଧରେ ଋଣ ସହିତ ସମସ୍ତ ପ୍ରକାର ସହାୟତା ଯୋଗାଇ ଦିଆଯାଉଛି । ଏଥିଯୋଗୁଁ ଗାଁ ଗହଳରେ ଅନେକ ମହିଳା ଏବେ ଆତ୍ମନିର୍ଭରଶୀଳ । ଉଭୟ ଆର୍ଥିକ ଓ ସାମାଜିକ କ୍ଷେତ୍ରରେ ସେମାନେ ସ୍ୱାବଲମ୍ବୀ ।

ମହିଳା ସଶକ୍ତିକରଣ ପାଇଁ ନବୀନଙ୍କ ସବୁଠାରୁ ବଡ ପଦକ୍ଷେପ ହେଉଛି ପଞ୍ଚାୟତିରାଜ ନିର୍ବାଚନରେ ମହିଳାଙ୍କ ପାଇଁ ୫୦ ପ୍ରତିଶତ ସ୍ଥାନ ସଂରକ୍ଷଣ । ଏ କ୍ଷେତ୍ରରେ ପିତା ବିଜୁ ପଟ୍ଟନାୟକଙ୍କୁ ଟପି ଯାଇଛନ୍ତି ନବୀନ । ମହିଳାଙ୍କୁ ମୁଖ୍ୟସ୍ରୋତକୁ ଆଣିବା ପାଇଁ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିବାବେଳେ ପଞ୍ଚାୟତିରାଜ ବ୍ୟବସ୍ଥାରେ ସେମାନଙ୍କ ଲାଗି ଏକ ତୃତୀୟାଂଶ ସ୍ଥାନ ସଂରକ୍ଷଣ କରିଥିଲେ । ନବୀନ ପଟ୍ଟନାୟକଙ୍କ ସରକାର ଅମଳରେ ୫୦ ପ୍ରତିଶତ ସ୍ଥାନ ସଂରକ୍ଷଣ ଯୋଗୁଁ ଗାଁ ଗହଳର ଅନେକ ଶିକ୍ଷିତ ମହିଳା ଏବେ ରାଜନୀତିରେ ପାଦ ଥାପି ସଫଳ ହେଉଛନ୍ତି । ମହିଳାଙ୍କ ନେତୃତ୍ୱ ଯୋଗୁଁ ଦୁର୍ନୀତି ହ୍ରାସ ପାଇବା ସହିତ ପୁରୁଷ ପ୍ରଧାନ ସମାଜରେ ସେମାନେ ମୁଣ୍ଡଟେକି ଚାଲିବାକୁ ସକ୍ଷମ ହେଉଛନ୍ତି । ଏହାଛଡା ସଂସଦ ଓ ବିଧାନସଭାରେ ମହିଳାମାନଙ୍କ ନିମନ୍ତେ ଆସନ ସଂରକ୍ଷଣ ଲାଗି ନବୀନ ବି ଦାବି ଉଠାଇଛନ୍ତି ।

କେବଳ ମହିଳାଙ୍କୁ ରାଜନୀତିକୁ ଆଣିବା ନୁହେଁ, ରାଜ୍ୟର ବାଳିକାମାନଙ୍କ ବିକାଶ କ୍ଷେତ୍ରରେ ମଧ୍ୟ ନବୀନ ପଟ୍ଟନାୟକଙ୍କ ସରକାର ବ୍ୟାପକ ପଦକ୍ଷେପ ନେଇଛନ୍ତି । ବାଳିକା ସ୍ୱାସ୍ଥ୍ୟସେବାର ବିକାଶ ଲାଗି କାର୍ଯ୍ୟକାରୀ ହେଉଛି 'ଖୁସି' ଯୋଜନା । ବିଦ୍ୟାଳୟରେ ସେମାନଙ୍କ ସ୍ୱାସ୍ଥ୍ୟ ପରୀକ୍ଷା ସହିତ ସ୍ୱଳ୍ପ ମୂଲ୍ୟରେ ନାପକିନ୍ ଯୋଗାଣ ହେଉଛି । ବାଳିକାମାନଙ୍କୁ ବିଦ୍ୟାଳୟରେ ମାଗଣା ପୋଷାକ ସହିତ ନବମ ଶ୍ରେଣୀରେ ପଢୁଥିବା ପ୍ରତି ବାଳିକାଙ୍କୁ ସାଇକେଲ ଯୋଗାଣ ହେଉଛି । ସେହିଭଳି ପାଠପଢା କ୍ଷେତ୍ରରେ ବାଳିକାମାନଙ୍କୁ ଆଦୌ ଫି' ଦେବାକୁ ପଡୁନାହିଁ । ରାଜ୍ୟର ଅଧିକରୁ ଅଧିକ ବାଳିକା ଯେଭଳି ବିଦ୍ୟାଳୟକୁ ଆସି ଶିକ୍ଷା ଗ୍ରହଣ କରିବେ ତାହା ଉପରେ ରାଜ୍ୟ ସରକାର ଗୁରୁତ୍ୱାରୋପ କରୁଛନ୍ତି । କାରଣ ସରକାର ଭଲଭାବେ ଜାଣିଛନ୍ତି ଆଜିର ଝିଅଟି ଯେତେବେଳେ କାଲି ମା' ହେବ ସିଏ ନିଶ୍ଚିତ ଭାବେ ତା'ର ପିଲାଙ୍କୁ ଶିକ୍ଷିତ କରିବ । ସେଥିପାଇଁ କୁହାଯାଇଛି– ମା' ହେଲେ ପାଠୋଇ ଦେଶ ଯିବ ଆଗେଇ ।

ମହିଳାମାନେ ଯେଭଳି ଉତ୍ତମ ସ୍ୱାସ୍ଥ୍ୟସେବା ପାଇପାରିବେ ସେଥିପାଇଁ ରାଜ୍ୟ ସରକାର ବହୁବିଧ ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ଗର୍ଭବତୀଙ୍କ ଲାଗି କାର୍ଯ୍ୟକାରୀ ହେଉଛି ଜନନୀ ସୁରକ୍ଷା ଯୋଜନା । ଏହି ଯୋଜନାରେ ପ୍ରସୂତିମାନଙ୍କୁ ସରକାର ୫ ହଜାର ଟଙ୍କା କରି ଯୋଗାଇ ଦେଉଛନ୍ତି । କେବଳ ଅର୍ଥ ନୁହେଁ ଅଙ୍ଗନୱାଡି ଜରିଆରେ ସେମାନଙ୍କୁ ପୁଷ୍ଟିକର ଖାଦ୍ୟ ଯୋଗାଣ ସହିତ ପ୍ରସବକାଳୀନ ସମସ୍ତ ସ୍ୱାସ୍ଥ୍ୟସେବା ସମ୍ପୂର୍ଣ୍ଣ ମାଗଣାରେ ଯୋଗାଇ ଦିଆଯାଉଛି । ଏପରିକି ଘରୁ ଡାକ୍ତରଖାନାକୁ ନେବା ଆଣିବା ଖର୍ଚ୍ଚ ମଧ୍ୟ ସରକାର ତୁଲାଉଛନ୍ତି । ପ୍ରସୂତିମାନଙ୍କ ଲାଗି ସ୍ୱତନ୍ତ୍ର ଭାବେ ଚାଲିଛି ୧୦୨ ଆମ୍ବୁଲାନ୍ସ । ସେହିଭଳି ମହିଳାଙ୍କୁ ସୁରକ୍ଷା ଯୋଗାଇ

ଦେବା ପାଇଁ ରାଜ୍ୟରେ ରହିଛି ମହିଳା ଥାନା । ଏଠାରେ ସମସ୍ତ ପୋଲିସ କର୍ମଚାରୀ ହେଉଛନ୍ତି ମହିଳା, ଯାହାଫଳରେ ରାତି ଅଧରେ ବି ଜଣେ ମହିଳା ବିନା ଭୟରେ ଏଠାକୁ ନ୍ୟାୟ ପାଇଁ ଯାଇପାରୁଛି । ଏହାଛଡା ମହିଳା ବ୍ୟାଙ୍କ୍ ମଧ୍ୟ ରାଜ୍ୟ ସରକାର କାର୍ଯ୍ୟକାରୀ କରୁଛନ୍ତି । ଏଠାରେ ବି ସମସ୍ତ କର୍ମଚାରୀ ମହିଳା ହୋଇଥିବାରୁ ରାଜ୍ୟର ମହିଳାମାନେ ଅତି ସହଜରେ ସେଠାରେ ବ୍ୟାଙ୍କ୍ କାରବାର କରିପାରୁଛନ୍ତି ।

ମହିଳାଙ୍କ ସୁରକ୍ଷା ଓ ଆର୍ଥିକ ବିକାଶ ପାଇଁ ସରକାର ଆଉ ଗୋଟିଏ ବଡ ପଦକ୍ଷେପ ନେଇଛନ୍ତି । ତାହା ହେଲା ଖାଦ୍ୟ ସୁରକ୍ଷା ଯୋଜନାର ରାଶନ କାର୍ଡଟି ମହିଳାଙ୍କ ନାଁରେ ଜାରି ହେଉଛି । ଫଳରେ ପୁରୁଷମାନେ ଯେଭଳି ଖାଦ୍ୟ ସାମଗ୍ରୀକୁ ଲୁଚାଛପାରେ ବିକ୍ରି କରି ସେହି ଅର୍ଥରେ ମଦ ପିଇ ଦେଉଥିଲେ ତାହା ଆଉ ସହଜରେ ହେଉନାହିଁ । ଫଳରେ ଅନେକ ଗରିବଙ୍କ ପରିବାର ଉଜୁଡିଯିବାରୁ ରକ୍ଷା ପାଇଯାଇଛି । ସେହିଭଳି ଜମି ପଟ୍ଟାଠାରୁ ଆରମ୍ଭ କରି ବିଦ୍ୟାଳୟରେ ପିଲାଙ୍କ ସାର୍ଟିଫିକେଟରେ ମଧ୍ୟ ମା' ଓ ବାପାଙ୍କ ନାମ ରଖିବା ବାଧ୍ୟତାମୂଳକ ହୋଇଛି । ସମ୍ପତ୍ତି ଉପରେ ପୁରୁଷଙ୍କ ଭଳି ମହିଳାଙ୍କ ସମାନ ଅଧିକାର ବି ସରକାର ଦେଇଛନ୍ତି ।

ମହିଳାଙ୍କୁ ସୁରକ୍ଷା, ସେମାନଙ୍କ ଆର୍ଥିକ ବିକାଶ, ଅଧିକାର ପ୍ରଦାନ ଆଦି ସବୁକ୍ଷେତ୍ରରେ ନବୀନ ପଟ୍ଟନାୟକଙ୍କ ପଦକ୍ଷେପ ଯୋଗୁଁ ରାଜ୍ୟର ମହିଳାଙ୍କ ଭରସା ତାଙ୍କ ଉପରେ ବଢିବାରେ ଲାଗିଛି । ଏହାର ପ୍ରଭାବ ମଧ୍ୟ ପ୍ରତି ନିର୍ବାଚନରେ ଦେଖିବାକୁ ମିଳୁଛି । ରାଜ୍ୟର ଅଧିକାଂଶ ମହିଳା ଭୋଟ୍ ନବୀନଙ୍କ ନିକଟକୁ ଯାଉଛି । ବିଜେଡି ସପକ୍ଷରେ ଅନେକ ମହିଳା ବାହାରୁଛନ୍ତି । କାରଣ ସେମାନେ ଜାଣିଛନ୍ତି ବିଗତ ଦିନରେ ସରକାରମାନେ ସେମାନଙ୍କ ଲାଗି ଯେତେ ପଦକ୍ଷେପ ଗ୍ରହଣ କରିବେ ତାହାଠାରୁ ଢେର ଅଧିକ ନବୀନ କାର୍ଯ୍ୟକାରୀ କରିଛନ୍ତି । ନବୀନଙ୍କ ଉପରେ ରାଜ୍ୟର ମହିଳାଙ୍କ ଭରସା ଥିବାବେଳେ ମୁଖ୍ୟମନ୍ତ୍ରୀ ବି ସେମାନଙ୍କ ଲାଗି ନୂଆ ନୂଆ ଯୋଜନା ଘୋଷଣା କରୁଛନ୍ତି । ଧାନ କିଣା ହେଉ ବା ବିଦ୍ୟୁତ୍ ବିଲ୍ ସଂଗ୍ରହ ଦାୟିତ୍ୱ ସବୁକିଛି ମହିଳାଙ୍କ ହାତରେ କରିବାକୁ ସରକାର ନିଷ୍ପତ୍ତି ନେଇଛନ୍ତି । ସମଗ୍ର ଦେଶରେ ଏଭଳି ନିଆରା ପଦକ୍ଷେପ ଏବେ ମହିଳାଙ୍କ ଭରସାକୁ ଆହୁରି ବଢାଇବାରେ ଲାଗିଛି । ଆଗାମୀ ଦିନରେ ଯେ ଏହା ଆହୁରି ବୃଦ୍ଧି ପାଇବ, ଏଥିରେ କୌଣସି ଦ୍ୱିମତ ନାହିଁ ।

ଗଣମାଧ୍ୟମ ଉପଦେଷ୍ଟା, ଓଡ଼ିଶା ସରକାର



# କାର୍ତ୍ତିକ ମାହାତ୍ମ୍ୟ ଓ ଜଳନ୍ଧର ଉପାଖ୍ୟାନ

ପଣ୍ଡିତ ରାମକୃଷ୍ଣ ମିଶ୍ର

ଇନ୍ଦ୍ର ଶିବଙ୍କ ଦର୍ଶନରେ ଆସି କପିଳାସର ବନରେ ପୁଷ୍ପଭରା ବୃକ୍ଷଲତା, ନଦୀ ଓ ଝରଣାର ନୈସର୍ଗିକ ଶୋଭା ଦେଖି ଶିବଙ୍କ ଶୋଭା ଦେଖିବା ପାଇଁ ଗର୍ବକରି କପିଳାସ ସିଂହଦ୍ୱାରରେ ପହଞ୍ଚିଲେ । ଶିବ ଇନ୍ଦ୍ରଙ୍କ ଗର୍ବ ନାଶନ ପାଇଁ ବୃଦ୍ଧମାନବ ରୂପରେ ମଳିନ ବସ୍ତ୍ରରେ ମୁଖପୋତି ସେଠାରେ ବସିଥିଲେ । ଇନ୍ଦ୍ର ଶିବ କେଉଁଠାରେ ଏବଂ ତାଙ୍କର ପୁର କିପରି ସୁନ୍ଦର ବୋଲି ବୃଦ୍ଧଙ୍କୁ ପଚାରିଲେ । ବୃଦ୍ଧ କିଛି ନକହି ହସିବାରୁ ମୁଁ ଦେବରାଜ ଇନ୍ଦ୍ର ବୋଲି କହି ବାରମ୍ବାର ପଚାରି କିଛି ନକହିବାରୁ ବହୁ କଟୁ ଓ ଅପମାନ କଥା କହିଲେ । ଶେଷରେ ବଜ୍ର ପ୍ରହାର କରିବାରୁ ଶିବଙ୍କ କଣ୍ଠରେ ବାଜି ଭୀଷଣ ଶବ୍ଦ ଉତ୍ପନ୍ନ ହୋଇ ଭୂମିରେ ପଡ଼ିଲା ଓ ଅଗ୍ନିଜାତ ହେଲା । କଣ୍ଠ କଳା ପଡ଼ିଗଲା । ଶିବ ନିଜ ସ୍ୱରୂପରେ ଉଭାହେଲେ । ଇନ୍ଦ୍ର ଭୟ ପାଇ ବୃହସ୍ପତିଙ୍କ ପଛରେ ଲୁଚିଲେ ଓ ବୃହସ୍ପତି ଶିବଙ୍କୁ ସ୍ତୁତି କରି ଶାନ୍ତ କଲେ । ଶିବଙ୍କ ଆଜ୍ଞା ପାଇ ଦେବଗଣ ବାହୁଡ଼ିଲେ । ଇନ୍ଦ୍ରଙ୍କ ଜୀବନ ରକ୍ଷା କରିଥିବାରୁ ଶିବ ବୃହସ୍ପତିଙ୍କ ଏକନାମ ଜୀବ ରଖିଲେ ।

ଶିବାଗ୍ନି ଆକାଶ ଓ ଧରିତ୍ରୀକୁ ଦହନ କଲା । ଈଶ୍ୱର ସେ ଅଗ୍ନିକୁ ଦୁଇ ହାତରେ ଧରି ଗଙ୍ଗା-ସାଗର ସଙ୍ଗମ ସ୍ଥଳରେ ପକାଇଲେ । ସେ ଅଗ୍ନିରୁ ଏକ ବାଳକ ଜାତ ହୋଇ ଜୋର୍‌ରେ ଗର୍ଜନ କରିବାରୁ ତିନିପୁର କମ୍ପିଲା । ସାଗର ଜଳ ସ୍ତବ୍ଧ ହୋଇଗଲା । ସାଗର ରାଜା ବରୁଣ ବାଳକକୁ ଆଣି କୋଳ କଲେ ମଧ ବାଳକ ଜୋର୍‌ରେ ରଡ଼ି କଲା । ବ୍ରହ୍ମା ସେଠାରେ ଉପସ୍ଥିତ ହେଲେ । ବରୁଣ ମୋର



ପୁତ୍ରର କ୍ରୋଧ ଶାନ୍ତ କରନ୍ତୁ ଓ ବର ଦିଅନ୍ତୁ ବୋଲି ବ୍ରହ୍ମାଙ୍କୁ ପ୍ରାର୍ଥନା କଲେ । ବ୍ରହ୍ମା ପୁତ୍ରକୁ କ୍ରୋଧ ଶାନ୍ତ କର ଓ ଯୌବନ ପ୍ରାପ୍ତ ହୁଅ ବୋଲି ଆଜ୍ଞାଦେଲେ । ତୋତେ କେହି ପୃଥିବୀରେ ନ ଜିଣୁ ଓ ମହାରାଜା ହୁଅ ବୋଲି ଆଶୀର୍ବାଦ କଲେ । ଜଳରୁ ଜାତ ହେତୁ ତା'ର ନାମ ଜଳନ୍ଧର ରଖିଲେ । ବ୍ରହ୍ମା ଚରଣରେ ନମସ୍କାର କରି ଜଳନ୍ଧର ତୁମ୍ଭ ସମାନ ମୋର ଜଣେ ମନ୍ତ୍ରୀ ଦିଅନ୍ତୁ ବୋଲି ପ୍ରାର୍ଥନା କଲା । ବ୍ରହ୍ମା ଭୃଗୁ

ସୁତ ଶୁକ୍ରଙ୍କୁ ଚିନ୍ତା କଲେ ଓ ଶୁକ୍ର ଉପସ୍ଥିତ ହେବାରୁ ତାକୁ ଜଳନ୍ଧର ମନ୍ତ୍ରୀ ରୂପେ ରହିବାକୁ କହିଲେ । ଜଳନ୍ଧରକୁ ରାଜା କରିବାକୁ କହିଲେ ।

### (କାର୍ତ୍ତିକ ମାହାତ୍ମ୍ୟ)

ଦୈତ୍ୟରାଜ ଜଳନ୍ଧରଙ୍କ ପତ୍ନୀ ବୃନ୍ଦାବତୀ ମହାସତୀ ଥିଲେ । ଜଳନ୍ଧର ବ୍ରହ୍ମାଙ୍କଠାରୁ ବର ଲାଭ କରି ତ୍ରିପୁର ବିଜୟ କଲା ଓ ଦେବତାମାନଙ୍କୁ ଅନେକ କଷ୍ଟ ଦେଲା । ସେ ନାରଦଙ୍କଠାରୁ ମା' ଦୁର୍ଗାଦେବୀଙ୍କ ସୌନ୍ଦର୍ଯ୍ୟ ବିଷୟରେ ଶୁଣି ତାଙ୍କୁ ପ୍ରାପ୍ତି ଆଶା କରି ଶିବଙ୍କ ପାଖକୁ ଦୂତ ପ୍ରେରଣ କଲା । ଫଳରେ ଶିବଙ୍କ ସହିତ ଯୁଦ୍ଧ କରି ପରାସ୍ତ ହେଲା । ମାତ୍ର ବୃନ୍ଦାବତୀଙ୍କ ସତୀତ୍ୱ ଫଳରେ ତାହାର ମୃତ୍ୟୁ ହେଲା ନାହିଁ । ସାଗର ସୁତ ଜଳନ୍ଧର ନିଜର ଭଉଣୀ ଲକ୍ଷ୍ମୀ ଓ ନାରାୟଣଙ୍କୁ ନିଜ ଘରେ ରଖିବାରୁ ଦେବତାମାନେ ନାରାୟଣ ଦର୍ଶନ ପାଇ ପାରିଲେ ନାହିଁ ।

ଜଳନ୍ଧର ଯୁଦ୍ଧରେ ହାରି ଶିବଙ୍କ ଅନୁପସ୍ଥିତିରେ ଶିବରୂପ ଧାରଣ କରି ଦୁର୍ଗାଙ୍କୁ ଅପହରଣ କରିବାକୁ ଆସିଲା । କିନ୍ତୁ ମା'ଙ୍କ ରୂପ ଦର୍ଶନ କରି ତାଙ୍କ ତେଜରେ ସଂଜ୍ଞାହୀନ ହୋଇ ବୃଷଭ ଉପରୁ ପତିତ ହେଲା ଏବଂ ପଳାୟନ କଲା । ଜଳନ୍ଧରର ମୃତ୍ୟୁ ପାଇଁ ଦେବଗଣ ନାରାୟଣଙ୍କୁ ପ୍ରାର୍ଥନା କଲେ । ଜଳନ୍ଧର ପୂର୍ବରୁ ମାୟା ଶିବ ରୂପ ଧାରଣ କରିଥିବାରୁ ନାରାୟଣ ମାୟା ଜଳନ୍ଧର ରୂପ ଧାରଣ କରି ଜଳନ୍ଧରର ବଧ ପାଇଁ ବୃନ୍ଦାବତୀର ସତୀତ୍ୱ ହରଣ କଲେ । ଫଳରେ ଯୁଦ୍ଧରେ ଶିବଙ୍କ ଦ୍ୱାରା ଜଳନ୍ଧରର ମୃତ୍ୟୁ ହେଲା । ନାରାୟଣ ବୃନ୍ଦାବତୀଙ୍କୁ ଧରି ସ୍ୱରୂପ ପ୍ରକାଶ କରିବାରୁ ବୃନ୍ଦାବତୀ ତାଙ୍କର ସତୀତ୍ୱ ହରଣ ଜାଣି ନାରାୟଣଙ୍କୁ ଅଭିଶାପ ଦେଲେ ଓ ଅଗ୍ନିରେ ଝାସ ଦେଇ ପ୍ରାଣତ୍ୟାଗ କଲେ । ବୃନ୍ଦାବତୀଙ୍କ ସତୀତ୍ୱ ପ୍ରଭାବରେ ବିଷ୍ଣୁ ଅଚଳ ହୋଇଗଲେ ଏବଂ ଅସହ୍ୟ ଶାରୀରିକ ଓ ମାନସିକ ଯନ୍ତ୍ରଣା ଅନୁଭବ କଲେ । ଦେବଗଣଙ୍କ ସ୍ତୁତିରେ ଯୋଗମାୟା ବୃନ୍ଦାବତୀଙ୍କ ଆତ୍ମାକୁ ଉଦ୍ଧାର କଲେ । ବୃନ୍ଦାବତୀଙ୍କ ଆତ୍ମା ତ୍ରିଗୁଣ ରୂପ ଧାରଣ କଲା । ସତ୍ତ୍ୱଗୁଣ ଗୌରୀଙ୍କ (ଦୁର୍ଗାଙ୍କ) ଶରୀରରେ, ରଜଗୁଣ ଶାରଦାଙ୍କ (ସରସ୍ୱତୀଙ୍କ) ଅଙ୍ଗରେ ଓ ତମ ଗୁଣ ଲକ୍ଷ୍ମୀଙ୍କ ଶରୀରରେ ମିଳିତ ହେଲା । ବୃନ୍ଦାବତୀଙ୍କ ତ୍ରିଗୁଣରୁ ଯୋଗମାୟା ତ୍ରିବୀଜର ଉତ୍ପନ୍ନ କରି ବିଷ୍ଣୁଙ୍କ ପାଖରେ ବୁଣିଲେ । ଏଥିରୁ ତୁଳସୀ, ଅଁଳା ଓ ମାଳତୀ ନାମକ ତିନି ପବିତ୍ର ବୃକ୍ଷର ସୃଷ୍ଟି ହେଲା । ବିଷ୍ଣୁ ଏହାଙ୍କ ବାସନାରେ ସଂଜ୍ଞା ପ୍ରାପ୍ତ ହୋଇ ପ୍ରସନ୍ନ ହେଲେ । ନାରାୟଣଙ୍କଠାରୁ ବରପାଇ ପରଜନ୍ମରେ ତୁଳସୀ ବୃକ୍ଷହୋଇ ପୂଜା ପାଇଲେ ।

କେତେକ ଭକ୍ତ ପ୍ରଶ୍ନ କରନ୍ତି ଯେ, ବୃନ୍ଦାବତୀ ବିଧବା, ତାଙ୍କୁ ଶାଢୀ, ଶଙ୍ଖା କିପରି ଲାଗି ହେଉଛି । ଏହା ଏକ ଭ୍ରମ ଧାରଣା । ବୃନ୍ଦାବତୀ ବିଧବା ନୁହନ୍ତି । ଯୁଦ୍ଧରେ ଜଳନ୍ଧର ବଧ ହେବା ପୂର୍ବରୁ ବୃନ୍ଦାବତୀଙ୍କ ସତୀତ୍ୱ ହରଣ ହେବାରୁ ଜଳନ୍ଧର ବଧ ହେଲା । ଯୁଦ୍ଧରେ ଜଳନ୍ଧରର ବଧ ପୂର୍ବରୁ ବୃନ୍ଦାବତୀ ଅଗ୍ନିରେ ଝାସ ଦେଇ ପ୍ରାଣ ତ୍ୟାଗ କରିଥିଲେ । ତେଣୁ ବୃନ୍ଦାବତୀ ବିଧବା ନୁହନ୍ତି । ଏହା କାର୍ତ୍ତିକ ମାହାତ୍ମ୍ୟର ବିଷୟ ।

ଅନ୍ୟ ଆଖ୍ୟାୟିକାରେ ତୁଳସୀ ଏକ ଗୋପିକା ବିଶେଷ । ଏହାର ଜନ୍ମ ବିବରଣ ବ୍ରହ୍ମବୈବର୍ତ୍ତ ପୁରାଣରେ ଦେଖାଯାଏ । ଏ ଗୋଲକରେ କୃଷ୍ଣପ୍ରିୟା ରାଧିକାଙ୍କର ସହଚରୀ ଥିଲେ । ଶ୍ରୀମତୀ ରାଧିକା ଦେଖିଲେ ଯେ ତୁଳସୀ ଶ୍ରୀକୃଷ୍ଣଙ୍କ ସହିତ କ୍ରୀଡ଼ାରତ ହୋଇଛି । ତେଣୁ ତାକୁ ରାଧା ଅଭିଶାପ ଦେଲେ 'ତୁ ମନୁଷ୍ୟ ଜନ୍ମ ଲାଭ କର' । ତୁଳସୀ ଏଥିଲାଗୀ ଶ୍ରୀକୃଷ୍ଣଙ୍କ ଶରଣାପନ୍ନ ହେଲା । ଶ୍ରୀକୃଷ୍ଣ କହିଲେ– 'ତୁ ମାନବୀ ହେଲେ ମଧ୍ୟ ତପସ୍ୟା ବଳରେ ମୋର ଅଂଶ ପ୍ରାପ୍ତ ହେବୁ' । ରାଧିକାଙ୍କ ଶାପରେ ତୁଳସୀ ଧର୍ମଧ୍ୱଜ ରାଜାଙ୍କ ଔରସରେ ତଦୀୟ ପତ୍ନୀ ମାଧବୀଙ୍କ ଗର୍ଭରୁ ଜନ୍ମ ହେଲେ । ଏହି କନ୍ୟାର ରୂପ ଲାବଣ୍ୟ ଦେଖି ସମସ୍ତେ ଅନ୍ୟ ପଦାର୍ଥ ସହିତ ତାହାକୁ ତୁଳନା କରିବାକୁ ଅସମର୍ଥ ହେବାରୁ ଏହାର ନାମ ରଖାଯାଇଥିଲା ତୁଳସୀ । ତୁଳସୀ ବନରେ କଠୋର ତପସ୍ୟା କଲା । ତା'ର ତପସ୍ୟାରେ ପ୍ରୀତ ହୋଇ ବ୍ରହ୍ମା ତାକୁ ବର ଯାଚିଲେ । ତୁଳସୀ କୃଷ୍ଣଙ୍କୁ ସ୍ୱାମୀରୂପେ ଲାଭ କରିବା ପାଇଁ ପ୍ରାର୍ଥନା କଲା । ବ୍ରହ୍ମା କହିଲେ–'ଶ୍ରୀକୃଷ୍ଣଙ୍କ ଅଙ୍ଗସମ୍ଭୁତ ସୁଦାମା ଗୋପାଳ

ଗୋଲକରେ ବାସ କରିଛି । ସୁଦାମା ଶ୍ରୀରାଧାଙ୍କ ଶାପରେ ଏବେ ଶଙ୍ଖଚୂଡ଼ ହୋଇ ଜନ୍ମିଛି । ତୁ ବର୍ତ୍ତମାନ ତାକୁ ସ୍ୱାମୀରୂପେ ବରଣ କର । ପରେ ତୋତେ ଶ୍ରୀକୃଷ୍ଣ ପ୍ରାପ୍ତି ହେବ । ତୁ ଅତି ପବିତ୍ରଭାବରେ ତାଙ୍କ ଅଙ୍ଗ ସଙ୍ଗ ଲାଭ କରିବୁ ।' ବ୍ରହ୍ମା ଯିବା ପରେ ଶଙ୍ଖଚୂଡ଼ ସହିତ ତୁଳସୀର ପରିଣୟ ସଂପାଦିତ ହେଲା । କ୍ରମେ ଶଙ୍ଖଚୂଡ଼ର ଉତ୍ପାତରେ ଦେବାତାମାନେ ପ୍ରମାଦ ଗଣିଲେ । ଶଙ୍ଖଚୂଡ଼କୁ ବ୍ରହ୍ମାଙ୍କର ବର ଥିଲା ଯେ, ତା' ସ୍ତ୍ରୀର ସତୀତ୍ୱ ନଷ୍ଟ ନ ହେଲେ ସେ ମରିବ ନାହିଁ । ଦେବ ରକ୍ଷା ଉଦ୍ଦେଶ୍ୟରେ ନାରାୟଣ ଶଙ୍ଖଚୂଡ଼ ମୂର୍ତ୍ତିଧରି ତୁଳସୀର ସତୀତ୍ୱ ନଷ୍ଟ କଲେ । ଶିବଙ୍କ ଯୋଗେ ଦାନବରାଜ ଶଙ୍ଖଚୂଡ଼ ବଧ ହେଲା । ତା'ର ଅସ୍ଥିସବୁ ଲବଣ ସମୁଦ୍ରରେ ପଡ଼ିଲା । ସେହି ଅସ୍ଥିଗୁଡ଼ିକ ହେଲା ଶଙ୍ଖ । ଏବେ ଶଙ୍ଖ ଦେବାର୍ଚ୍ଚନା ଓ ଅନ୍ୟାନ୍ୟ ମାଙ୍ଗଳିକ କାର୍ଯ୍ୟରେ ବ୍ୟବହୃତ ହେଉଛି । ତୁଳସୀ ନିଜ ସତୀତ୍ୱ ନଷ୍ଟ ହୋଇଛି ଜାଣି ନାରାୟଣଙ୍କୁ ଶାପ ଦେଲା– 'ତୁମେ ପାଷାଣ ହୋଇ ରୁହ' । ସ୍ୱାମୀର ମୃତ୍ୟୁ ସମ୍ବାଦ ଶ୍ରବଣ କରି ସତୀ ତୁଳସୀ ନାରାୟଣଙ୍କ ପାଦପଦ୍ମ ତଳେ ପତିତ ହେଲା । ନାରାୟଣ କହିଲେ–'ତୋର ଶରୀର ଗଣ୍ଡକୀ ନଦୀ ହେଉ । ତୋର କେଶଗୁଡ଼ିକ ତୁଳସୀ ବୃକ୍ଷରୂପେ ଜନ୍ମୁ । ତୁ ଲକ୍ଷ୍ମୀଭଳି ମୋର ପ୍ରିୟା ହେବୁ ।'

**(ବ୍ରହ୍ମବୈବର୍ତ୍ତ ପ୍ରକୃତିଖଣ୍ଡ)**

ପଦ୍ମପୁରାଣ ମତରେ – ଜଳଧର ବା ଜଳନ୍ଧର ନାମକ ଅସୁରର ପତ୍ନୀ ଥିଲେ ବୃନ୍ଦା । ଏ କାଳନେମୀ ଅସୁରର ଝିଅ । ଜଳନ୍ଧର ଇନ୍ଦ୍ରଙ୍କୁ ପରାସ୍ତ କରି ସ୍ୱର୍ଗରେ ରାଜା ହେବାକୁ ଇଚ୍ଛା କରିବାରୁ ଇନ୍ଦ୍ର ଶିବଙ୍କ ଶରଣାପନ୍ନ ହେଲେ । ପୁଣି ଜଳନ୍ଧର ପାର୍ବତୀଙ୍କୁ ଲାଭ କରିବା ପାଇଁ ଶିବଙ୍କ ପାଖକୁ ଦୂତ ପଠାଇବାରୁ ଶିବ କ୍ରୋଧରେ ତାହା ସହିତ ଯୁଦ୍ଧ କଲେ । ମାତ୍ର ପତିପରାୟଣା ବୃନ୍ଦାଙ୍କ ଯୋଗୁଁ ଜଳନ୍ଧରର କିଛି କ୍ଷତି ହେଲା ନାହିଁ । ବିଷ୍ଣୁ ଜଳନ୍ଧର ରୂପରେ ବୃନ୍ଦାଙ୍କ ସତୀତ୍ୱ ନଷ୍ଟ କରିବା ଯୋଗେ ଜଳନ୍ଧରର ମୃତ୍ୟୁ ହେଲା । ବୃନ୍ଦା ବିଷ୍ଣୁଙ୍କର ଏହି କୁକାର୍ଯ୍ୟ ଜାଣିପାରି ତାଙ୍କୁ ଅଭିଶାପ ଦେବାକୁ ଉଦ୍ୟତ ହେଲେ । ବିଷ୍ଣୁ କହିଲେ – ତୁମେ ସ୍ୱାମୀ ସହ ସହମୃତା ହୁଅ । ତୁମ୍ଭ ଚିତାଭସ୍ମରୁ ତୁଳସୀ, ଧାତ୍ରୀ, ପଳାଶ ଓ ଅଶ୍ୱତ୍ଥ ବୃକ୍ଷ ହୋଇ ଯୁଗେ ଯୁଗେ ପୂଜା ପାଉଥାଉ ।

ସମାଜରେ ହିନ୍ଦୁ ବିଧବା ନାରୀମାନଙ୍କ ପାଇଁ କାର୍ତ୍ତିକ ବ୍ରତର ବାଧ୍ୟତା ରହିଛି । ବ୍ରତ ପାଳନର ପ୍ରଥମ ଦିନ ସଂକଳ୍ପ କରାଯାଏ । ଏଥିରେ ବ୍ରତ ପାଳନ ସମୟରେ ପ୍ରତ୍ୟହ ପ୍ରାତଃ ସ୍ନାନ, ଅର୍ଘ୍ୟଦାନ, ଶ୍ରୀନାରାୟଣ ନାମ ଜପ, ଅଷ୍ଟ ଦଶାକ୍ଷର ଗୋପାଳ ମନ୍ତ୍ରଜପ, ରାଧାଦାମୋଦର ପୂଜା, ଚଉରାମୂଳେ ବା ତୀର୍ଥରେ ଦାମୋଦରାଷ୍ଟକ ପଠନ ଓ ଶ୍ରବଣ, ସନ୍ଧ୍ୟା ସମୟେ ଆକାଶଦୀପ ଦାନ ଓ ନିଶି ଜାଗରଣ ଆଦି ପାଇଁ ସଂକଳ୍ପ କରାଯାଏ ।

କାର୍ତ୍ତିକ ବ୍ରତ ପାଳନର ଦୁଇଟି ଧାରା ରହିଛି । କେତେକ କାର୍ତ୍ତିକ ବ୍ରତୀମାନେ ଆଶ୍ୱିନ ଶୁକ୍ଳ ପକ୍ଷ ଏକାଦଶୀଠାରୁ କାର୍ତ୍ତିକ ରାସ ପୂର୍ଣ୍ଣମୀ ପର୍ଯ୍ୟନ୍ତ ଏକମାସ ପାଞ୍ଚଦିନ ଏହି ବ୍ରତ କରିଥାନ୍ତି । ଅନ୍ୟ କେତେକ କାର୍ତ୍ତିକ କୃଷ୍ଣପକ୍ଷ ପ୍ରତିପଦଠାରୁ ରାସ ପୂର୍ଣ୍ଣମୀ ପର୍ଯ୍ୟନ୍ତ ଏକ ମାସ ଏହି ବ୍ରତ କରିଥାନ୍ତି । ପୁରାଣ ଅନୁସାରେ ବ୍ରତ ଓ ରାଧାଦାମୋଦର ପୂଜା ଏକମାସ କରିବା ବିଧେୟ । ବିଶେଷତଃ ଗ୍ରାମ ଅଞ୍ଚଳର ବ୍ରତୀମାନେ ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ ବ୍ରତ ପାଳନ କରି କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଏକମାସ ରାଧାଦାମୋଦର ପୂଜା କରିଥାନ୍ତି । କିନ୍ତୁ କାର୍ତ୍ତିକ କୃଷ୍ଣ ପ୍ରତିପଦଠାରୁ ବ୍ରତ ପାଳନ କରୁଥିବା ବ୍ରତୀମାନଙ୍କର ରାଧାଦାମୋଦର ପୂଜା ସମ୍ପୂର୍ଣ୍ଣ ଏକ ମାସ ହୋଇନଥାଏ । କାରଣ କାର୍ତ୍ତିକ ଶୁକ୍ଳ ଏକାଦଶୀଠାରୁ ରାସ ପୂର୍ଣ୍ଣମୀ ପର୍ଯ୍ୟନ୍ତ ପଞ୍ଚକ ପାଞ୍ଚଦିନ ରାଧାଦାମୋଦର ପୂଜା ଓ ବେଶ ହୋଇନଥାଏ । ଏହି ସମୟରେ ଭକ୍ତଙ୍କ ଦର୍ଶନ ପାଇଁ ମହାପ୍ରଭୁ ତ୍ରିକଚ୍ଛ ପରିଧାନ କରି ରାଧାଦାମୋଦର ବେଶ ହୋଇଥାନ୍ତି । ରାଧା ଦାମୋଦର ବେଶ ଥାଇ ଗୋପାଳବଲ୍ଲଭ ଓ ବାଳଭୋଗ ହୋଇଥାଏ । ପରମ୍ପରା ଅନୁଯାୟୀ ବଡ଼ଛତା ମଠ ରାସର ଅଙ୍ଗ ବାଦ୍ୟ ଓ ପାରମ୍ପରିକ ସଙ୍ଗୀତ ଆୟୋଜନ କରନ୍ତି । ରାଧାକାନ୍ତ ମଠ ରାସର ଅନ୍ୟ ଏକ ଅଙ୍ଗ ସଂକୀର୍ତ୍ତନ ଆୟୋଜନ କରନ୍ତି ।

କାର୍ତ୍ତିକ ଶୁକ୍ଳ ଦେବୋତ୍ଥାପନ ଏକାଦଶୀଠାରୁ ପଞ୍ଚକ ଆରମ୍ଭ ହୋଇଥାଏ । ଏହିଦିନ ମହାପ୍ରଭୁ ଚତୁଃମାସ୍ୟା

ଶୟନ ତ୍ୟାଗ କରିଥାନ୍ତି । ଏହାକୁ ଦେବୋତ୍ଥାପନ କୁହାଯାଏ । ଏ ବର୍ଷ ଭୀଷ୍ମପଞ୍ଚକ ପାଞ୍ଚଦିନ ପଡୁଥିବାରୁ ମହାପ୍ରଭୁଙ୍କର ପାଞ୍ଚୋଟି ଯାକ ବେଶ ଅନୁଷ୍ଠିତ ହେବ । କାର୍ତ୍ତିକ ଶୁକ୍ଳ ଏକାଦଶୀ ବା ଦେବୋତ୍ଥାପନ ଏକାଦଶୀ ତିଥିରେ ମହାପ୍ରଭୁଙ୍କର ଲକ୍ଷ୍ମୀନାରାୟଣ ବେଶ ଅନୁଷ୍ଠିତ ହେବ । ଦ୍ୱାଦଶୀ ତିଥିରେ ବାଙ୍କଚୂଡ଼ା ବେଶ, ତ୍ରୟୋଦଶୀ ତିଥିରେ ତ୍ରିବିକ୍ରମ ବା ଆଡ଼କିଆ ବେଶ, ଚତୁର୍ଦ୍ଦଶୀ ତିଥିରେ ଲକ୍ଷ୍ମୀ ନୃସିଂହ ବେଶ ଓ ରାସ ପୂର୍ଣ୍ଣମୀରେ ରାଜରାଜେଶ୍ୱର ବେଶ ବା ସୁନାବେଶ ଅନୁଷ୍ଠିତ ହେବ । ଶ୍ରୀ ଭୁଜରେ ସୁବର୍ଣ୍ଣ ନଳିଭୁଜ, ଶ୍ରୀପୟର, ସୁବର୍ଣ୍ଣ କୁଣ୍ଡଳ, କିରୀଟ, ହଳ ଓ ମୂଷଳ, ସ୍ୱର୍ଣ୍ଣଚକ୍ର, ରୌପ୍ୟଶଙ୍ଖ, ତଡ଼ଗୀ, ଚିତା, ଚନ୍ଦ୍ରସୂର୍ଯ୍ୟ ଓ ଓଡ଼ିଆଣୀ ଆଦି ତିନି ଠାକୁରଙ୍କର ଯେଉଁ ଯେଉଁ ପ୍ରକାରେ ଅଳଙ୍କାର ସହ ବାରଲାଗିପାଟ, ଫୁଟା, ପହରଣ ଓ ଶିର କପଡ଼ା ଆଦି ବସ୍ତ୍ରରେ ଓ ପୁଷ୍ପାଳଙ୍କାରରେ ମଣ୍ଡିତ ହୁଅନ୍ତି ।

ମାସାନାଂ କାର୍ତ୍ତିକ ଶ୍ରେଷ୍ଠୋ ଦେବାନାଂ ମଧୁସୂଦନମ୍ ।
ତୀର୍ଥଂ ନାରାୟଣାଖ୍ୟଂ ହି ତ୍ରିତୟଂ ଦୁଲର୍ଭଂ କଲୌଂ ॥
(ସ୍କନ୍ଦ ପୁରାଣ)

ଏହି ମାସରେ ବିଷ୍ଣୁ ଦାମୋଦର ନାମରେ ରାଧାଙ୍କ ସହ ପୂଜିତ ହୁଅନ୍ତି । କାର୍ତ୍ତିକ ମାହାତ୍ମ୍ୟ ରଚୟିତା ମହାଦେବ ଦାସ ଗ୍ରନ୍ଥ ଆଦ୍ୟରେ ଦାମୋଦରଙ୍କୁ ପ୍ରଣାମ କରି ଗ୍ରନ୍ଥ ଆରମ୍ଭ କରିଛନ୍ତି ।

ନମଇ ପ୍ରଭୁ ଦାମୋଦର । ଯା’ ନାମ ଶରଣ ସୋଦର
ଅଶେଷ ବ୍ରହ୍ମାଣ୍ଡର ନାଥ । ଯା’ର ଚରିତ ପୁଣ୍ୟ ପଥ ।
(କାର୍ତ୍ତିକ ମାହାତ୍ମ୍ୟ ପୋଥି – ପ୍ରଥମ ଅଧ୍ୟାୟ)

କାର୍ତ୍ତିକ ମାସରେ କନିଅର ପୁଷ୍ପରେ ବିଷ୍ଣୁଙ୍କୁ ପୂଜା କରିବ ବୋଲି ପୁସ୍ତକରେ ଉଲ୍ଲେଖ ଥିଲେ ମଧ୍ୟ ପୋଥିରେ କନିଅର ପୁଷ୍ପରେ ପୂଜା କରାଯିବ ନାହିଁ ବୋଲି ଉଲ୍ଲେଖ ରହିଛି । କିନ୍ତୁ ପୋଥି ଆମର ପୁରାତନ ସଂସ୍କୃତି ହେତୁ ବିଶେଷ ରୂପେ ଗ୍ରହଣୀୟ ।

ବାର ମାସ ମଧ୍ୟରେ କାର୍ତ୍ତିକ ମାସ ସାର
କାର୍ତ୍ତିକ ସ୍ନାନରେ ମିଳେ ବଇକୁଣ୍ଠ ପୁର ।

କାର୍ତ୍ତିକ ମାହାତ୍ମ୍ୟ ଚତୁର୍ଥ ଅଧ୍ୟାୟରେ ବିଷ୍ଣୁଙ୍କ ପ୍ରତି ବ୍ରହ୍ମାଙ୍କର ଏପରି ଉକ୍ତି ବର୍ଣ୍ଣିତ ହୋଇଛି –

କାର୍ତ୍ତିକ ମାସ ଆଗମନେ । ଜଣାଇ ବିଷ୍ଣୁ ସନ୍ନିଧାନେ ।
ବୋଲନ୍ତି ଏ କାର୍ତ୍ତିକ ମାସ । ତୁମ୍ଭେ କରିବ ଜଳେ ବାସ ।
ଯେବଣ ଜନ ପ୍ରାତଃ କାଳେ । ସ୍ନାନ କରିବ ଯାଇ ଜଳେ ।
ପାଇବେ ପରମ ମୁକତି । ଏ ଆଜ୍ଞା ଦିଅ ଲକ୍ଷ୍ମୀପତି ।
(କାର୍ତ୍ତିକ ପୁରାଣ – ୪ର୍ଥ ଅଧ୍ୟାୟ)
ତୁ ଦେବ ଦାମୋଦର ମୂର୍ତ୍ତି । କାର୍ତ୍ତିକ ମାସେ ଜଳେ ସ୍ଥିତି ।
(କାର୍ତ୍ତିକ ପୁରାଣ – ୪ର୍ଥ ଅଧ୍ୟାୟ)

ଏ.ଏଲ୍.– ୫୩
ବୀର ସୁରେନ୍ଦ୍ର ସାଏ ନଗର
ଭୁବନେଶ୍ୱର



# ଐଶ୍ୱର୍ଯ୍ୟମୟୀ ଉତ୍କଳ ନୌବାଣିଜ୍ୟର ମୂକସାକ୍ଷୀ କେନ୍ଦ୍ରାପଡ଼ା

ଡକ୍ଟର ସର୍ବେଶ୍ୱର ସେଣ

ସମୟ କଡ଼ ଲେଉଟାଏ । ନୂଆ ପୁରୁଣା ହୁଏ, ପୁଣି ନୂଆ ମୁଣ୍ଡ ଟେକେ । ସବୁ ସେଇ ସମୟ, କାଳ ମହାକାଳ । ଆପଣା ଝୋଲିରେ ବାନ୍ଧିନିଏ ଅନେକ କିଛି । ତା'ପରେ ଘଟଣା ପାଲଟିଯାଏ ସ୍ମୃତି । ସୁନା ସ୍ମୃତିମାନେ ରୂପା ଶଗଡ଼ିରେ ଚାଲି ଯାଆନ୍ତି ଦୂରକୁ ବହୁ ଦୂରକୁ । ସେଇଥି ପାଇଁ କଥାରେ ଅଛି – 'କାଳର ବଶ ଏ ଜଗତ'। ରାଜା, ରଙ୍କ, ଧନୀ ମାନୀ, ଗୁଣୀ, ନର, କିନ୍ନର, ଏପରିକି ମାନବ ଦେହଧାରୀ ଦେବତାମାନେ ସମସ୍ତେ କାଳର ଅଧୀନ । ଠିକ୍ ସେମିତି ଅତୀତ ଉତ୍କଳର ଗରିମାମୟ ନୌବାଣିଜ୍ୟ । ନଥିଲା ଯନ୍ତ୍ର ଜାହାଜ । ଥିଲା ଅଖାଲ ଟଣା ବୋଇତ । କାର୍ତ୍ତିକ ପୂର୍ଣ୍ଣିମା ବେଳକୁ ମୌସୁମୀ ଘରବାହୁଡ଼ା । ଅନୁକୂଳ ଜଳବାୟୁ । ଓଡ଼ିଶାର ସାଧବ ପୁଏ, ବୋଇତ ମେଲି ଦେଉଥିଲେ ନୀଳ ଦରିଆରେ । ଯାଉଥିଲେ ଜାଭା, ବାଲି, ବୋର୍ଣ୍ଣିଓ, ସିଙ୍ଗାପୁର, ସିଂହଳ ଏପରିକି ରୋମ୍ ପର୍ଯ୍ୟନ୍ତ । ତା'ର ସ୍ୱର୍ଦ୍ଧିତ ନୌବାଣିଜ୍ୟ, ଚହଳ ପକାଇଥିଲା ସାରା ବିଶ୍ୱରେ । ଆଜି ନାହାନ୍ତି ସେଇ ଦୁର୍ଦ୍ଧର୍ଷ ସାଧବପୁଅ, ନାହିଁ ତା' ପାଲଟଣା ବୋଇତ । ଫି'ସନ କାର୍ତ୍ତିକ ପୁନେଇଁ ଆସେ ଚହଟିଯାଏ ଅତୀତ ନୌବାଣିଜ୍ୟ ସ୍ମୃତି ଟିକକ । ନଈ, ନାଳ, କେନାଲ, ତୁବିଗାଡ଼ିଆ – ଭାସେ ଶହ ଶହ କାଗଜ ଡଙ୍ଗା । 'ଆ–କା–ମା–ବୈ' କହି ଓଡ଼ିଆଣୀ ଭସେଇ ଦିଏ ତା' ସ୍ମୃତି ଟିକକ । ସତରେ, କର୍ପୂର ଯାଇଛି, କନାବି । ରହିଛି କେବଳ ସ୍ମୃତିରୁ ଖିଏ ।

ପ୍ରାଚୀନ ଓଡ଼ିଶାର ଦରିଆପାରି ନୌବାଣିଜ୍ୟ, ଦରିଆପାରି ଉପନିବେଶ – ଏ ଦୁଇଟି ବିଷୟରେ ଇତିହାସ ପ୍ରଗଳ୍ଭ ନୁହେଁ । ଆନୁମାନିକ ଖ୍ରୀଷ୍ଟପୂର୍ବ ୩ ଶହ ବର୍ଷ ପୂର୍ବର ଉତ୍କଳ ନୌବାଣିଜ୍ୟ ମାତ୍ର ଏ ନେଇ ଇତିହାସରେ ଠୋସ୍ ପ୍ରମାଣ ନାହିଁ । ମନ୍ଦିର ଗାତ୍ର, ଶିଳାଲିପି, ପ୍ରାଚୀନ ମଧ୍ୟଯୁଗୀୟ ଅଭିଲେଖ, ପ୍ରାଚୀନ ସାହିତ୍ୟ, ଭ୍ରମଣ ବୃତ୍ତାନ୍ତ, ଚାଣକ୍ୟଙ୍କ ଅର୍ଥଶାସ୍ତ୍ର ଏଥିସହ ଓଡ଼ିଆ ସାହିତ୍ୟ, ଲୋକ ସାହିତ୍ୟ, ଓଷା କଥାରେ ଉତ୍କଳ ନୌବାଣିଜ୍ୟର ଚିତ୍ର ସ୍ଥାନିତ । ଏହା ଉପରେ ଆଧାରିତ ଉତ୍କଳ ନୌବାଣିଜ୍ୟ ସମ୍ପର୍କିତ ତଥ୍ୟ । ମହାକବି କାଳିଦାସ, ତାଙ୍କର ମହାକାବ୍ୟ ରଘୁବଂଶ । ଏଥିରେ କଳିଙ୍ଗ ସମ୍ରାଟ୍, 'ମହୋଦଧିପତି' ରୂପେ ଚିତ୍ରିତ । ମହାଯାନୀ ବୌଦ୍ଧମାନଙ୍କର ଧର୍ମଗ୍ରନ୍ଥ 'ଆର୍ଯ୍ୟ ମଞ୍ଜୁଶ୍ରୀ ମୂଳକଳ୍ପ' । ଏଥିରେ ଓଡ଼ିଶା ତଟବର୍ତ୍ତୀ ବଙ୍ଗୋପସାଗର 'କଳିଙ୍ଗସାଗର' ନାମେ ବର୍ଣ୍ଣିତ । ସେ ସମୟରେ ବୈଶ୍ୟ, ବଣିକମାନେ ସ୍ୱଚ୍ଛଳ ଥିଲେ । ଏହାର କାରଣ ରପ୍ତାନି ଭିତ୍ତିକ ନୌବାଣିଜ୍ୟ । କରମଣ୍ଡଳ, ମାଲବାର, କଙ୍କଣ ଉପକୂଳବର୍ତ୍ତୀ ବଙ୍ଗ, କଳିଙ୍ଗ, ଆନ୍ଧ୍ର, ତାମିଲନାଡୁ, କେରଳ, ମହାରାଷ୍ଟ୍ର, ଗୁଜୁରାଟ ଆଦିର ବୈଶ୍ୟକୁଳ, ଏମାନେ ନୌବାଣିଜ୍ୟରେ ନିପୁଣ ଥିଲେ । ହିନ୍ଦୁ ମହାପୁରାଣ ରାମାୟଣ, ମହାଭାରତ – ଏ ଦୁଇ ଗ୍ରନ୍ଥରେ ସମୁଦ୍ର ଯାତ୍ରା, ଅର୍ଣ୍ଣବ ପୋତର ଚିତ୍ର ପ୍ରଦାନ କରାଯାଇଛି । ଏଠାରେ ଗୋଟେ କଥା ସ୍ପଷ୍ଟ । ଭାରତବର୍ଷରେ ଦରିଆପାରି ନୌବାଣିଜ୍ୟର ପ୍ରସିଦ୍ଧି ଥିଲା । ମାତ୍ର ସମଗ୍ର କଳିଙ୍ଗ ଏ କ୍ଷେତ୍ରରେ ବହୁ ଆଗରେ – ଏହାକୁ ଅସ୍ୱୀକାର କରାଯାଇ ନପାରେ । ଅବିଭକ୍ତ କଟକ ଜିଲ୍ଲାର କେନ୍ଦ୍ରାପଡ଼ା । ଅତୀତ ଉତ୍କଳର ଦରିଆପାରି ବାଣିଜ୍ୟର ମୂକସାକ୍ଷୀ ଏଇ ଜିଲ୍ଲା । ଏ ଅଞ୍ଚଳ ଦିନେ ନୌବାଣିଜ୍ୟରେ

ଖ୍ୟାତି ଅର୍ଜନ କରିଥିଲା । ସେଦିନର କେନ୍ଦ୍ରାପଡ଼ା ସବ୍‌ଡିଭିଜନ୍, ଅଧୁନା ଜିଲ୍ଲା । କେନ୍ଦ୍ରାପଡ଼ା ବଙ୍ଗୋପସାଗରର ଉପକୂଳ ଅଞ୍ଚଳ । ଜିଲ୍ଲା ମଧ୍ୟ ଦେଇ ଛୋଟବଡ଼ ନଦୀ ପ୍ରବାହିତା । ଏମାନେ ପରସ୍ପର ସଂଯୋଜିତ । ବର୍ଷର ସବୁ ସମୟରେ ଅଳ୍ପବହୁତ ନଦୀମାନଙ୍କରେ ପାଣି । ସାମୁଦ୍ରିକ ଜୁଆର ଆସେ, ନଦୀକ୍ରମେ ସ୍ଫୀତ ହୁଏ । ଏ ନଦୀ ସବୁ ଏକ ପ୍ରକାର ସୁ–ନାବ୍ୟା । ଜିଲ୍ଲାର ବିଭିନ୍ନ ଅଞ୍ଚଳର ସାଧବମାନେ, ଏଇ ନଦୀମାନଙ୍କରେ ବୋଇତ ଚାଳନା କରୁଥିଲେ । ଧାମରା ମୁହାଣରୁ ଦକ୍ଷିଣରେ ମହାନଦୀ ମୁହାଣ – ଦୀର୍ଘ ୪୮ କି.ମି. ପରିବ୍ୟାପ୍ତ ଉପକୂଳବର୍ତ୍ତୀ ଜିଲ୍ଲା କେନ୍ଦ୍ରାପଡ଼ା । ବଙ୍ଗୋପସାଗର କୂଳରେ ଅନେକ ଛୋଟ ବଡ଼ ଦ୍ୱୀପ । ସ୍ଥାନୀୟ ଭାଷାରେ ଏସବୁ ଡିଆ, ଗଡ଼ା, ନାସୀ । ଯେମିତି ହୁଇଲ୍‌ରସ୍ ଆଇଲାଣ୍ଡ, ନଡ଼ିଆ ଚଡ଼ା, ତେନ୍ତୁଳିଆ ବାଲି, ମଇପୂରା ଅନ୍ତରୀପ, ଉଡ଼ାବାଲି, ମହାକୁଳଚଡ଼ା, ଧାନୀଗଡ଼ା, ବନୀଚଡ଼ା, ଚଳି ରାଧାନୀ, ନୂଆଡ଼ିଆ, ସାପୁଆଡ଼ିଆ, ନୂଆଗାଁ ଚଡ଼ା, ଏକକୂଳା, ଏକ କୂଳାନାସୀ, ଠାକୁରାଣୀଡ଼ିଆ, ଜମ୍ବୁଦ୍ୱୀପ, ଅପରନାସୀ, ହେଟା ମୁଣ୍ଡିଆ– ହୁକିଟୋଲା, ପ୍ଲୋଡ଼େନ ଆଇଲାଣ୍ଡ, ଲଙ୍ଗ ଆଇଲାଣ୍ଡ ଇତ୍ୟାଦି । ସାନ ବ୍ରାହ୍ମଣୀ, ତା'ର ଶାଖା ପ୍ରଶାଖା ବଙ୍ଗୋପ ସାଗରରେ ପତିତ । ଏ ନଦୀର ଉତ୍ତରରେ ଭୋପାଳ, ଦକ୍ଷିଣରେ ଭାଟେଣି, ମଧ୍ୟବର୍ତ୍ତୀ ଅଞ୍ଚଳରେ ଛୋଟବଡ଼ ଦ୍ୱୀପ । ସେଠାରେ ସାଧବପୁଅମାନେ ବୋଇତ ଖଟାଉଥିଲେ । ବ୍ରାହ୍ମଣୀ ନଈର ସଙ୍ଗମ ସ୍ଥଳ ବଙ୍ଗୋପ ସାଗର, ଏଇଠି ଗୋଟେ ସୂକ୍ଷ୍ମ ଭୂଭାଗ ବା ଦ୍ୱୀପ । ନାଁ ମଇପୁରା ପଏ ବା ଅନ୍ତରୀପ । ଏକଦା ଏଠାରେ ଗୋଟେ ବତୀଘର ଥିଲା । ହୁଗୁଳି ବନ୍ଦରକୁ ନାବିକମାନେ ଗତାୟାତ କରନ୍ତି । କିଛି ସମୟ ପାଇଁ ଏଠାରେ ବୋଇତ ଖଟାନ୍ତି । ସମୟକ୍ରମେ ଏ ଦ୍ୱୀପର ମୁହାଣ ପୋତି ହୋଇଗଲା । ବଙ୍ଗୋପସାଗର ସହ ସଂଯୋଗ ବିଚ୍ଛିନ୍ନ ହୋଇଗଲା ।

କେନ୍ଦ୍ରାପଡ଼ା ଜିଲ୍ଲାର ମୁଖ୍ୟ ବନ୍ଦର ଫଲ୍‌ସ ପଏ । ଏହା ମହାକାଳପଡ଼ା ବ୍ଲକ୍ ଅନ୍ତର୍ଭୁକ୍ତ । ମହାନଦୀର ଶାଖା କତୁକ ନଈ ପ୍ରଭାବିତ ଅଗଭୀର ହ୍ରଦଟେ । ଏହାର ଚଉଡ଼ା ପ୍ରାୟ ୩/୪ ମାଇଲ୍ । ଚତୁଃପାର୍ଶ୍ୱ କାଦୁଅ ପଟୁମାଟିର ଟାପୁ । ବାଉଁଶ, ଲତା, ହେନ୍ତାଳରେ ନିଘଞ୍ଚ । ହ୍ରଦ ଆଉ ସମୁଦ୍ର ମଧ୍ୟରେ ଅନୁଚ୍ଚ ବାଲିସ୍ତୁପ । ପୂର୍ବେ ସେଠାରେ ଥିଲା ଏକ ପ୍ରାକୃତିକ ପୋତାଶ୍ରୟ । ପରବର୍ତ୍ତୀ ସମୟରେ ଫଲ୍‌ସ ପଏ ଭାବେ ନାମିତ । ହ୍ରଦର ଗଭୀରତା ୧୬ରୁ ୨୦ ଫୁଟ୍ । ଏଠାକୁ ଜାହାଜ ଆସେ, ସାମୁଦ୍ରିକ ଝଡ଼ରୁ ରକ୍ଷା ପାଇବାକୁ ଆଶ୍ରୟ ନିଏ । ଚଢ଼ା ଉପରେ ପୋତାଶ୍ରୟ ରକ୍ଷକଙ୍କ ଘର, କାର୍ଯ୍ୟାଳୟଟିଏ ବି ଦଣ୍ଡାୟମାନ । ନାବିକ, ଅନ୍ୟାନ୍ୟ କର୍ମଚାରୀଙ୍କର କୁଡ଼ିଆ ମୁଣ୍ଡ ଟେକିଥିଲା । ମଝିରେ ପର୍ଯ୍ୟବେକ୍ଷଣ ପାଇଁ ସୁଉଚ୍ଚ ପତାକାସ୍ତମ୍ଭ । ଏହି ସୁଦୃଶ୍ୟ ଉପନିବେଶଟି 'ହୁକିଟୋଲା' । ବଙ୍ଗୋପସାଗର କୂଳ ଧାମରା ମୁହାଣ, ଏକଦା ନୌଚାଳନାରେ ଏହାର ଖ୍ୟାତି ଥିଲା । ଜାହାଜଗୁଡ଼ିକ ବାଲେଶ୍ୱର–ପିପିଲି ଯାଆନ୍ତି ଏଇ ବନ୍ଦର ଦେଇ । ମହାନଦୀର ତ୍ରିକୋଣଭୂମି ଦେଇ ମଧ୍ୟ ଜାହାଜଗୁଡ଼ିକ ଯିବା ଆସିବା କରନ୍ତି । ବ୍ରିଟିଶ ସରକାର ନାବିକମାନଙ୍କର ନିରାପତ୍ତାକୁ ବିଚାରକୁ ନେଲେ । ଫଲ୍‌ସ ପଏରୁ ହୁଗୁଳି ମୁହାଣ ପର୍ଯ୍ୟନ୍ତ 'ଇନ୍‌ଷ୍ଟ୍ରକ୍‌ସନ ଫର ସେଲିଙ୍ଗ ଡାଇରେକ୍‌ସନ୍' ନକ୍ସା ପ୍ରସ୍ତୁତ କରାଗଲା । ୧୮୬୬ ମସିହା, ପଡ଼ିଲା ନ'ଅଙ୍କ ଦୁର୍ଭିକ୍ଷ । ରେଙ୍ଗୁନରୁ ଚାଉଳ ଆସିବ । ସେତେବେଳକୁ ଓଡ଼ିଶା–ନୌବାଣିଜ୍ୟ ବିଲୁପ୍ତ ପ୍ରାୟ । ଏଇ ଫଲ୍‌ସ ପଏ ଦେଇ ରେଙ୍ଗୁନ୍‌ରୁ ଚାଉଳ ବୋଝେଇ ଜାହାଜମାନ ଆସିଥିଲା । ଶେଷରେ ଫଲ୍‌ସ ପଏ ଓଡ଼ିଶାର ଗେଟ୍‌ୱେ ବା 'ପ୍ରବେଶ ଦ୍ୱାର'ରେ ପରିଣତ ହେଲା । ଫଲ୍‌ସ ପଏକୁ ବିଭିନ୍ନ ଦେଶରୁ ଜାହାଜମାନ ଆସୁଥିଲା । ଯାତ୍ରୀବାହୀ ଜାହାଜ ବା ଷ୍ଟିମର ବି ଗତାୟାତ କରେ ।

ସାଧବମାନେ ଶକ୍ତି ଉପାସକ । ସେଥିପାଇଁ କେନ୍ଦ୍ରାପଡ଼ା ଜିଲ୍ଲାର ବିଭିନ୍ନ ନଦୀକୂଳରେ ଦେବୀ ମନ୍ଦିର । ସେଇ ଦେବୀମାନେ ଦରିଆ ରାମଚଣ୍ଡୀ, ଛୁଆଳିଆ, ପଞ୍ଚୁବରାହୀ, ଅଲେଖ ନାହାକାଣୀ, କାଳିକାଇମାନେ ପ୍ରସିଦ୍ଧା । କଳିଙ୍ଗ ସାଧବ ପୁଅମାନେ ସେମାନଙ୍କର ପ୍ରତିଷ୍ଠାତା । ଅତୀତ ଉତ୍କଳ ନୌବାଣିଜ୍ୟକୁ ନେଇ 'ଖୁଲଣା ସୁନ୍ଦରୀ' ଓଷାକଥା । ଧନେଶ୍ୱର ସାଧବ, ବୋଇତରେ ବଣିଜକୁ ଗଲେ । ସିଂହଳରେ ବନ୍ଦୀ ହେଲେ । ତାଙ୍କ ପୁତ୍ର ଶ୍ରୀଧର କୁମାର, ବାପାଙ୍କୁ ମୁକୁଳେଇଲା । ସିଂହଳ ରାଜକନ୍ୟାଙ୍କ ପାଣିଗ୍ରହଣ କଲା । ସବୁ ମା'ମଙ୍ଗଳାଙ୍କ କୃପା । ଲଙ୍କେଶ୍ୱରୀଙ୍କର ଏକ ମୁଗୁନି ପଥର ମୂର୍ତ୍ତି, ଶ୍ରୀଧର

ସିଂହଳରୁ ଆଣିଲା । ପଞ୍ଚସୁକା କନିକା ଛତ୍ରପଦାରେ ଦେବୀ ପ୍ରତିଷ୍ଠିତା । ସାଧବମାନଙ୍କ ଇଷ୍ଟଦେବୀ ମା'ମଙ୍ଗଳା । ଅନେକ ସମୟରେ ନଦୀକୂଳରେ ବୋଇତ ଅଟକି ଯାଏ । ସାଧବ ପୁଅମାନେ ବିପଦରୁ ମୁକ୍ତି ପାଇଁ ମା'ଙ୍କୁ ସ୍ମରଣ କରନ୍ତି । ବୋଇତ ମଙ୍ଗରେ ମା'ମଙ୍ଗଳା ସଦା ବିରାଜିତା । ବଡ଼ ବଡ଼ ନଦୀ, ସମୁଦ୍ର ତଟରେ ବି ମଙ୍ଗଳାଙ୍କ ମୂର୍ତ୍ତିମାନ ପରିଦୃଷ୍ଟ ।

ମାର୍ଶାଘାଇ ତହସିଲ ଅନ୍ତର୍ଗତ ରାମନଗର, ଦରିଆ ରାମଚଣ୍ଡୀଙ୍କ ବିଜେସ୍ଥଳୀ । ମା'ଙ୍କୁ ନେଇ କିମ୍ବଦନ୍ତୀଟେ । ଦିନେ ଜନୈକ ସାଧବଙ୍କର ବୋଇତ ନଦୀରେ ଅଟକି ଗଲା । ମା'ଙ୍କୁ ସ୍ମରଣ କରି ବିପଦ ମୁକ୍ତ ହେଲେ ସାଧବ । ସ୍ଥାପନ କଲେ ଦରିଆ ରାମଚଣ୍ଡୀ । ବର୍ତ୍ତମାନ ସମୁଦ୍ର ଘୁଞ୍ଚି ଘୁଞ୍ଚି ୮ କି.ମି. ଦୂରରେ । ଭୂତଳର ୫ ଫୁଟ୍ ତଳେ ବୋଇତଟେ ନିର୍ମିତ । ତହିଁ ପରେ ଦେବୀ ବିରାଜମାନା । ଆଉ ଗୋଟେ ଦେବୀ ଅଲେଖ ନାହାକାଣୀ । ହଂସୁଆ ଆଉ ବ୍ରାହ୍ମଣୀନଦୀର ମିଶ୍ରଣ ସ୍ଥାନ ବଙ୍ଗୋପସାଗର ମୁହାଣ । ଏଇ ସଙ୍ଗମ ସ୍ଥଳରେ ଚଢ଼ାଟେ । ବିଜେ ଅଲେଖ ନାହାକାଣୀ । ଏବେ ଟାପୁଟି ଆଉ ନାହିଁ । କିଛି ଦୂରରେ ନରସିଂହପୁର । ସେଇଠି ଦେବୀ ବିରାଜିତା । ରାଜକନିକାର ଗଙ୍ଗାଧରପୁର ଗାଁରେ ବିଜେ କାଳିକେଇ । ମା'ଙ୍କୁ ନେଇ ଲୋକ କଥାଟେ । ଚିଲିକାରୁ ଆସୁଥିଲେ ସାଧବ ଗଙ୍ଗାଧର । ମା'ଙ୍କୁ ସ୍ଥାପନା କଲେ କାଳିକାପୁରଠାରେ । ମା' କାଳୀକାଇଙ୍କ ସାନ ଭଉଣୀ କାଳିକା । ସାଧବ ବୋଇତରେ ଆସିଥିଲେ । ପଥର ମୂର୍ତ୍ତିଟେ ପାଲଟିଲେ । ବିଜେ କଲେ ଗଙ୍ଗାଧରପୁରରେ । ପୂର୍ବ କାଳର କଥା । ଖରସ୍ରୋତା ନଈର ଶାଖାଟେ, ଆସିଥିଲା କାଳିକାପୁର ଯାଏ । ସେଥିରେ ଜାହାଜ ଚାଲୁଥିଲା ।

ରାଜକନିକାର ଅନତି ଦୂରରେ ଗଞ୍ଜାଗ୍ରାମ । ଗ୍ରାମରେ ଅଧିକାଂଶ କ୍ଷତ୍ରୀୟ । ସେମାନେ କନିକା ରାଜାଙ୍କର ଛାମୁଆ ବାହିନୀ ଥିଲେ । ପର୍ତ୍ତୁଗୀଜ, ଆରକାନ୍ ଜଳଦସ୍ୟୁ ଆକ୍ରମଣକୁ ପ୍ରତିହତ କରୁଥିଲେ । ଉତ୍କଳୀୟ ନାବିକ ପାଉଥିଲେ ସୁରକ୍ଷା । ଏହି ଗ୍ରାମରେ 'ନୃସିଂହନାଥ ମଠ' । ନାଗା ସନ୍ନ୍ୟାସୀମାନେ ପ୍ରତିଷ୍ଠା କରିଥିଲେ । ସେହିପରି କେନ୍ଦ୍ରାପଡ଼ା ଜିଲ୍ଲାର କେତେକ ଅଗଭୀର ପାଟ । ସେତେବେଳେ ନଥିଲା ନଦୀରେ ଘେରିବନ୍ଧ । ପାଟରେ ବନ୍ୟାଜଳର ଅବାଧ ପ୍ରବେଶ । ଏମିତି ଏକ ବଡ଼ ପାଟଟେ ପଟ୍ଟାମୁଣ୍ଡାଇ ନିକଟସ୍ଥ ବ୍ରାହ୍ମଣୀ ନଦୀକୂଳରେ । ପାଟଟିର ନାଁ 'ବୋଇତାଳ' ପାଟ । ଜଣେ ସୌଦାଗରଙ୍କର ବୋଇତ ସେଇଠି ଅଟକିଗଲା । ନାବିକମାନେ ସ୍ମରଣକଲେ ଚନ୍ଦ୍ରମଉଳିଙ୍କୁ । ଦେବକୃପା ହେଲା, ବୋଇତ ଚାଲିଲା । ପ୍ରଭୁଙ୍କୁ ସୌଦାଗର କୃତଜ୍ଞତା ଜଣାଇଲେ । ସ୍ଥାପନ କଲେ ଚନ୍ଦ୍ର ମଉଳିଙ୍କୁ । ବୋଇତାଳ ପାଟକୁ ନେଇ ଏଇ କିମ୍ବଦନ୍ତୀ । ଜନଶ୍ରୁତିରେ ଏବେବି ଉଜ୍ଜୀବିତ ।

କନିକାର ଧାମରା ମୁହାଣ । ଉତ୍କଳ ବହିଃପ୍ରଦେଶ ରୂପେ ଖ୍ୟାତ । ମୁହାଣରେ ପ୍ରତିଷ୍ଠିତା ମା'ମଙ୍ଗଳା ଅଂଶ ସ୍ୱରୂପା ଧାମରାଇ । ଧାମରାର ମୁହାଣ ଖୁବ୍ ପ୍ରଶସ୍ତ, ଭୟଙ୍କର ମଧ୍ୟ । ସେଇଠାରେ ଗୋଟେ ଧୀବର ପଲ୍ଲୀ । ଧନେଶ୍ୱର ସାଧବ ସିଂହଳରୁ ଆଣିଥିଲେ ପ୍ରସ୍ତର ମୂର୍ତ୍ତିଟେ । ସେଠାରେ ପ୍ରତିଷ୍ଠା କଲେ । ସେଇ ଦେବୀ ଧାମରାଇ । ଏକଥା ଜନେ କହନ୍ତି । ବ୍ରାହ୍ମଣୀ ନଦୀର ଏକ ଶାଖା ଗୋବରୀ ନଦୀ । ଗଣ୍ଡାଖିଆଠାରେ ଗତି କରିଛି ପୂର୍ବକୁ । ମିଶିଛି ବଙ୍ଗୋପ ସାଗରରେ । ସେଇ ନଈ କୂଳିଆ ଗାଁ ଗଣ୍ଡାକିଆ । ନଦୀତଟରେ ଏକ ଘଞ୍ଚ ସାହାଡ଼ା ଜଙ୍ଗଲ । ସେଇ ଗଛଗୁଡ଼ିକରେ ସିନ୍ଦୂରର ପ୍ରଲେପ । ମା' ଛୁଆଳିଆ ଭାବେ ତାହା ଉପାସିତା । ସାଧବମାନଙ୍କର ଏହି ନଦୀରେ ଗତାଗତ । ଗୋବରୀ ଦେଇ ସମୁଦ୍ରରେ ପ୍ରବେଶ କରନ୍ତି । ସେମାନେ ସାହାଡ଼ା ବଣରେ ଥାପନା କଲେ ସିନ୍ଦୂର ମଣ୍ଡିତ ପଥରରୂପୀ ମା' ଛୁଆଳିଆ । ମା'ଙ୍କୁ ଆମିଷ ପ୍ରସାଦ ଲାଗି ହୁଏ । ମାଳି ଜାତିର ପୂଜକ ମା'ଙ୍କୁ ନୈବେଦ୍ୟ ଲାଗି କରନ୍ତି । ଛୁଆଳିଆ ବନଦୁର୍ଗା ମନ୍ତ୍ରରେ ଆରାଧିତା ।

ହୁକିଟୋଲା ଦ୍ୱୀପଠାରୁ ବକୁଳ ନଦୀରେ କିଛି ଦୂର ଯିବାକୁ ହୁଏ । ପଡ଼େ କଜଳପାତିଆ ଦ୍ୱୀପ । ସେଇଠି ଦଣ୍ଡାୟମାନ ଭାରତର ପ୍ରଥମ ବତୀଘର । ୧୮୧୯ ମସିହାରେ ଇଂରେଜମାନେ ଏହାର ନବୀକରଣ କଲେ । ଶେଷହେଲା ୧୮୨୬ ମସିହାରେ । ପରବର୍ତ୍ତୀ ନିର୍ମାଣ କାର୍ଯ୍ୟ ୧୮୩୬ ଡିସେମ୍ବର ୬ରୁ ଆରମ୍ଭ ହେଲା ।

ସମ୍ପୂର୍ଣ୍ଣ ହେଲା ୧୮୩୭ ଅକ୍ଟୋବର ୧୦ ତାରିଖରେ । ୧୮୩୮ ମାର୍ଚ୍ଚ ୧ ତାରିଖରେ ବତୀଘରେ ଆଲୋକ ବ୍ୟବସ୍ଥା ହେଲା । ବର୍ତ୍ତମାନ ଏହାର ଉଚ୍ଚତା ୧୨୫ ଫୁଟ୍, ନିମ୍ନଭାଗ ଭିତର ପରିଧି ୨୧ ଫୁଟ୍ । ଶୀର୍ଷ ଭାଗ ପରିଧି ୫ ଫୁଟ୍ । ନାବିକମାନେ ସତର୍କ ସୂଚନା ପାଆନ୍ତି ଏହି ବତୀଘର ଆଲୋକରୁ । ସେତେବେଳକା ଅଭିବକ୍ତ କଟକ ଜିଲ୍ଲା, କଲେକ୍ଟର ମିଃ. ଜନ୍ ବିମ୍ସ । ଏଇ ଫଲ୍ସ ପଏ ଦେଇ କଲିକତା, ମାନ୍ଦ୍ରାଜ ଅନେକ ଥର ଯାଇଥିଲେ । ହୁକିଟୋଲା ଦ୍ୱୀପ ଖୁବ୍ ନିକଟରେ ବିରାଟ ଫ୍ଲାଟ୍‌ଟିଏ । ସର୍ବଦା ନଙ୍ଗର ପକାଇଥାଏ । ନିମ୍ନାଂଶ ଚଟକା ଥିବା ଏଇଟି ବଡ଼ ମାଲବାହୀ ଜାହାଜ । ଦୁଇପଟେ ଧାଡ଼ି ଧାଡ଼ି କୋଠରୀ, ଚଉଡ଼ା ଡେକ୍, ରୋଷେଇ ଶାଳ, ସ୍ନାନାଗାର ସହିତ ଅନ୍ୟାନ୍ୟ ସୁବିଧା । ଏସବୁ ଜାହାଜଟିର ବିଶେଷତ୍ୱ । ସେଇ ଜାହାଜର ନାଁ 'ଘାଜିପୁରା' । ପ୍ରତି ସପ୍ତାହରେ ଥରେ ଆସେ 'ବ୍ରିଟିଶ ଇଣ୍ଡିଆ' ଷ୍ଟିମର । ତା'ରି ଅପେକ୍ଷାରେ ଥାଏ 'ଘାଜିପୁରା' । ଏଇଟି ଏକ ଭାସମାନ ହୋଟେଲଟେ । ଯାତ୍ରୀମାନେ ବିଶ୍ରାମ କରନ୍ତି । ସେଠାରେ ସମୁଦ୍ର ଅତି ଶାନ୍ତ ସୁଧାର । ନିସ୍ତରଙ୍ଗ ବି ।

୧୬ଶ ଶତାବ୍ଦୀ କଥା । କନିକା ଉପକୂଳସ୍ଥ ବଙ୍ଗୋପସାଗର ନାଁ 'କନିକା ବେଦବା କନିକା ଉପସାଗର । ଧାମରା ନଦୀ କନିକା ରିଭର (କନିକା ନଦୀ) ନାମେ ନାମିତ । କନିକା ଉପସାଗରର ପୂର୍ବାଂଶରେ ଅବସ୍ଥିତ ବାଲିଚଡ଼ା (କନିକା ସ୍ୟାଣ୍ଡ)ର ନାଁ କନିକା ଦ୍ୱୀପ । ବଙ୍ଗୋପ ସାଗରରେ କନିକା ଅଧିବାସୀଙ୍କ ଆଧିପତ୍ୟ ଥିଲା । ଉକ୍ତ ନାମକରଣରୁ ତାହା ପ୍ରତୀୟମାନ । ଇଂରେଜମାନେ ଓଡ଼ିଶାରେ କେନାଲମାନ ଖୋଳାଇଲେ । ତନ୍ମଧ୍ୟରୁ କେନ୍ଦ୍ରାପଡ଼ା କେନାଲ ସର୍ବପ୍ରାଚୀନ । ଏହା ବିଭିନ୍ନ ନାମରେ ନାମିତ । ଯଥା– କେନ୍ଦ୍ରାପଡ଼ା କେନାଲ, ଗୋବରୀ କେନାଲ, ଗୋବରୀ ସମ୍ପ୍ରସାରଣ କେନାଲ, ଜମ୍ବୁ କେନାଲ । ଜଳସେଚନ ତଥା ନୌବାଣିଜ୍ୟ କାରବାର ଏଇ କେନାଲଗୁଡ଼ିକର ମୁଖ୍ୟ ଉଦ୍ଦେଶ୍ୟ । କଟକ ମାଲଗୋଦାମରୁ ମାଲ ଆସେ । ନୌକାଗୁଡ଼ିକ ଏହି କେନାଲ ଦେଇ ଯାଏ ଚାନ୍ଦବାଲି । କଟକ ଜୋବ୍ରା ଘାଟରୁ ବାହାରେ ଯାତ୍ରୀବାହୀ ଷ୍ଟିମର । ଯାଏ ବି ଚାନ୍ଦବାଲି । କେନାଲରେ ଥିଲା ବିଭିନ୍ନ ସ୍ଥାନରେ ଲକ୍ । ଜଳସେଚନର ସୁବିଧା, ନୌକାଗୁଡ଼ିକୁ ସ୍ୱଚ୍ଛନ୍ଦରେ ପାର୍ କରିବା – ଏସବୁ ଲକ୍‌ର କାର୍ଯ୍ୟ । ବିଲାତର 'ଫକଲନର' କମ୍ପାନୀ କେନାଲ ଲକ୍ ଯନ୍ତ୍ରାଂଶର ନିର୍ମାତା । ୧୯୭୦ ମସିହା, ସେତେବେଳକୁ ସବୁ ଲକ୍ ନଷ୍ଟ ହୋଇଗଲା । ରାଜନଗର ଅନ୍ତର୍ଗତ ବରୁଣେଇ ମୁହାଣ । କେନ୍ଦ୍ରାପଡ଼ା କେନାଲରେ ନୌକା ଚାଳନା ବହୁ ପୂର୍ବରୁ ବନ୍ଦ ହୋଇ ଯାଇଥିଲା । ଅନତି ଦୂରରେ ବଙ୍ଗୋପ ସାଗର, କୂଳରେ ପେଣ୍ଡଗ୍ରାମ । ବେପାର ବଣିଜର ଏଇଟି ଥିଲା ଗୁରୁତ୍ୱପୂର୍ଣ୍ଣ ସ୍ଥାନ । ସେଇଥି ପାଇଁ ଗାଁର ନାଁ ପେଣ୍ଡ । ଅନୁରୂପ ଭାବେ ତଅପୋଇ ଓଷା କଥା । କେନ୍ଦ୍ରାପଡ଼ା ନୌବାଣିଜ୍ୟ ସମ୍ପର୍କିତ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଏଥିରୁ ମିଳେ । ତଅପୋଇ, ଧନେଶ୍ୱର ସାଧବ, ସାଧବ ସାତ ପୁଅ ସମସ୍ତେ ଏଇ କେନ୍ଦ୍ରାପଡ଼ାର ।

ତଅପୋଇ ଗୋଟେ କିମ୍ବଦନ୍ତୀ ଅବା ଜନଶ୍ରୁତି । ସେହିପରି ପୁରାଣକଥା, ପୌରାଣିକ ଉପାଖ୍ୟାନ, ଗଳ୍ପ, ଉପକଥା– ଏଗୁଡିକ କିମ୍ବଦନ୍ତୀ ପର୍ଯ୍ୟାୟଭୁକ୍ତ । ଏ ସମସ୍ତ ପଛରେ ଐତିହାସିକ ସତ୍ୟ ନଥାଏ ଅନେକତ୍ର ଥାଏ ଇତିହାସର କ୍ଷୀଣସ୍ପର୍ଶ । ତଅପୋଇ ବ୍ରତକଥା ବା ଖୁଦକଣା, ଖୁଦରକଣା, ଖୁଦୁରୁକୁଣୀ ଓଷା ଏକ ବହୁଜନାଦୃତ କିମ୍ବଦନ୍ତୀ ମାତ୍ର ଏହାର ପୃଷ୍ଠଭୂମିରେ ରହିଛି ଅତୀତ କଳିଙ୍ଗର ବିଭବଶାଳିନୀ ନୌବାଣିଜ୍ୟ ଇତିହାସର କେତେକ ଝଲକ ।

ଭୋଦୁଅରେ ଖୁଦୁରୁକୁଣୀ ଓଷା । କୁଆଁରୀମାନେ ଓଷାକୋଠି କାଟନ୍ତି । ଖଡି ପାଣିରେ ଏକ ଦ୍ରୁତଗାମୀ ବୋଇତ ଚିତ୍ର ଆଙ୍କନ୍ତି । ତା' ଉପରେ ମା' ମଙ୍ଗଳା ରୂପୀ ଖୁଦୁରୁକୁଣୀଙ୍କ ମୃଣ୍ମୟୀ ମୂର୍ତ୍ତି । ଏହା ଓଡିଶା ନୌବାଣିଜ୍ୟ ସଂପର୍କିତ ସମ୍ୟକ୍ ସୂଚନା ପ୍ରଦାନ କରେ । ଏଇ ତଥ୍ୟକୁ ଶାଣିତ କରିବା ପାଇଁ କେତେକ ଉଦାହରଣ ପ୍ରଦାନ କରାଯାଇପାରେ ।

ପୁରାଣ ପୃଷ୍ଠାମାନଙ୍କରେ ଜମ୍ବୁଦ୍ୱୀପର ପ୍ରସିଦ୍ଧି ବର୍ଣ୍ଣିତ । ତଅପୋଇ କଥାରେ ମଧ୍ୟ ସେଇ ଜମ୍ବୁଦ୍ୱୀପ ନାମ ଉଲ୍ଲିଖିତ । କେନ୍ଦ୍ରାପଡାଠାରୁ ୩୦ କି.ମି. ପୂର୍ବରେ ଏହି ଦ୍ୱୀପ । ଏହାର ଉତ୍ତର, ଦକ୍ଷିଣ, ପଶ୍ଚିମ ସୀମାରେ ବଡ ବଡ ନଦୀ ଆଉ ସେମାନଙ୍କର ଶାଖା ନଦୀ ।

ବଙ୍ଗପୋସାଗର ଏହାର ସମସ୍ତ ପୂର୍ବଭାଗକୁ ଛୁଇଁଛି । ଜମ୍ବୁଦ୍ୱୀପ ଥିଲା ବିଭବଶାଳୀ । ଉତ୍ତରରେ ବ୍ରାହ୍ମଣୀ, ତା' ଶାଖା ନଦୀ ହଂସୁଆ, ସାନ ବ୍ରାହ୍ମଣୀ ପଶ୍ଚିମରେ ଗୋବରୀ, ଦକ୍ଷିଣରେ ମହାନଦୀ, ତା'ର ଶାଖା ବକୁଳ ନଦୀର ମୁହାଣ । ଏ ଅଞ୍ଚଳଗୁଡ଼ିକ ବାଣିଜ୍ୟ କାରବାର ପାଇଁ ଅତୀବ ଅନୁକୂଳ । ତଅପୋଇରେ ବର୍ଣ୍ଣିତ ତନୟବନ୍ତ ସାଧବ, ତା'ର ସାତପୁଅ ଜମ୍ବୁଦ୍ୱୀପର – ଏ କଥାକୁ ଗ୍ରହଣ କରାଯାଇପାରେ । ଏକଦା କଳିଙ୍ଗ ସାଗର କୂଳରେ ବୃହତ୍ ବୋଇତମାନ ଭାସୁଥିଲା । ତାମ୍ରଲିପ୍ତ, ଘଣ୍ଟିଳା, ଧାମରା, ଚାନ୍ଦବାଲି, ଜମ୍ବୁ, ଚେଳିତୋଳା, କାକଟପୁର, ପୁରୀ, ଗୋପାଳପୁର, ବିଶାଖାପାଟଣା, ପାଲୁରୁ, ସାତଭାୟା ଆଦି ବନ୍ଦରମାନ ଗଢିଉଠିଥିଲା । ଏ କଥାକୁ ଲେଖିଛନ୍ତି ଗ୍ରୀକ୍ ଐତିହାସିକ ଟୋଲେମି । ତଅପୋଇ ଉପାଖ୍ୟାନଟି ସାତଭାୟାରୁ ସମ୍ଭୂତ ।

କେନ୍ଦ୍ରାପଡା ଜିଲ୍ଲା, ରାଜନଗର ବ୍ଲକ୍ । ମାତ୍ର ୫ କି.ମି ଆଗରେ ଇକଲପାଲ୍ ଛକ । ସେଇଠୁ ଘଞ୍ଚ ସବୁଜିମା ଭରା ଜଙ୍ଗଲ ରାସ୍ତା । ୨ କି.ମି ଆଗକୁ ବାଉଁଶଗଡା ନଈ । ନଈ ସେପାରି ୫ କି.ମି ଆଗକୁ ବିସ୍ତୀର୍ଣ୍ଣ ସାଗର ବେଳାଭୂମି । ଦୃଷ୍ଟିକୁ ଆସେ ସାତଭାୟା । ଗୋବିନ୍ଦପୁର, କାନପୁର, ମରାପଦା, ବସନ୍ତସାହି, ସାତଭାୟା, ଖରିକୁଲା, ମହନପୁର ଗାଁ – ଯାକୁ ନେଇ ସାତଭାୟା । ସାତଭାୟାକୁ ଛାଡି ଅନ୍ୟ ଗାଁଗୁଡିକ ଏବେ ସମୁଦ୍ରର କରାଳ ଗର୍ଭରେ । ସାତଭାୟା ଶକ୍ତିପୀଠ ପଞ୍ଚୁବରାହୀଙ୍କ ପାଇଁ ପ୍ରସିଦ୍ଧ । ଜଞ୍ଜାଳି, କମଳିନୀ, ଶାରଳା, ବାଟକୁମାରୀ, ପଞ୍ଚବରାଇ– ଏହି ପାଞ୍ଚ ଦେବୀ ପାଷାଣ ନିର୍ମିତ ପଞ୍ଚୁବରାହୀ । ଏଗୁଡିକୁ ବିଦେଶରୁ ଗଢ଼ାଇ ଆଣିଥିଲେ ସାଧବ । ସାତଭାୟାରେ ଦେବୀଙ୍କୁ ସ୍ଥାପନ କଲେ । କନିକା ରାଜା ବିନାୟକ ଭଞ୍ଜ ଦେବ, ପଞ୍ଚୁବରାହୀଙ୍କ ପାଇଁ ମନ୍ଦିରଟିଏ ଗଢିଦେଲେ । ମନ୍ଦିର ନିକଟସ୍ଥ ସମୁଦ୍ରତଟ, ନଦୀର ମୁହାଣ । ସେଠାରେ ବାଣିଜ୍ୟ ପାଇଁ ହାଟ ବସୁଥିଲା । ସାଧବମାନେ ମାତୃଭକ୍ତ । ମା'ମଙ୍ଗଳାଙ୍କୁ ସ୍ଥାପନ କରୁଥିଲେ ବୋଇତ ମଙ୍ଗଳରେ । ମା' ଅଭୟଦାୟିନୀ, ଶକ୍ତି ପ୍ରଦାୟିନୀ, ସଂକଟ ତାରିଣୀ । ନୌଯାତ୍ରା ସମୟରେ ସାଧବାଣୀଏ ମା'ଙ୍କୁ ପୂଜାର୍ଚ୍ଚନା କରନ୍ତି । ବୋଇତମଙ୍ଗରେ ବସିଥିବା ମଙ୍ଗଳାଙ୍କୁ ବନ୍ଦାପନା କରନ୍ତି । ଚନ୍ଦନ, ସିନ୍ଦୂର ପିନ୍ଧାଇ ଦିଅନ୍ତି ସାଧବଙ୍କ ମୁଣ୍ଡରେ । ଶୁଭମନାସନ୍ତି । ପୁନଶ୍ଚ ବୋଇତ ବାହୁଡିଲେ ମା' ମଙ୍ଗଳାଙ୍କ ବନ୍ଦାପନା ହୁଏ । ଏହି ପରଂପରାଟି ସୂଚିତ ତଅପୋଇ ଓଷା କଥାରେ ।

ଭାଦ୍ରବ ମାସ, ସାତ ସାଧବ ବୋଇତ ଧରି ସ୍ୱରାଜ୍ୟକୁ ବାହୁଡିଲେ । ଏହା ମଧ ଏକ ଯୁକ୍ତିଯୁକ୍ତ ପ୍ରସଙ୍ଗ । କଳିଙ୍ଗ ସାଧବମାନଙ୍କର ଅନୁକୂଳ ବାୟୁ ପ୍ରବାହକୁ ପ୍ରତୀକ୍ଷା । ଉତ୍ତର ପୂର୍ବ ମୌସୁମୀ ବାୟୁ ସକ୍ରିୟ ହୁଏ । ସେମାନେ ଦକ୍ଷିଣପୂର୍ବ ବା ଦକ୍ଷିଣ ପଶ୍ଚିମ ଦିଗକୁ ଯାତ୍ରା କରୁଥିଲେ । ମାର୍ଗଶିରଠାରୁ ଚୈତ୍ର ଏହାର ପ୍ରକୃଷ୍ଟ ସମୟ । କାର୍ତ୍ତିକ ପୁନେଇଁରୁ ସେମାନେ ବିଦେଶ ଯାଉଥିଲେ । ଆସେ ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁ । ସାଧବମାନଙ୍କର ଲେଉଟାଣି ଯାତ୍ରାରେ ସହାୟକ ହୁଏ । ଅଝାଲଟଣା ବୋଇତଗୁଡିକ ଅନାୟସରେ ଫେରିଆସେ । ଉପଯୁକ୍ତ ତଥ୍ୟ ବି ତଅପୋଇ ଓଷାରୁ ମିଳେ ।

ଗୌରବାବହ ଅତୀତ ସ୍ମୃତି ଚାରଣର ସମୟ ଉପଗତ । ଗରିୟାନ ଅତୀତ ହିଁ ବର୍ତ୍ତମାନକୁ ମାର୍ଗ ଦର୍ଶନ କରେ । କାର୍ତ୍ତିକ ପୂର୍ଣ୍ଣିମା ଡଙ୍ଗା ଭସାଣି ପର୍ବ । ବିଭିନ୍ନ ସ୍ଥାନରେ ବୋଇତ ବନ୍ଦାଣ ଉତ୍ସବ । ଐତିହାସିକ କଟକ ମହାନଦୀ ତଟ, ପାରାଦ୍ୱୀପ ବନ୍ଦର ବେଳାଭୂମିରେ ବାଲିଯାତ୍ରା । ଏସବୁ ଜାତି ପାଇଁ ଗର୍ବ ଓ ଗୌରବର କଥା । ତଥାପି ଏ ଜାତିର ଖେଦ, 'କର୍ପୂର ଉଡ଼ି କନା ଥିଲେ ପଡ଼ି/ କନା ରଖିଥାଏ କର୍ପୂର ସ୍ମୃତି / କନାଯାଇ ଯଶ ରହିଲେ ପାଉଁଶ । ଧରିବ ତା ଦେଖି କିଏ ସେ ଧୃତି' (ଗୋପବନ୍ଧୁ ଦାସ) । ଏ ପରିପ୍ରେକ୍ଷୀରେ ତଅପୋଇ କଥା ଚିଆଇଁ ଦିଏ ଏ ଜାତିକୁ, ମନେ ପକାଇ ଦିଏ ତା' ହଜିଲା ନୈବାଣିଜ୍ୟ ସ୍ମୃତିଟିକକୁ ଏବଂ ଐଶ୍ୱର୍ଯ୍ୟମୟୀ ଉତ୍କଳ ନୌବାଣିଜ୍ୟରେ କେନ୍ଦ୍ରାପଡ଼ାର ଭୂମିକାକୁ ।

ସା/ପୋ– ପୁରୁଷୋତ୍ତମପୁର, କେନ୍ଦ୍ରାପଡା

# କଟକର ବାଲିଯାତ୍ରା

ଡକ୍ଟର ଶରତ ଚନ୍ଦ୍ର ପରିଡ଼ା

କଟକ ଏକ ଐତିହାସିକ ପ୍ରାଚୀନ ସହର । ଓଡ଼ିଶାର ପ୍ରଥମ ରାଜଧାନୀ । ରାଜ୍ୟର ଏକ ପ୍ରମୁଖ ବାଣିଜ୍ୟ କେନ୍ଦ୍ର । ନଦୀ ଏହାର ଜୀବନ ଧାରା । ମହାନଦୀ ଏନ୍ତୁଡ଼ିଶାଳ ହେଉଛି ଛତିଶଗଡ଼ର ସିହାଓ୍ୱା ପାହାଡ଼ । ଓଡ଼ିଶାର ପାରାଦ୍ୱୀପ ନିକଟରେ ଏହା ବଙ୍ଗୋପସାଗରରେ ମିଶିଛି । ନଦୀ ମୁହାଣ ପର୍ଯ୍ୟନ୍ତ ଦୀର୍ଘ ୯୬୦ କିଲୋମିଟର ମହାନଦୀର ଗତି । ଏହି ନଦୀ କୂଳରେ ଗଢି ଉଠିଛି ଶିକ୍ଷା ସଭ୍ୟତାରେ ସମୃଦ୍ଧ କୋଳାହଳ ମୁଖରିତ ଅସଂଖ୍ୟ ସହର । ତନ୍ମଧ୍ୟରୁ କଟକ ଅନ୍ୟତମ । ଦକ୍ଷିଣରେ କୁଳୁ କୁଳୁ ନାଦରେ ବହି ଯାଉଛି ମହାନଦୀର କନ୍ୟା ଗୁଞ୍ଜରୀ (କାଠଯୋଡି) । ଓଡ଼ିଶାର ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ଜୀବନକୁ ଏହା ବହୁ ଭାବରେ ପୁଷ୍କଳ କରିଛି । କଟକ ଏକ ଅତି ପୁରାତନ ସାଂସ୍କୃତିକ କେନ୍ଦ୍ର । ତିନୋଟି ଗ୍ରାମକୁ ମୁଖ୍ୟତଃ ଆଧାର କରି ଗଢି ଉଠିଥିଲା ଏହି ସହର । ସେଗୁଡ଼ିକ ହେଉଛି ବାରବାଟୀ, ହସଂନାବାଦ ଓ ବିଶିନାବର । ପରବର୍ତ୍ତୀ କାଳରେ ଆଉ ଚାରୋଟି ଗ୍ରାମ ଗଢି ଉଠିଛି । ଗ୍ରାମଗୁଡ଼ିକ ପରସ୍ପରଠାରୁ ବିଚ୍ଛିନ୍ନ । କାଳକ୍ରମେ ବାରବାଟୀ ଗ୍ରାମରେ କୋଦିଣ୍ଡା ଦଣ୍ଡପାଟର ଏକ ଦୁର୍ଗ ପ୍ରତିଷ୍ଠା ହେଲା । ଆଜି ତାହା ବାରବାଟୀ ଦୁର୍ଗ ନାମରେ ପ୍ରସିଦ୍ଧି ଲାଭ କରିଛି ।

ପ୍ରାଚୀନ ଓଡ଼ିଶା ଦୁର୍ଗମୟ ଥିଲା । ସେତେବେଳେ କଟକ ସରକାର ଅଧୀନରେ ଆଠଗଡ଼ର ଗଡ଼ଦୁର୍ଗ ଅନ୍ତର୍ଭୁକ୍ତ ଥିଲା । କଟକର ପୂର୍ବ ଦିଗରେ ଥିଲା ଚାରୋଟି ଦୁର୍ଗ । ତାହା ସହିତ ବାରଙ୍ଗ–ପଟିଆ ଜଙ୍ଗଲ ଓ ପାହାଡ଼ ମଧ୍ୟରେ ନଅଟି ଦୁର୍ଗ ଥିଲା । ଏହା ବ୍ୟତୀତ ଏହି ସରକାରରେ ଆହୁରି ଚଉଦଟି ଦୁର୍ଗ ରହିଥିଲା । ଗୁଞ୍ଜରୀ ପରି ବୀର–ନାସୀ( ବୀରୂପା) ମଧ୍ୟ ମହାନଦୀର ଅନ୍ୟ ଏକ ଶାଖା ନଦୀ । ଏହାର କୂଳରେ ରହିଛି ଚୌଦ୍ୱାର । କାଠଯୋଡ଼ିର ଦକ୍ଷିଣ କୂଳରେ ବିଦ୍ୟମାନ ଅଛି ସାରଙ୍ଗଗଡ଼ର ଧ୍ୱଂସାବଶେଷ । ମହାନଦୀରୁ ଯେଉଁ ସ୍ଥାନରେ ବୀରନାସୀର ଉତ୍ପତ୍ତି ସେହି ସ୍ଥାନରେ ଏକ ଅଭେଦ୍ୟ ଦୁର୍ଗ ଥିଲା । ଏହି ଦୁର୍ଗ ମଧ୍ୟରେ ରାଜପ୍ରାସାଦଟିଏ ବିଦ୍ୟମାନ ଥିଲା । କଟକ ସହରର ପ୍ରାୟ ସାତ ପ୍ରକାରର ଅର୍ଥ ରହିଛି । ସେଥିରୁ ଦୁର୍ଗ ବା ରାଜଧାନୀ ଅର୍ଥଟି କଟକ ସହର ପାଇଁ ପ୍ରଯୁଜ୍ୟ । ଷ୍ଟାର୍ଲି ସାହେବ ଗଙ୍ଗେଶ୍ୱର ଦେବଙ୍କ ପଞ୍ଚ କଟକ କଥା ଉଲ୍ଲେଖ କରିଛନ୍ତି । ସେଗୁଡ଼ିକ ହେଲା ଯାଜପୁର କଟକ, ଛତିଆ କଟକ ବା ଅମରାବତୀ କଟକ, ଚୌଦ୍ୱାର କଟକ, ବାରାଣସୀ କଟକ ଓ ସାରଙ୍ଗଗଡ଼ କଟକ । ସ୍ୱାଧୀନତା ପୂର୍ବରୁ ଓ ପରେ ଅନେକ ବର୍ଷଯାଏଁ କଟକ ଥିଲା ଓଡ଼ିଶାର ରାଜଧାନୀ ।

ଅତି ପୁରାକାଳରେ କଟକରେ ଗୌତମମୁନିଙ୍କ ଆଶ୍ରମ ଥିଲା । ସେଠାରେ ଗଢି ଉଠିଥିଲା କାର୍ତ୍ତିକେଶ୍ୱର ପୀଠ । ଏହି ପୀଠରେ ଅଳ୍ପ କେତେ କାଳ ହେବ ବିଶ୍ୱେଶ୍ୱର ମହାଦେବ ପ୍ରତିଷ୍ଠିତ ହୋଇଛନ୍ତି । ପୁରାତନ ମନ୍ଦିରଟି ପଥର ବନ୍ଧ ତିଆରିରେ ପୋତି ହୋଇ ପଡ଼ିବାରୁ ସେହି ମନ୍ଦିର ଚୂଳକୁ ଅକ୍ଷତ ରଖି ନୂତନ ମନ୍ଦିର ତିଆରି ହୋଇଛି । ଏହି ମନ୍ଦିରକୁ ଦେଉଳ ଉପରେ ଦେଉଳ ବୋଲି କୁହାଯାଏ । କଟକର ପ୍ରାଚୀନ ନାମ ଥିଲା ବାରାଣସୀ କଟକ ।

**କଟକର ଐତିହାସିକ ପଥରବନ୍ଧ :** ଧବଳେଶ୍ୱରଙ୍କ ପାଦ ଦେଶରେ ମହାନଦୀରୁ କାଠଯୋଡ଼ି ବାହାରି ଥିଲା ।

ମାତ୍ର ମହାନଦୀ ଓ କାଠଯୋଡ଼ିରେ ପଥର ବନ୍ଧ ନିର୍ମିତ ହେଲା ପରେ କାଠଯୋଡ଼ି ନରାଜ ପର୍ଯ୍ୟନ୍ତ ଘୁଞ୍ଚିଯାଇଛି । ୧୭୯୦ ଖ୍ରୀଷ୍ଟାବ୍ଦରେ ମିଷ୍ଟର ଲକିଙ୍କ ବର୍ଣ୍ଣନା ଅନୁସାରେ ମହାନଦୀର ଚହଟା ନିକଟରୁ କାଠଯୋଡ଼ି ମହାନଦୀରୁ ବାହାରିଥିଲା । ଖାନ୍ ନଗରରୁ ଚହଟା ଏବଂ ଚହଟାଠାରୁ ଯୋବ୍ରା ଯାଏଁ ପଥର ବନ୍ଧର ଆକୃତି ଠିକ୍ ଘୋଡ଼ାନାଲ ପରି ନିର୍ମିତ ହୋଇଛି । ରାଜା ମର୍କତକେଶରୀଙ୍କ ଦ୍ୱାରା ନିର୍ମିତ ଏହି ପଥରବନ୍ଧ ଓଡ଼ିଶାର ଏକ ପ୍ରାଚୀନ କୀର୍ତ୍ତି ।

ଇଞ୍ଜିନିୟର ଲେଫ୍ଟନାଣ୍ଟ ହାରିସ ଏହି ବନ୍ଧ ସମ୍ପର୍କରେ ମନ୍ତବ୍ୟ ଦେଇ କହନ୍ତି– ଏହା ହେଉଛି ଏକ ଅନିୟମିତ ପଥର ବନ୍ଧ । କୌଣସି ନିର୍ଦ୍ଦିଷ୍ଟ ଆକାରରେ ଏହା ତିଆରି ହୋଇ ନାହିଁ । କେଉଁଠି କାନ୍ଥ ପରି ତ ଆଉ କେଉଁଠି ଏହା ବନ୍ଧ ପରି ପ୍ରତୀୟମାନ ହୁଏ ।

ସ୍ଥାନେ ସ୍ଥାନେ ଏହା ସତର ଫୁଟଠାରୁ ଛତିଶ ଫୁଟ ଯାଏ ଉଚ୍ଚ । ସେ ପୁଣି ସ୍ୱୀକାର କରି କହନ୍ତି ଯେ ଏ ବନ୍ଧର କୌଣସି ମୂଳଦୁଆ ନାହିଁ । ଅନୁମାନ କରାଯାଉଛି ଯେ ଖାଲି ମାଟିପଥର ବିଛାଯାଇଛି ଓ କାଳକ୍ରମେ ଏହା ଆପେ ଆପେ ବସିଯାଇଛି । ଉଲ୍ଲେଖଯୋଗ୍ୟ ଯେ ଏହି ବନ୍ଧ ନିର୍ମାଣ ଦ୍ୱାରା କଟକକୁ ବନ୍ୟା ବିପର୍ଯ୍ୟୟରୁ ରକ୍ଷା କରାଯାଇପାରିଛି । ଏହା ସେସମୟର ଯାନ୍ତ୍ରିକ କୌଶଳର ପରିଚୟ ଦିଏ–ଏହା ଅସ୍ୱୀକାର କରାଯାଇପାରିବ ନାହିଁ । 'କଟକ ଚିନ୍ତା ବାଇମୁଣ୍ଡିକି' କିଂବଦନ୍ତୀଟି ଏହି ପଥର ବନ୍ଧ ଥିବା ପର୍ଯ୍ୟନ୍ତ ପଥର କାରିଗର ବାଇମୁଣ୍ଡିର ମହାନ୍ ଚିନ୍ତା ଓ ଅପୂର୍ବ ତ୍ୟାଗକୁ ଉଜ୍ଜୀବିତ କରି ରଖିଥିବ ।

କଟକର ଅର୍ଥ ଦୁର୍ଗ । ଏକଦା ଧବଳେଶ୍ୱର ପୀଠରେ ଏକ କଟକ ସ୍ଥାପନ କରିବାର ମସୁଧା ହୋଇଥିବାର ଜଣାଯାଏ । କିନ୍ତୁ କଟକ ନିର୍ମାଣ ପୂର୍ବରୁ ବାରବାଟୀ ଗ୍ରାମରେ ଶ୍ୟେନପକ୍ଷୀକୁ ବଗ ମାଡ଼ି ବସିଥିବାର ଦେଖି ତତ୍କାଳୀନ ଶାସକ ଧବଳେଶ୍ୱର ପରିବର୍ତ୍ତେ ବାରବାଟୀରେ ଦୁର୍ଗ ସ୍ଥାପନ କଲେ । ଥରେ ଦୁଇଜଣ ସନ୍ନ୍ୟାସୀ ଓ ଜଣେ ମାତା କାଠଯୋଡ଼ିର ଦକ୍ଷିଣ ତୀରରେ ପହଞ୍ଚିଲେ । ପୂର୍ଣ୍ଣଗର୍ଭା ନଦୀ । ସେମାନେ ନଦୀପାର ହେବା ପାଇଁ ହରିଣ ଛାଲ ନଦୀବକ୍ଷରେ ମେଲିଦେଲେ । ତା' ପରେ ସେହି ଛାଲରେ ଠିଆ ହୋଇ ନଦୀପାର ହେଲେ । କଟକରେ ପହଞ୍ଚିଲେ । ଏହି ଅଲୌକିକ ଘଟଣା ଶୁଣି କଟକର ତତ୍କାଳୀନ ଶାସକ ସେମାନଙ୍କର ଆଗମନର ଅଭିପ୍ରାୟ ପଚାରିଲେ । ସେମାନେ କଟକବାସୀ ହେବାକୁ ଆସିଛନ୍ତି ବୋଲି କହିଲେ । ତହୁଁ ଜ୍ୟେଷ୍ଠ ସନ୍ନ୍ୟାସୀ ଚିଲମରେ ନିଆଁ ଲଗାଇ ଧୂଆଁ ଛାଡ଼ିଲେ । ସେହି ଧୂମକୁଣ୍ଡଳୀ ପରିମିତ ସ୍ଥାନରେ 'ତୁଳସୀବନ' ସ୍ଥାପନ କରି ସେ କଟକରେ ରହିଲେ । ଅନ୍ୟ ସନ୍ନ୍ୟାସୀ 'ଗୋପାଜୀ ମଠ' ଏବଂ 'ମାତା ମଠ' ସ୍ଥାପନ କରି ରହିଲେ । କଟକକୁ ସାଧନାସ୍ଥଳୀ ରୂପେ ନିର୍ବାଚନ କଲେ ।

**ବାଲିବନ୍ଧରୁ ବାଲି ଯାତ୍ରା :** ମହାନଦୀ ଓ କଟକ ସହରକୁ ସଂଯୋଗ କରୁଥିବା ନଦୀବନ୍ଧକୁ ବାଲିବନ୍ଧ କୁହାଯାଏ । ଏହି ବାଲିବନ୍ଧରେ ବହୁ ଦୋକାନ ବସିଥାଏ । କିଣାବିକା ହୁଏ । କୁହାଯାଏ କାର୍ତ୍ତିକ ହେଉଛି ବର୍ଷର ଶେଷମାସ । ତେଣୁ ଭକ୍ତମାନେ ଏହି ମାସଟିକୁ ଅତ୍ୟନ୍ତ ଭକ୍ତି ଭାବରେ କଟାନ୍ତି । କାର୍ତ୍ତିକ ମାସ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଧବଳେଶ୍ୱର ପୀଠରେ ବଡ଼ ଓଷା ପାଳନ କରି ପିଠାଯାତ୍ରାରେ ଠାକୁରଙ୍କ ପ୍ରସାଦ ଖାଇ ଯାତ୍ରୀମାନେ ବାଲିବନ୍ଧକୁ ଫେରନ୍ତି । ସେଠାରୁ ଜିନିଷପତ୍ର କିଣାକିଣି କରି ଘରକୁ ଫେରନ୍ତି । ବାଲିବନ୍ଧରୁ ଏହି ଯାତ୍ରା କ୍ରମେ ବାଲିଯାତ୍ରାରେ ରୂପାନ୍ତରିତ ହୋଇଛି । ଏହି ବାଲିଯାତ୍ରା ବର୍ତ୍ତମାନ ଓଡ଼ିଶାର ଏକ ପ୍ରଧାନ ବାଣିଜ୍ୟିକ ତଥା ସାଂସ୍କୃତିକ ସର୍ବାକର୍ଷଣୀୟ ମେଳାରେ ପରିଣତ ହୋଇଛି ।

**ବୋଇତ ବନ୍ଦାଣରୁ ବାଲିଯାତ୍ରା**

ଓଡ଼ିଶା(କଳିଙ୍ଗ) ଥିଲା ଏକ ବୈଭବଶାଳୀ ଓ ସମୃଦ୍ଧିଶାଳୀ ଧନୀ ଦେଶ । କାର୍ତ୍ତିକ ପୂର୍ଣ୍ଣିମାର ବିଶିଷ୍ଟ ପର୍ବ ବୋଇତ ବନ୍ଦାଣ ଓ ବାଲିଯାତ୍ରା ମହୋତ୍ସବ ଅତୀତର ଅମ୍ଳାନ ସ୍ମୃତି ଓ ସ୍ୱାଭିମାନକୁ ଉଜ୍ଜୀବିତ କରି ରଖିଛି । କାର୍ତ୍ତିକ ପୂର୍ଣ୍ଣିମା ଦିନଠାରୁ ଦୀର୍ଘ ପାଞ୍ଚଦିନ ବ୍ୟାପୀ ଓଡ଼ିଶାର ପୂର୍ବତନ ରାଜଧାନୀ କଟକର ବାରବାଟୀ ଦୁର୍ଗ ସମ୍ମୁଖସ୍ଥ କିଲ୍ଲାପଡ଼ିଆ ଓ ମହାନଦୀର ଗଡ଼ଗଡ଼ିଆ ଘାଟଠାରେ

ଅନୁଷ୍ଠିତ ହୁଏ ପ୍ରସିଦ୍ଧ ଐତିହାସିକ ମହୋତ୍ସବ ବାଲିଯାତ୍ରା । ଏହା ବୀର କଳିଙ୍ଗ ଜାତିର ସ୍ୱାଭିମାନର ପ୍ରତୀକ । ବାଲିଯାତ୍ରା କହିଲେ ବାଲି, ବର୍ଣ୍ଣିଓ, ଜାଭା, ସୁମାତ୍ରା, ମାଳୟ ସିଂହଳ ଓ ବ୍ରହ୍ମଦେଶ ଆଦି ଦୀପପୁଞ୍ଜ ଓ ଦେଶକୁ ବାଣିଜ୍ୟ ପାଇଁ ବୋଇତରେ କଳିଙ୍ଗର ସାଧବପୁଅମାନଙ୍କର ଯାତ୍ରା । ଏ ଯାତ୍ରାର ପ୍ରାରମ୍ଭରେ ନଦୀ ମୁହାଣ ଓ ସମୁଦ୍ରକୂଳରେ ସାଧବ ବୋହୂମାନଙ୍କର ବୋଇତ ବନ୍ଦାଣ ଓ ବୋଇତର ଅଖାଳ ଦଉଡ଼ି ସାଧବ ପୁଅମାନଙ୍କ ହାତରେ ଟେକି ଦେଇ ଶଙ୍ଖ ହୁଳହୁଳି ଦେଇ ଦୂର ଦେଶ ଯାତ୍ରାର ମଙ୍ଗଳ ମନାସୁ ଥିଲେ । ପବିତ୍ର କାର୍ତ୍ତିକ ପୂର୍ଣ୍ଣିମାର ପ୍ରତ୍ୟୁଷରୁ ଉଠି ସ୍ନାନାଦି ନିତ୍ୟକର୍ମ ସମାପନ ପୂର୍ବକ କଦଳୀ ବାହୁଙ୍ଗା, କାଗଜ ବା ସୋଲନିର୍ମିତ ହଜାର ହଜାର ଡ଼ଙ୍ଗାରେ ଶୁଭ ଦୀପଟିଏ ଜଳାଇ ଦେଇ ଭସାଇ ଦେଇ ମହାଦେବଙ୍କୁ ଦର୍ଶନ କରିଥାନ୍ତି । ଜାତି ଧର୍ମ ନିର୍ବିଶେଷରେ ଉତ୍କଳର ପୁରପଲ୍ଲୀର ପ୍ରତ୍ୟେକ ଉତ୍କଳୀୟ ବିଶେଷ କରି ରାଜ୍ୟର ଉପକୂଳବର୍ତ୍ତୀ ଓଡ଼ିଶାବାସୀ ଅତି ଆନନ୍ଦ ଉତ୍ସାହର ସହିତ ସାଙ୍କେତିକ ଡ଼ଙ୍ଗା ଭସାଇବା ଏକ ଅପୂର୍ବ ଆଲୋକମାଳା ସୃଷ୍ଟି ହୋଇଥାଏ । ସେ ପୂର୍ବପୁରୁଷଙ୍କ ସ୍ମୃତିକୁ ରୋମନ୍ଥନ କରି ଆଗାମୀ ଜୀବନକୁ ପବିତ୍ର କରିବା ଉଦ୍ଦେଶ୍ୟରେ ସେହି ଡ଼ଙ୍ଗାରେ ପାନ, ଗୁଆ, ଲୁଣ, ମସଲା ଆଦି ଥୋଇ ପାଣିରେ ଭସାଇ ଡ଼ଙ୍ଗାକୁ ମେଳାଣି ଦେଇ କହୁଛି : ଆ କା ମା ବୈ(ଭୈଃ) ପାନ ଗୁଆ ଥୋଇ, ପାନ ଗୁଆ ତୋର ମାସକ ଧର୍ମ ମୋର ॥

**ଆ କା ମା ବୈ ର ତାତ୍ପର୍ଯ୍ୟ :** ଏହି ବଚନିକାର ଗୂଢାର୍ଥ ଭିନ୍ନ ଭିନ୍ନ ପ୍ରକାର ବ୍ୟାଖ୍ୟା କରାଯାଇଛି । ୧)ଆଷାଢରୁ କାର୍ତ୍ତିକ ମାସ ମଧ୍ୟରେ ପ୍ରତ୍ୟାବର୍ତ୍ତନ କରିବି । ଭୟ କର ନାହିଁ । ୨) ଆଏଁଳା, କାମ୍ବୋଡ଼ିଆ, ମାଳୟ, ବାଲିଦ୍ୱୀପ ଓ ଇନ୍ଦ ଦ୍ୱୀପପୁଞ୍ଜ–ଏହି ଦେଶଗୁଡ଼ିକର ପ୍ରଥମ ନାମ ଯୋଗ କଲେ ଆ–କା–ମା–ବ–ଇ(ବୈ)ସଙ୍କେତ ସୃଷ୍ଟି ହୁଏ ।

**ବାଲିଯାତ୍ରାର ଅୟମାରମ୍ଭ କାଳ :** ବାଲିଯାତ୍ରା କଥା କହିଲେ ଦୁଇ ପ୍ରକାର ଯାତ୍ରାକୁ ବୁଝାଏ । ପ୍ରଥମଟି ହେଉଛି ବାଲି ଦ୍ୱୀପପୁଞ୍ଜ ଅଭିମୁଖେ ଯାତ୍ରା ଓ ଦ୍ୱିତୀୟଟି ହେଉଛି କାଟକର କିଲା ପଡ଼ିଆରେ ଅନୁଷ୍ଠିତ ଯାତ୍ରା । କଳିଙ୍ଗର ନୌବାଣିଜ୍ୟ ଏବଂ ସାଧବ କାହାଣୀମାନ ଭରତମୁନିଙ୍କ ନାଟ୍ୟଶାସ୍ତ୍ର, କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ଏବଂ ମେଘାସ୍ଥିନିସ୍ ଭାରତ ବିବରଣୀ ଇତ୍ୟାଦିରୁ ପ୍ରତୀୟମାନ ହେଉଥିବାରୁ ଜଣାଯାଏ ଯେ ପ୍ରଥମ ବାଲିଯାତ୍ରା ବହୁ ପ୍ରାଚୀନ ଏବଂ ଖ୍ରୀଷ୍ଟପୂର୍ବୀୟ ଯୁଗରୁ ଚାଲିଥିଲା । ଐତିହାସିକ ତଥ୍ୟ ଅନୁଯାୟୀ ୨୫୦୦ ମସିହା ପୂର୍ବରୁ ପ୍ରାଚୀନ କଳିଙ୍ଗ ସାମ୍ରାଜ୍ୟ ନୌବାଣିଜ୍ୟ କ୍ଷେତ୍ରରେ ସମଗ୍ର ଭାରତରେ ପ୍ରସିଦ୍ଧି ଲାଭ କରିଥିଲା ।

ଅନେକ ଦ୍ୱୀପପୁଞ୍ଜ ଥିଲେ ମଧ୍ୟ ବାଲି ଅଭିମୁଖେ ବୋଲି କାହିଁକି ? ବାଲି ଦ୍ୱୀପପୁଞ୍ଜର ସଂସ୍କୃତି ଓଡ଼ିଶାର ସଂସ୍କୃତି ସହିତ ସର୍ବାଧିକ ସାମଞ୍ଜସ୍ୟ ରକ୍ଷା କରେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଦକ୍ଷିଣ–ପୂର୍ବ ଏସିଆର ଇଣ୍ଡୋନେସିଆ ଏକ ଗଣରାଜ୍ୟ । ଏଥିରେ ପ୍ରାୟ ୧୩,୬୭୭ ଛୋଟବଡ଼ ଦ୍ୱୀପପୁଞ୍ଜ ସମ୍ମିଳିତ ହୋଇଛି । ପ୍ରାୟ ୬୦୦୦ ଦ୍ୱୀପରେ ବସବାସ ହେଉ ନାହିଁ । ଇଣ୍ଡୋନେସିଆ ଦେଶର ଦ୍ୱୀପ ମଧ୍ୟରେ ଜାଭା, ସୁମାତ୍ରା, ବର୍ଣ୍ଣିଓ ଓ ବାଲିରେ ପ୍ରାୟ ଏକ ପ୍ରକାର ଜନଜୀବନ ଓ ଶାସନ । ଦୀର୍ଘକାଳ କଳିଙ୍ଗ ଓ ସୁଦୂର ପୂର୍ବ ଏସିଆର ଦେଶମାନଙ୍କ ମଧ୍ୟରେ କେବଳ ଯେ ବ୍ୟବସାୟ ବାଣିଜ୍ୟ କରି ସମୃଦ୍ଧ ହୋଇଥିଲା ତାହା ନୁହେଁ, କଳିଙ୍ଗର ସାଂସ୍କୃତିକ ଐତିହ୍ୟ ଓ ପରମ୍ପରା ଏବଂ ସାମାଜିକ ବ୍ୟବସ୍ଥା ଏତେ ଉନ୍ନତ ଥିଲା ଯେ କଳିଙ୍ଗମାନେ ଅନାୟାସରେ ଦକ୍ଷିଣ ପୂର୍ବ ଏସିଆରେ ସାଂସ୍କୃତିକ ସାମ୍ରାଜ୍ୟ ସ୍ଥାପନା କରିବା ସହଜ ହୋଇଥିଲା ।

ଇଣ୍ଡୋନେସିଆର ବାଲିଦ୍ୱୀପର ହିନ୍ଦୁମାନଙ୍କର ସଂସ୍କୃତି ବିଷୟରେ କୁହାଯାଏ ଯେ ସମଗ୍ର ଇଣ୍ଡୋନେସିଆରେ ୯୦ ପ୍ରତିଶତ ଲୋକ ଇସଲାମ୍‌ଧର୍ମୀ ହୋଇଥିଲା ବେଳେ ବାଲିଦ୍ୱୀପର ୯୨ ପ୍ରତିଶତ ଲୋକ ହିନ୍ଦୁ । ଭାରତକୁ ଛାଡ଼ିଦେଲେ ଏହି ବାଲିରାଜ୍ୟ ହେଉଛି ଦ୍ୱିତୀୟ ହିନ୍ଦୁ ରାଜ୍ୟ । ଏହାର ଲୋକସଂଖ୍ୟା ପ୍ରାୟ ୨୫ ଲକ୍ଷ । ବାଲିଦ୍ୱୀପରେ ସର୍ବାଧିକ କଳିଙ୍ଗବାସୀ ପ୍ରାୟ କୋଡ଼ିଏ ହଜାର ସଂଖ୍ୟାରେ ପ୍ରଥମେ ବାସ କରୁଥିଲେ । ବାଲି ସର୍ବାଧିକ ଅଧିକ ଧନ୍ୟଧାନ୍ୟ ଦ୍ୱୀପ ଥିଲା । କଳିଙ୍ଗର ଏହି ବଂଶଧରମାନେ ଦୀର୍ଘକାଳ ଧରି ସେଠାରେ ବସବାସ

କରି ସେ ଦେଶର ନାଗରିକ ହୋଇଛନ୍ତି । ଦେଶମାତୃକାର ବିକାଶ କଳ୍ପେ କାୟମନୋବାକ୍ୟରେ କାର୍ଯ୍ୟ କରୁଛନ୍ତି । କିନ୍ତୁ ସେମାନଙ୍କର ମୂଳ ମାତୃଭୂମିର ଧର୍ମ ଓ ସଂସ୍କୃତିକୁ ଛାଡ଼ି ନାହାଁନ୍ତି । ପରବର୍ତ୍ତୀ କାଳରେ ଧର୍ମ ପରିବର୍ତ୍ତନ ମଧ୍ୟ କରି ନାହାଁନ୍ତି । ସେମାନଙ୍କର ଆଚାର ବ୍ୟବହାରରୁ କଳିଙ୍ଗ ସଂସ୍କୃତିର ଛାପ ଲିଭି ଯାଇନାହିଁ । ଏହା ବ୍ୟତୀତ ବାଲିର ଲୋକଙ୍କ ଦୈନନ୍ଦିନ ଚଳଣି ଆଚାର ବିଚାର ଓ ଓଡ଼ିଶାବାସୀଙ୍କ ଚଳଣି, ଆଚାର ବିଚାର ମଧ୍ୟରେ ଅନେକ ସାମଞ୍ଜସ୍ୟ ଥିବା ଦେଖାଯାଏ । ସେ ଦେଶରେ ମା'ଙ୍କୁ ବୋଉ, ବାପାଙ୍କୁ ବୋପା କୁହାଯାଏ । ଗୁଆକୁ ଗୁଆ ବା ଚୁଆ । ମୃତ୍ୟୁପରେ ଦ୍ୱାଦଶ ଦିନ ପର୍ଯ୍ୟନ୍ତ ଯେପରି ଅନ୍ତ୍ୟେଷ୍ଟି କରାଯାଏ ବାଲିରେ ମଧ୍ୟ ସେପରି ପ୍ରଥା ରହିଛି । ଦ୍ୱାଦଶ ଦିନ କ୍ରିୟା ସମାପ୍ତ ହେଲା ପରେ ଆତ୍ମା ମୁକ୍ତ ହୁଏ ବୋଲି ସେମାନଙ୍କର ବିଶ୍ୱାସ । ହିନ୍ଦୁ ସଂସ୍କୃତି ସମଗ୍ର ଇଣ୍ଡୋନେସିଆର ଜାତୀୟ ସମ୍ପତ୍ତି ଓ ଜୀବନ ଧାରା । ଇସଲାମ୍ ଇଣ୍ଡୋନେସିଆରେ ପ୍ରବେଶ କରିବା ପୂର୍ବରୁ ହିନ୍ଦୁ ଓ ବୌଦ୍ଧ ସଂସ୍କୃତି ଧର୍ମଧାରା ସେ ଦେଶର ଲୋକାଚାରକୁ ଅଧିକ ସ୍ପନ୍ଦିତ ଓ ମହିମାନ୍ୱିତ କରିଥିଲା । ଏହି କାରଣରୁ ବୌଦ୍ଧମାନଙ୍କୁ ସେ ଦେଶରେ ହିନ୍ଦୁ ବୋଲି ଧରିନିଆଯାଏ । ଇଣ୍ଡୋନେସିଆର ଜାତୀୟ ଭାଷା ଯାହା ମାଲେସିଆ ଓ ସିଙ୍ଗାପୁରର ଜାତୀୟ ଭାଷା ମଧ୍ୟ ସେଇଆ ଓ ତାହା ହେଉଛି ସଂସ୍କୃତ ଭାଷା । ଧର୍ମ ଭିତରେ ଅପୂର୍ବ ସମନ୍ୱୟ ଥାଏ । ଏଠାରେ ମନ୍ଦିର ବା ମସଜିଦ୍‌ମାନଙ୍କରେ କୌଣସି ମୂର୍ତ୍ତି ନାହିଁ । ଏମାନେ ଈଶ୍ୱରବିଶ୍ୱାସୀ । ଶ୍ରୀରାମଚନ୍ଦ୍ରଙ୍କୁ ଏଠାରେ ସଂସ୍କୃତିର ପ୍ରେରଣା ପୁରୁଷ । ବାଲି ଦ୍ୱୀପରେ ତିନି ଦେବତା ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ପୂଜା କରାଯାଏ । ଦେବତା ବିଶ୍ୱାସ ଏମାନଙ୍କର ଆଚରଣକୁ ପରିମାର୍ଜିତ କରିପାରିଛି । ଏଠାରେ ନ୍ୟାୟପୂର୍ଣ୍ଣ ବିଚାର ଓ ଉପଯୁକ୍ତ ମନୁଷ୍ୟତ୍ୱ ଉପରେ ଗୁରୁତ୍ୱ ଆରୋପ କରାଯାଏ । ସଂସଦ ସଦସ୍ୟମାନେ ବୁଦ୍ଧିମାନ୍, ଭାଷଣ ଓ ସର୍ବୋପରି ମହତ ଚରିତ୍ରର ବ୍ୟକ୍ତି ହିସାବରେ ସମସ୍ତଙ୍କର ପ୍ରିୟଭାଜନ ହୋଇଥାନ୍ତି । ଅଧିବାସୀମାନେ ପୂର୍ବଜନ୍ମରେ ବିଶ୍ୱାସୀ । ବହୁ ପ୍ରାଚୀନ କାଳରୁ ମହର୍ଷି ଅଗସ୍ତ୍ୟ, ମାର୍କଣ୍ଡ ଓ ଅନ୍ୟ କେତେକ ମହର୍ଷି ଭାରତରୁ ବାଲିକୁ ଯାତ୍ରା କରି ସେଠାରେ ନିଜର ଉପସ୍ଥଳ ବାଛି ନେଇଥିଲେ । ବାଲିର ଲୋକେ ବାଲିକୁ ସ୍ୱର୍ଗର ନିକଟତମ ସ୍ଥାନ ବୋଲି ଜାଣନ୍ତି । ସମଗ୍ର ଇଣ୍ଡୋନେସିଆରେ ରାମାୟଣ ଓ ମହାଭାରତ ଏବଂ ଭାରତୀୟ ଲୋକକଥା ଖୁବ୍ ଜନପ୍ରିୟ । ଇଣ୍ଡୋନେସିଆର ବାଲି ହେଉଛି ଏକ ପ୍ରଧାନ ଆକର୍ଷଣୀୟ ପର୍ଯ୍ୟଟନ କେନ୍ଦ୍ର । ଏଠାରେ ସହର ଅଛି ଗାଁ ବି ଅଛି । ବାଲି ପରି ଅନ୍ୟ ଦ୍ୱୀପପୁଞ୍ଜମାନଙ୍କ ସହ ଓଡ଼ିଶାର ସାଂସ୍କୃତିକ ସମ୍ପର୍କ ମଧ୍ୟ ଉଲ୍ଲେଖନୀୟ ଅଟେ । ସଂହଳର ରାଜା ଅପୁତ୍ରିକ ହେଲେ ଓ ତାଙ୍କର ପୋଷ୍ୟପୁତ୍ର ଗ୍ରହଣ କରିବା ଆବଶ୍ୟକ ହେଲେ ସେ ଏକମାତ୍ର କଳିଙ୍ଗ ରାଜବଂଶରୁ ପୋଷ୍ୟପୁତ୍ର ଗ୍ରହଣ କରିବେ ।

**ବ୍ରହ୍ମପୁତ୍ର ଓ ଜାଭାରେ କଳିଙ୍ଗର ସମ୍ପର୍କ:** ବ୍ରହ୍ମଦେଶ ଓ ଜାଭାଦ୍ୱୀପର ଉପକୂଳ ଅଞ୍ଚଳର ପ୍ରାଚୀନ କଳା ଓ ସ୍ଥାପତ୍ୟ ଓଡ଼ିଶାର ଅଧିବାସୀଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲା । ଏଠାରେ ଅଦ୍ୟାପି ଶିବ, ବ୍ରହ୍ମା ବିଷ୍ଣୁଙ୍କ ମନ୍ଦିରମାନଙ୍କର ଧ୍ୱଂସାବଶେଷ ପରିଦୃଷ୍ଟ ହୁଏ । ପୁନଶ୍ଚ ଜାଭାରେ ମହାଦେବ, ଦୁର୍ଗାଙ୍କ ମୂର୍ତ୍ତି ମିଳୁଛି । ଅର୍ଜୁନ ବିବାହ, ଭାରତ ଯୁଦ୍ଧ, ରାମାୟଣ ଓ ବୌଦ୍ଧଜାତକ ଗ୍ରନ୍ଥ ଏବେ ଜାଭା ଦ୍ୱୀପରେ ପ୍ରାଚୀନ ସାହିତ୍ୟରେ ସ୍ଥାନ ଲାଭ କରିଛି ।

**ପ୍ରାଚୀନ ନୌଯାତ୍ରା ଓଡ଼ିଶାର ଐତିହାସିକ ଦସ୍ତାବିଜ :** ପ୍ରାଚୀନ କଳିଙ୍ଗର ସାମୁଦ୍ରିକ ନୌଯାତ୍ରା ଓ କାଳଜୟୀ ବହିର୍ବାଣିଜ୍ୟର ସମୃଦ୍ଧ ପରମ୍ପରା ବିଶ୍ୱବନ୍ଦନୀୟ । ଏହା ଭାରତ ଇତିହାସରେ ଅନନ୍ୟ ଓ ଏକଚାଟିଆ । ଅନ୍ୟ ପ୍ରଦେଶଗୁଡ଼ିକ ସମୁଦ୍ର ଉପକୂଳରେ ଥିଲେ ମଧ୍ୟ ଭାରତ ମହାସାଗରର ଉତ୍ତାଳ ତରଙ୍ଗମାଳାରେ ପାଲଟଣା ଜାହାଜରେ ଏପରି ଦୁଃସାହସିକ ନୌବାଣିଜ୍ୟ କରିବାର ଶ୍ରେୟ କେବଳ ଉତ୍କଳୀୟଙ୍କୁ ହିଁ ମିଳିଥାଏ । ସେମାନେ ସାତସମୁଦ୍ର ତେର ନଈ ପାରି ହୋଇ ଯେପରି ବିଦେଶରେ ନିଜର ପତିଆରା ବିସ୍ତାର କରି ପାରିଥିଲେ ତାହା ଆଜି ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ବାଣିଜ୍ୟ କରିବା ସହିତ ନିଜ ଦେଶର ସଂସ୍କୃତି, ସାହିତ୍ୟ ଓ ଧର୍ମର ମହତ୍ତ୍ୱ ପ୍ରକଟିତ କରି ଅତ୍ୟନ୍ତ ପ୍ରଭାବଶାଳୀ ହୋଇ ପାରିଥିଲେ । ଆଜି ବି ଦରିଆ ସେପାରିରେ ଉତ୍କଳୀୟ ସଂସ୍କୃତିର ଛାପ

ଦେଖିଲେ ଗର୍ବରେ ଛାତି ଫୁଲିଉଠେ । ସନାତନ ଶାସ୍ତ୍ରରେ ସମୁଦ୍ର ଯାତ୍ରା ପତନଯୋଗ୍ୟ ଓ ନିଷିଦ୍ଧ ଥିଲା । ଧର୍ମସୂତ୍ରରେ ଯେଉଁ ପଞ୍ଚାବନଟି ପଦାର୍ଥ 'କଳିବର୍ଜ୍ୟ' ବୋଲି କୁହାଯାଇ ନିଷିଦ୍ଧ କରାଯାଇଛି, ତନ୍ମଧ୍ୟରୁ ସମୁଦ୍ରଯାତ୍ରା ଅନ୍ୟତମ । ତେବେ ଏହି ଶାସ୍ତ୍ରୀୟ ନିଷେଧାଜ୍ଞାକୁ ଅମାନ୍ୟ କରି ପ୍ରାଚୀନ କଳିଙ୍ଗର ଅଭିଜ୍ଞ ନାବିକ ଓ ସାଧବଗଣ ବଙ୍ଗୋପସାଗର ଓ ଭାରତ ମହାସାଗର ବକ୍ଷରେ ପୋତ ଚାଳନା କରି ଦକ୍ଷିଣ-ପୂର୍ବ ଏସୀୟ ରାଷ୍ଟ୍ରଙ୍କ ଉପରେ ବାଣିଜ୍ୟିକ ଓ ସାଂସ୍କୃତିକ ଆଧିପତ୍ୟ ଜାହିର କରିଥିଲେ । ତେଣୁ ମହାକବି କାଳିଦାସ ରଘୁବଂଶରେ କଳିଙ୍ଗର ରାଜାଙ୍କୁ 'ମହୋଦଧିପତି'ଅର୍ଥାତ ସମୁଦ୍ରର ରାଜା ବୋଲି ବର୍ଣ୍ଣନା କରିଛନ୍ତି । ପୁନଶ୍ଚ କଳିଙ୍ଗ ଜାତି ଓ ଜୀବନରେ ଦୁର୍ଦ୍ଧର୍ଷ ପଣିଆ ସମଗ୍ର ପୃଥିବୀରେ ତାକୁ 'କଳିଙ୍ଗାଃ ସାହସିକାଃ' ରୂପେ ମର୍ଯ୍ୟାଦାବନ୍ତ କରିପାରିଥିଲା । କଳିଙ୍ଗମାନେ ବଙ୍ଗୋପସାଗରକୁ ସେମାନଙ୍କର ଚରାଭୂଇଁରେ ପରିଣତ କରି ଦେଇଥିବାରୁ ବଙ୍ଗୋପସାଗରକୁ 'କଳିଙ୍ଗସାଗର' ବୋଲି କୁହାଯାଉଥିଲା । ସାରଳା ଦାସଙ୍କ ମହାଭାରତ, ଉପେନ୍ଦ୍ରଭଞ୍ଜଙ୍କ ଲାବଣ୍ୟବତୀ, ଦୀନକୃଷ୍ଣଙ୍କ ରସକଲ୍ଲୋଳ ଆଦି ପ୍ରାଚୀନ ଗ୍ରନ୍ଥରେ ନୌବାଣିଜ୍ୟ ସହ ସମ୍ପୃକ୍ତ ବୋଇତ, ସାଧବ, ସାଧବାଣୀ, ମଙ୍ଗ, ନାବିକ, ଶ୍ରୀଲଙ୍କା, ଜାଭା, ବାଲି, ସୁବର୍ଣ୍ଣ ଦ୍ୱୀପ ଆଦି ଶବ୍ଦର ବହୁଳ ପ୍ରୟୋଗ କରାଯାଇଥିବା ପରିଲକ୍ଷିତ ହୁଏ । ତାହାଛଡ଼ା ଓଡ଼ିଶାର କାହାଣୀ ଓ ବ୍ରତକଥାମାନଙ୍କରେ ମଧ୍ୟ ଜଳଯାତ୍ରାର ସ୍ମୃତି ବିଜଡ଼ିତ । ତଅପୋଇର କହାଣୀ ତନ୍ମଧ୍ୟରୁ ଅନ୍ୟତମ । ସୁତରାଂ ନୌବାଣିଜ୍ୟ ସାହାଯ୍ୟରେ ପ୍ରାଚୀନ ଓଡ଼ିଶାରେ ଏକ ଧନିକ ଗୋଷ୍ଠୀର ସୂତ୍ରପାତ ଘଟିଥିଲା ।

**କଳିଙ୍ଗ ନାମର ଯଥାର୍ଥ୍ୟ :** ପ୍ରାଚୀନ ଓଡ଼ିଶାକୁ କାହିଁକି କଳିଙ୍ଗ କୁହାଯାଉଥିଲା ସେ ବିଷୟଟି ଅତ୍ୟନ୍ତ କୌତୁହଳପୂର୍ଣ୍ଣ ଅଟେ । ଅଶୋକଙ୍କ କଳିଙ୍ଗ ବିଜୟ ପୂର୍ବରୁ ଦକ୍ଷିଣପୂର୍ବ ଏସିଆର ବିଭିନ୍ନ ଅଞ୍ଚଳର ଅଧିବାସୀମାନେ କଳିଙ୍ଗ ସହ ଏତେ ଘନିଷ୍ଠ ହୋଇଯାଥିଲେ ଯେ ନିଜକୁ 'କଳିଙ୍ଗ'ବା 'କ୍ଲିଙ୍ଗ' ବୋଲି ପରିଚୟ ଦେଇଥାନ୍ତି । ଜାଭାଦ୍ୱୀପରୁ ମିଳିଥିବା ଶିଳାଲେଖରୁ 'କ୍ଲିଙ୍ଗ' ଶବ୍ଦ ପ୍ରଭୃତି ପ୍ରାଚୀନ କଳିଙ୍ଗ ଶବ୍ଦର ଅପଭ୍ରଂଶ ବ୍ୟତୀତ ଅନ୍ୟ କିଛି ନୁହେଁ । ପ୍ରାଚୀନ କଳିଙ୍ଗରେ କଳି ସଂପ୍ରଦାୟ ଲୋକ ବସତି ସ୍ଥାପନ କରିବା ଏବଂ ତାଙ୍କ ଦ୍ୱାରା ଲିଙ୍ଗ ଉପାସନାର ପ୍ରସାର ଘଟିବା ହିଁ ପରବର୍ତ୍ତୀ ସମୟରେ ଏହି ରାଷ୍ଟ୍ରକୁ କଳିଙ୍ଗ (କଳି ଲିଙ୍ଗ)ଆଖ୍ୟାୟିତ କରିବା ଯଥାର୍ଥ ମନେ ହୁଏ । ପରେ ପରେ କଳିଙ୍ଗ କଳାର ଉତ୍କର୍ଷ ହେତୁ ଉତ୍କଳ ବା ଉତ୍କଳିଙ୍ଗ ଓ ତ୍ରିକଳିଙ୍ଗ ହେବା ଯୁକ୍ତିସମ୍ମତ ।

ଐତିହାସିକମାନେ କହନ୍ତି କଳିଙ୍ଗ ସାମ୍ରାଜ୍ୟର ଅଭ୍ୟୁଦୟ ଓ ଅସ୍ତିତ୍ୱ ଖ୍ରୀଷ୍ଟ ପୂର୍ବ ସାତ ଶହ ବର୍ଷରୁ ଖ୍ରୀଷ୍ଟାବ୍ଦ ୧୫୬୮ ପର୍ଯ୍ୟନ୍ତ ଦୀର୍ଘ ବାଇଶି ଶହ ପଚାଶ ବର୍ଷ ପର୍ଯ୍ୟନ୍ତ ଥିଲା । ଏହି ଇତିହାସ ଯେତିକି ରୋମାଞ୍ଚକର ସେତିକି ଘଟଣାବହୁଳ । କଳିଙ୍ଗର ବେଳାଭୂମି ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ସୁବିସ୍ତୃତ ଥିଲା । ଏହି ବେଳାଭୂମିରେ ପ୍ରାଚୀନ ଉତ୍କଳର ପ୍ରସିଦ୍ଧ ପୋତାଶ୍ରୟ ମଧ୍ୟରେ ପାଲୁର ତାମ୍ରଲିପ୍ତ କଳିଙ୍ଗ ନଗର ଆଦି ପ୍ରମୁଖ ଥିଲା । ସେତେବେଳେ ପାଲଟଣା ବୋଇତମାନ ଲହରୀଘେରା ଚକ୍ରବାଳ ସୀମାରୁ ଭାସି ଆସୁଥିବାର ଦେଖି ସୁବର୍ଣ୍ଣ ଦ୍ୱୀପର ଅଧିବାସୀମାନେ ଭାବୁଥିଲେ ଯେ କଳିଙ୍ଗର ଲୋକମାନେ ନୀଳ ଆକାଶରୁ ଧରାପୃଷ୍ଠକୁ ଓହ୍ଲାଇ ଆସୁଛନ୍ତି । ତେଣୁ ସେମାନେ କଳିଙ୍ଗବାସୀଙ୍କୁ ଭୟ ଓ ବିସ୍ମୟ ଦୃଷ୍ଟିରେ ଦେଖୁଥିଲେ । କେତେକ କଳିଙ୍ଗର ବୋଇତଜୀବୀଙ୍କୁ ସମୁଦ୍ରର ସର୍ପ ବୋଲି ବର୍ଣ୍ଣନା କରିଛନ୍ତି । ବଙ୍ଗୋପସାଗରରେ କଳିଙ୍ଗମାନଙ୍କର ଆଧିପତ୍ୟ ଅନୁଭବ କରି ସେହି ସାଗରକୁ କଳିଙ୍ଗସାଗର ବୋଲି କୁହାଯାଉଥିଲା । କଳିଙ୍ଗସାଗରର ଚତୁର୍ଦ୍ଦିଗରେ କଳିଙ୍ଗ ସାମ୍ରାଜ୍ୟ ଗଢି ଉଠିଥିଲା ।

ଦୁଇ ଦେଶ ମଧ୍ୟରେ ବାଣିଜ୍ୟିକ ଓ ସାଂସ୍କୃତିକ ସମ୍ପର୍କ ବୃଦ୍ଧି ପାଇବାରୁ କ୍ରମଶଃ ଜାଭା ଓ ବାଲିଦ୍ୱୀପରେ କଳିଙ୍ଗମାନଙ୍କ ପ୍ରଭାବ ମଧ୍ୟ ବୃଦ୍ଧି ପାଇଲା । କଳିଙ୍ଗରୁ ବାଣିଜ୍ୟ କରିବା ପାଇଁ ସାଧବମାନଙ୍କ ସହିତ ବ୍ରାହ୍ମଣ ଓ ଅନ୍ୟ ଜାତିର ଲୋକମାନେ ମଧ୍ୟ ଇଣ୍ଡୋନେସିଆକୁ ଯାଇଥିଲେ । କୁହାଯାଏ ଯେ କଳିଙ୍ଗ ରାଜକୁମାର କୋଡ଼ିଏ ହଜାର ପରିବାରକୁ ଜାଭାକୁ ପଠାଇଥିଲେ । ଇଣ୍ଡୋନେସିଆ ଟାଙ୍ଗ ରାଜବଂଶର ଇତିହାସରୁ ଜଣାଯାଏ ଯେ କେନ୍ଦ୍ର ଜାଭାରେ ସେମାନେ କଳିଙ୍ଗ ରାଜ୍ୟ ସ୍ଥାପନ କରିଥିଲେ । ସପ୍ତମ ଶତାବ୍ଦୀ ବେଳକୁ ଜାଭା ଏକ ବିରାଟ ବୌଦ୍ଧ ସଂସ୍କୃତିର କେନ୍ଦ୍ର ଭାବେ ଗଢି ଉଠିଥିଲା । ଦଶମ ଏକାଦଶ

ଶତାବ୍ଦୀ ବେଳକୁ ଗୁଜରାଟର ମୁସଲମାନ ବଣିକମାନେ ଇଣ୍ଡୋନେସିଆ ଆସିଥିବାର ଅନୁମାନ କରାଯାଏ । ଫାଲଗୁନାଡ଼ି କହନ୍ତି ଯେ ସେ ଦେଶରେ ସମସ୍ତେ କଳିଙ୍ଗକୁ ଓଡ଼ିଶା ଜାଣିଥିଲେ । ସେହି କାଳରୁ ଓଡ଼ିଶାରେ ରାସପୂର୍ଣ୍ଣିମା ଦିନ ପାଳନ କରାଯାଉଥିବା ଡ଼ଙ୍ଗା ବନ୍ଦାଣ ଉତ୍ସବ ଏପର୍ଯ୍ୟନ୍ତ କେବଳ ଓଡ଼ିଶାରେ ଏକ ପବିତ୍ର ଉତ୍ସବ ଭାବେ ପାଳିତ ହେଉ ନାହିଁ, ବାଲି ଜାଭା ଅଞ୍ଚଳରେ ମଧ୍ୟ ତାହା ପାଳିତ ହେଉଛି । ଛୋଟ ଛୋଟ ଡ଼ଙ୍ଗାରେ ପାନଗୁଆ, ଫଳମୂଳ ସହିତ ଦୀପ ରଖି ସମୁଦ୍ରରେ ଭସାଇ ଦେବା ପରମ୍ପରା ସେମାନେ ମଧ୍ୟ ପାଳନ କରି ଆସୁଛନ୍ତି ଏପର୍ଯ୍ୟନ୍ତ । କଳିଙ୍ଗ ଯେ ଭାରତର ଏକ ଅଂଶ ଏହା ପରେ ପରେ ସାଧାରଣ ଲୋକ ଜାଣିବାକୁ ପାଇଲେ । ମହାନଦୀ ଏକ ପବିତ୍ର ନଦୀ ଭାବେ ଏବେବି ସେମାନଙ୍କ ସ୍ତୋତ୍ରରୁ ଜଣାଯାଏ: ଓମ୍ ଗଙ୍ଗା, ସିନ୍ଧୁ, ସରସ୍ୱତୀ, ବିପାଶା, କୌଶିକୀ ନଦୀ, ଯମୁନା , ମହାନଦୀ ଶ୍ରେଷ୍ଠା ସରଜୁ ମହତି ।

**ନୌବାଣିଜ୍ୟର ପ୍ରମୁଖ ପଣ୍ୟ ଦ୍ରବ୍ୟ :** ଓଡ଼ିଆ ସାଧବ ପୁଅମାନେ ଓଡ଼ିଶାର ବିଭିନ୍ନ କାରିଗରୀ ଶିଳ୍ପ ସାମଗ୍ରୀ, ରେଶମ– କାର୍ପାସ– ସୂକ୍ଷ୍ମ ପାଟବସ୍ତ୍ର,ମଠା, ହାତୀଦାନ୍ତର ସୂକ୍ଷ୍ମ କାରୁକାର୍ଯ୍ୟ ଖଚିତ ମହାର୍ଘ ଅଳଙ୍କାର, ମଣିମୁକ୍ତାମଣ୍ଡିତ ଅଳଙ୍କାର, ସ୍ୱର୍ଣ୍ଣ ଓ ରୌପ୍ୟ ନିର୍ମିତ ଅଳଙ୍କାର, ଭେଷଜ୍ୟ ଓ ରାସାୟନିକ ଦ୍ରବ୍ୟ, ସୁସ୍ୱାଦୁ ଖାଦ୍ୟ, ତାମ୍ବୁଳ(ପାନ), ପାନୀୟ(ମଦ), ମୃତ୍ତିକା ଆଦି ଦୁର୍ଲ୍ଲଭ ପଦାର୍ଥ, ମୃତ୍ତିକା, ନିର୍ମିତ ଖେଳନା, ପିତଳ ଓ କାଂସ୍ୟ ନିର୍ମିତ ପାତ୍ର, ହାତୀଦାନ୍ତ, କାଠନିର୍ମିତ ମୂଲ୍ୟବାନ ଉପକରଣ ଓ ଚାନ୍ଦୁଆ, ବିଭିନ୍ନ ରଙ୍ଗର ମୌଳିକ ଖଣିଜ ପଦାର୍ଥ, କସ୍ତୁରୀ ଚନ୍ଦନ ଓ କର୍ପୂର ପ୍ରଭୃତି ଦେଶୀୟ ଶିଳ୍ପ ସାମଗ୍ରୀ ନେଇ ବିଦେଶରେ ବିକ୍ରୟ କରି ବହୁ ଧନରତ୍ନ ସ୍ୱଦେଶକୁ ବୋହି ଆଣୁଥିଲେ । ସେମାନେ ବିଦେଶରୁ ସୁନା, ରୂପା, ମୋତି ମାଣିକ୍ୟ, ମୁକ୍ତା, ଅଗୁରୁ ଓ ଗୁଆ, ଲବଙ୍ଗ, ଅଳେଇଚ, ଗୁଜୁରାତି ଆଦି ମସଲା, ବୋଇତାଳୁ (ବୋଇତ କଖାରୁ), ଲଙ୍କାମରିଚ ଓ ବିଲାତି ଆଳୁ ପ୍ରଭୃତି ଆଣୁଥିଲେ । ପ୍ରାଚୀନ ଯୁଗରେ ଅନ୍ୟାନ୍ୟ ପଣ୍ୟଦ୍ରବ୍ୟ ସହିତ କଳିଙ୍ଗ ଓ କୋଙ୍ଗଦ (ଅବିଭକ୍ତ ଗଞ୍ଜାମ ଓ ପୁରୀ ଜିଲା)ର ହସ୍ତୀମାନଙ୍କୁ ଗଞ୍ଜାମର ବନ୍ଦରରୁ ବୋଇତରେ ବୋହି ସିଂହଳ ସମେତ ବିଭିନ୍ନ ଦରିଆପାରି ଦେଶକୁ ରପ୍ତାନି କରାଯାଉଥିଲା । ତେବେ ସପ୍ତଦଶ ଶତାବ୍ଦୀରେ ଗଞ୍ଜାମ ବନ୍ଦରରୁ ମୁଖ୍ୟତଃ ଚାଉଳ, ଆଖୁ, ଜଙ୍ଗଲଜାତ ଦ୍ରବ୍ୟ, ସାଲେମ ପୁରୀ ସ୍ଥାନ ଆଦି ବିଦେଶ ପଠାଯାଉଥିଲା ।

ନିଜ ଆଚରଣରେ ସାଧୁତା ବଜାୟ ରଖୁଥିବାରୁ ସାଧବ ଶବ୍ଦର ସୃଷ୍ଟି । ପୁନଶ୍ଚ କାର୍ତ୍ତିକ ମାସରେ ସାଧବପୁଅମାନେ ବିଦେଶରୁ ବହିର୍ବାଣିଜ୍ୟ କରି ଯେଉଁ ବିଭିନ୍ନ ସାମଗ୍ରୀ ସବୁ ସ୍ୱଦେଶକୁ ଆଣୁଥିଲେ ତାହା ଏଠାରେ କିଣାବିକା ହେଉଥିଲା । ଏହି ରପ୍ତାନି ଦ୍ରବ୍ୟର ତାଲିକା ବହୁତ ଲମ୍ବା । ବ୍ରହ୍ମପୁରର ଜରିଦିଆ ପାଟ, ଖିଚିଂର କଳା ମୁଗୁନି ପଥର ତିଆରି ସାମଗ୍ରୀ ପାଇବା ପାଇଁ ଓଡ଼ିଆ ସାଧବପୁଅର ବାଟକୁ ଲବଙ୍ଗ ଦ୍ୱୀପର ସୁକୁମାରୀ କନ୍ୟା ଅନାଇ ରହିଥାଏ । ବାସ୍ତବରେ ଓଡ଼ିଶାର ପାଟ, ଟସର, ରେଶମ ଲୁଗା ସବୁ ବିଦେଶରେ ବ୍ୟାପକ ଭାବରେ ବିକ୍ରୟ କରାଯାଉଥିଲା । ଏହି ନଳିଝିନ ବସ୍ତ୍ର ଗୋଟିଏ ଗୋଟିଏ ସରୁ ବାଉଁଶ ନଳୀ ମଧ୍ୟରେ ରହିପାରୁଥିବାର ପ୍ରମାଣ ରହିଛି ।

**ନୌବାଣିଜ୍ୟର ପ୍ରକୃଷ୍ଟ ମାସ କାର୍ତ୍ତିକ :** କାର୍ତ୍ତିକ ମାସ ବେଳକୁ ବର୍ଷା ଛାଡ଼ି ଯାଇଥାଏ । ଆକାଶ ମେଘମୁକ୍ତ ଥାଏ । ପବନ ବହିବା କମି ଯାଇଥାଏ । ଝଡ଼ ତୋଫାନର ଆଶଙ୍କା ନଥାଏ । ଏଣେ ବର୍ଷାକାଳୀନ ଚାଷବାସ ସରି ଯାଇଥାଏ । କାର୍ତ୍ତିକ ମାସ ବେଳକୁ ନଈରେ ବନ୍ୟା ନଥାଏ । କିନ୍ତୁ ବଡ଼ ବଡ଼ ଜାହାଜ ନଈ ସୁଅରେ ସମୁଦ୍ରକୁ ଯିବା ନିମନ୍ତେ ଯଥେଷ୍ଟ ଜଳସ୍ରୋତ ଥାଏ । କାର୍ତ୍ତିକ ମାସର ପୂର୍ଣ୍ଣିମା ଦିନ ଶୁଭ ସକାଳୁ ସମସ୍ତ ସାଧବ ପୁଅମାନେ ଗଡ଼ଗଡ଼ିଆ ଘାଟଠାରେ ଏକାଠି ହୁଅନ୍ତି । ସାଙ୍ଗରେ ଥାଏ ଅନେକ ଦୁର୍ଲ୍ଲଭ ପଣ୍ୟଦ୍ରବ୍ୟରେ ଭରା ଜାହାଜମାନ । ବିପଦ ସଂକୁଳ ଅନନ୍ତ ସାଗର ଯାତ୍ରାକୁ ଭୟ ନକରି କର୍ତ୍ତବ୍ୟର ଅନୁରୋଧରେ ସେମାନେ ବାହାରି ପଡୁଥିଲେ । ସେମାନଙ୍କର ଏହି ଦୁଃସାହସକୁ ପ୍ରଚୁର ଉତ୍ସାହ ଓ ସମର୍ଥନ ମିଳୁଥିଲା । ବିଦେଶ ଯାତ୍ରା ପାଇଁ ଏକ ପୁଣ୍ୟ ସମୟ ନିର୍ବାଚନ କରି ଯାତ୍ରା ଆରମ୍ଭ କରିବା ପ୍ରାଚୀନ କାଳରୁ ପ୍ରଚଳିତ ହୋଇ ଆସୁଛି । ଏଥିପାଇଁ ମାହେନ୍ଦ୍ର ବେଳା ବୋଲି ଚିନ୍ତା କରାଯାଇ ଜ୍ୟୋତିଷଶାସ୍ତ୍ରର ଉପଯୁକ୍ତ

ପରାମର୍ଶ ନିଆଯାଇଥାଏ । ଏହି ଧାର୍ଯ୍ୟ ସମୟରେ ଉତ୍କଳୀୟ ସାଧବ ପୁଅମାନେ ବାଣିଜ୍ୟ ପୋତ ଅନନ୍ତ ସାଗର ବକ୍ଷରେ ମେଲି ଦେବାପାଇଁ ପ୍ରସ୍ତୁତ ହୋଇ ଯାଉଥିଲେ । ସେତିକି ବେଳେ ସାଧବ ବୋହୂମାନେ ଧୂପ ଦୀପ ନୈବେଦ୍ୟ ଅର୍ପଣ ପୂର୍ବକ ବୋଇତ ବନ୍ଦାପନା କରି ସାଧବ ପୁଅମାନଙ୍କୁ ତାମ୍ବୁଳ, ଅକ୍ଷତ ଓ ତିଳଫୁଲ, ଚନ୍ଦନ ଓ ସିନ୍ଦୂର ଦେଇ ବିଦାୟ ସମ୍ବର୍ଦ୍ଧନା ଜଣାଉଥିଲେ । ସେଠାରେ ଶୋକ ଓ ଆନନ୍ଦର ଏକ ଭାବୋଚ୍ଛ୍ୱାସ ଖେଳି ଯାଉଥିଲା ।

**ବାଲିଯାତ୍ରା ନାମର ସାର୍ଥକତା :** ସାଧବ ପୁଅମାନେ ବାଲିଦ୍ୱୀପ ପ୍ରଭୃତି ବହିଃଦୀପପୁଞ୍ଜମାନଙ୍କୁ ବାଣିଜ୍ୟ ଓ ଉପନିବେଶ ସ୍ଥାପନ କରିବା ଉଦ୍ଦେଶ୍ୟରେ ମହାନଦୀର ଗଡ଼ଗଡ଼ିଆ ଘାଟଠାରୁ ଯାତ୍ରା ଆରମ୍ଭ କରୁଥିବାରୁ ଏହି ଐତିହାସିକ ଯାତ୍ରାର ନାମ ବାଲିଯାତ୍ରା ବୋଲି କୁହାଯାଉଛି । କଟକର ମହାନଦୀ ବକ୍ଷର ବାଲି ଉପରେ ଏହି ଯାତ୍ରା ଅନୁଷ୍ଠିତ ହେଉଥିବାରୁ ଏହାର ନାମ ବାଲିଯାତ୍ରା । ଯାତ୍ରାର ଗୋଟିଏ ଅର୍ଥ ହେଉଛି ନାଟ । ବାଲିଯାତ୍ରା ମହୋତ୍ସବ ବେଳେ ଓଡ଼ିଶାର ବିଭିନ ପ୍ରକାର ଲୋକନାଟ, ଯାତ୍ରା, ସୁଆଙ୍ଗ ପରି ସାଂସ୍କୃତିକ କାର୍ଯ୍ୟକ୍ରମ ଏକ ସପ୍ତାହ ଧରି ପରିବେଷଣ କରାଯାଏ । ତେଣୁ ବାଲି ଉପରେ ଯାତ୍ରା ବାଲିଯାତ୍ରା । ଯାତ୍ରାର ଅନ୍ୟ ଗୋଟିଏ ଅର୍ଥ ଗମନ । କୁହାଯାଉଛି ବୈଷ୍ଣବ ଧର୍ମର ପ୍ରଚାରକ ଓ ପ୍ରବର୍ତ୍ତକ ଶ୍ରୀଚୈତନ୍ୟ ୧୫୧୦ ମସିହାରେ ପ୍ରଥମେ କାର୍ତ୍ତିକ ପୂର୍ଣ୍ଣିମା ଦିନ ଗଡ଼ଗଡ଼ିଆ ଘାଟକୁ ଆଗମନ କରିଥିଲେ । ସେଠାରେ ସଂକୀର୍ତ୍ତନ ଆରମ୍ଭ କରି ବାଲିରେ ଚାଲି ଚାଲି ଶ୍ରୀକ୍ଷେତ୍ରକୁ ଗମନ କରିଥିଲେ । ତେଣୁ ବାଲିଯାତ୍ରା ବୋଲି ନାମକରଣ । ତୃତୀୟରେ କଟକରେ ମହାନଦୀରେ ପଥର ବନ୍ଧ ହେବା ପୂର୍ବରୁ ବାଲିବନ୍ଧ ଥିଲା । ଏହି ବନ୍ଧରେ ଧବଳେଶ୍ୱରଙ୍କ ବାଲୁକାମୂର୍ତ୍ତି ବାଲୁଙ୍କେଶ୍ୱର ନିର୍ମାଣ କରି ପୂଜା କରୁଥିଲେ । ବାଲୁଙ୍କେଶ୍ୱରଙ୍କ ପୂଜା ଓ ଦର୍ଶନ ସାରି ଯାତ୍ରୀମାନେ ଏହି ବାଲିବନ୍ଧରେ ଆନନ୍ଦ ଉଲ୍ଲାସର ସହିତ କିଣାବିକା କରି ନିଜ ନିଜ ଗାଁକୁ ଫେରୁଥିଲେ । ଅତଏବ ବାଲୁଙ୍କେଶ୍ୱରରୁ ବାଲିଯାତ୍ରା ବୋଲି କେତେକ କହନ୍ତି । ସର୍ବୋପରି ବିସ୍ତୀର୍ଣ୍ଣ ବାଲିପଡ଼ିଆରେ ଏହି ଯାତ୍ରା ହେଉଥିବାରୁ ଏହାର ନାମ ବାଲିଯାତ୍ରା ରଖାଯାଇଛି । ବାଲିଯାତ୍ରା କେବଳ ଏକ ଯାତ୍ରା ନୁହେଁ ସାମାଜିକ, ସାଂସ୍କୃତିକ ଆଉ ବାଣିଜ୍ୟିକର ଓଡ଼ିଶାର ସବୁଠାରୁ ଏକ ବଡ଼ ମହୋତ୍ସବ । ଏଠାରେ ଭାରତର ସବୁ ଅଞ୍ଚଳର ବ୍ୟବସାୟୀମାନେ ଶହ ଶହ ଦୋକାନ ଓ ପ୍ରଦର୍ଶନୀ ମଣ୍ଡପ ଖୋଲି ଗ୍ରାହକମାନଙ୍କ ସବୁପ୍ରକାର ଆବଶ୍ୟକତା ପୂରଣ କରିଥାନ୍ତି । କବିଙ୍କ କଣ୍ଠରେ:

ଧାଡ଼ି ଧାଡ଼ି ହୋଇ ଦୋକାନ ବସଇ
ଚିଜ ମିଳେ ଜାତି ଜାତି
ମନ ଲାଖି କେତେ ଦରବ କିଣଇ
କିବା ଦିନ କିବା ରାତି ॥

ଏହା ଏକ ବାର୍ଷିକ ବିପ୍ପଣୀ ମେଳା । ପ୍ରତିଦିନ ଲକ୍ଷ ଲକ୍ଷ ନରନାରୀ ଏହି ଯାତ୍ରା ଦେଖି ନିଜର ମନୋରଞ୍ଜନ କରିବା ସହିତ ବିଭିନ୍ନ ପ୍ରକାର ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ କିଣିଥାନ୍ତି । ଆଜିକାଲି ବାଲିଯାତ୍ରାର ରୂପବୈଭବ ଅତ୍ୟନ୍ତ ଲୋଭନୀୟ ଓ ଆକର୍ଷଣୀୟ । ଆଠ ଦିନ ବ୍ୟାପୀ ବିରାଟ ମହୋତ୍ସବରେ କ୍ଷୁଦ୍ରଶିଳ୍ପ ଓ କୁଟୀରଶିଳ୍ପ ଜାତ ବିଭିନ୍ନ ସାମଗ୍ରୀ ଖାଉଟିମାନେ ସୁଲଭ ମୂଲ୍ୟରେ ପାଇଥାନ୍ତି । ରାଜ୍ୟର ସବୁ ଜିଲ୍ଲାର ଶିଳ୍ପକେନ୍ଦ୍ର, ମହିଳା ସମବାୟ ସମିତି ଓ ସ୍ୱୟଂ ସହାୟକ ଗୋଷ୍ଠୀ ଦ୍ୱାରା ପ୍ରସ୍ତୁତ ଓ ଉତ୍ପାଦିତ ବହୁପ୍ରକାର କୁଟୀର ଶିଳ୍ପ ସାମଗ୍ରୀ ଏଠାରେ ବିକ୍ରୟ ହୋଇଥାଏ । ସେଠାରେ ଛେନା ତରକାରି, ଠୁଙ୍ଗାପୁରୀ, ଦହିବରା ଆଳୁଦମ ଖାଇବାରେ ସ୍ୱତନ୍ତ୍ର ମଜା ମିଳେ । ପ୍ରସିଦ୍ଧ ଖାଦ୍ୟ ଓ ପାନୀୟ ପସରା ପାଖରେ ତରୁଣତରୁଣୀ ଓ ଯୁବକଯୁବତୀମାନଙ୍କର ଅସମ୍ଭବ ଭିଡ଼ । ରାମଦୋଳି ଚକ୍ରଦୋଳି ଭଳି ଆକର୍ଷଣୀୟ ଖେଳ ଖେଳିବାକୁ ଛୋଟପିଲାମାନଙ୍କ ଅଝଟିଆ ବ୍ୟବହାର ଦେଖିଲେ ଦେଖଣାହାରୀମାନଙ୍କର ପିଲାଦିନର କଥା ମନେ ପଡ଼ିଯାଏ । ସରକାରୀ ତତ୍ପରତା ଓ ବ୍ୟବସ୍ଥା ମଧ୍ୟ ସୁଦୃଢ଼ । ନାନା ପ୍ରକାର ସରକାରୀ ଯୋଜନାର ସୂଚନା ଓ ବ୍ୟାବସାୟିକ ବିଜ୍ଞାପନ ଦେଖିବକୁ ମିଳେ । ରଙ୍ଗାରଙ୍ଗ ପରିବେଶ ଓ ନାନା ପ୍ରକାର ବାଦ୍ୟ ଓ ପେଁକାଳୀର କୋଳାହଳ ମୁଖରିତ ପରିବେଶ ଓଡ଼ିଶାରେ ଏକ ଅଭୁଲା ଚିତ୍ର ଅଙ୍କନ କରେ । ଡ଼ାକବାଜି ଯନ୍ତ୍ରର କାନ ଅତଡ଼ା ଧ୍ୱନିରେ ଘୁ ଘୁ କମ୍ପୁଥାଏ ବାଲିଯାତ୍ରା ପଡ଼ିଆ ।

ପ୍ଲଟ.ନଂ–୫୫୬/୩୭୫୧, କାନନ ବିହାର–୨
ପଟିଆ, ଭୁବନେଶ୍ୱର– ୭୫୧୦୩୧

# ଦିବ୍ୟ କୁମ୍ଭ ଭବ୍ୟ କୁମ୍ଭ

ଜୟନ୍ତ ପଟ୍ଟନାୟକ

କୁମ୍ଭ ଅର୍ଥ କଳସ, ଗଡ଼ୁ, ଲୋଟା ବା ଢାଳ । ହିନ୍ଦୁ ଧର୍ମରେ କଳସକୁ ପବିତ୍ର ଭାବେ ମାନ୍ୟତା ଦିଆଯାଏ । କାରଣ ଯେକୌଣସି ପୂଜା ଓ ଧର୍ମ କାର୍ଯ୍ୟରେ ପୂର୍ଣ୍ଣକୁମ୍ଭ ବା କଳସ ବସାଯାଏ । ସାଧାରଣତଃ ମାଟି, ସ୍ଥଳ ବିଶେଷରେ ଧାତୁ କୁମ୍ଭରେ ଜଳ ଭର୍ତ୍ତିକରି ତା' ଉପରେ ଥିବା ସରା ଉପରେ ଆମ୍ବପତ୍ର, ନାସିପଇଡ଼ ରଖି ଫୁଲ, ଦୁବ ଇତ୍ୟାଦି ଦିଆଯାଇଥାଏ । ଅନେକଙ୍କ ଘରେ ପ୍ରତ୍ୟହ ପୂର୍ଣ୍ଣକୁମ୍ଭ ବସାଯିବାର ଦେଖାଯାଏ ମଙ୍ଗଳ ନିମନ୍ତେ । ହିନ୍ଦୁ ଧର୍ମର ଯେକୌଣସି ପୂଜାରେ ପୂର୍ଣ୍ଣକୁମ୍ଭ ବା କଳସ ବସାଯାଇ ପୂଜାର ଆରମ୍ଭ କରାଯାଏ ଅର୍ଥାତ୍ ଦେବା/ଦେବୀଙ୍କୁ ଆବାହନ କରାଯାଏ । କୁମ୍ଭ ବା କଳସ ଏକ ଅତି ପରିଚିତ ନାମ । ଯେମିତି କୁମ୍ଭାଭିଷେକ, କୁମ୍ଭ ବା କଳସ ଯାତ୍ରା, କୁମ୍ଭମେଳା ଇତ୍ୟାଦି । କୁମ୍ଭମେଳା ବା ଯାତ୍ରା ଏତେ ପରିଚିତ ବା ଜନମାନସରେ ବ୍ୟାପିଯାଇଛି ଯେ ହିନ୍ଦୀ ଏବଂ ଅନ୍ୟ ଭାଷାର ଚଳଚ୍ଚିତ୍ରରେ ଅନେକ କାହାଣୀ ଅଛି, ଯେଉଁଥିରେ ଯାଆଁଳା ବା ସାଧାରଣ ଦୁଇ ଭାଇ କିମ୍ବା ଭାଇ ଭଉଣୀ ପିଲାଦିନେ କୁମ୍ଭ ମେଳାରେ ହଜି ଯାଇଥିବେ ଏବଂ ପରେ ବଡ଼ ଦିନେ ଅକସ୍ମାତ୍ ଚିହ୍ନା ପରିଚୟ ହୋଇ ଖୁସିର ମାହୋଲ ଆସିଯାଏ ପରିବାରରେ ।



ତେବେ ଆସନ୍ତୁ ଜାଣିବା କୁମ୍ଭମେଳାର ଅତି ପୁରୁଣା ଇତିହାସ ସମ୍ବନ୍ଧରେ । କୁମ୍ଭମେଳାର କାହାଣୀ ଅତୀବ ପ୍ରାଚୀନ । ପୁରାଣ ଅନୁଯାୟୀ ଥରେ ଦେବତା ଓ ଅସୁରମାନେ ମିଶି କ୍ଷୀରସାଗର ବା ସମୁଦ୍ରକୁ (ଯାହାର ଅନ୍ୟ ନାମ ରତ୍ନାକର) ମନ୍ଥନ କରିବାକୁ ସ୍ଥିର କଲେ । ଏଥିରେ ମନ୍ଦର ପର୍ବତ ଖୁଆଦଣ୍ଡ (ମନ୍ଥିବା ନିମନ୍ତେ, ଯେମିତି ଦହି ମନ୍ଥାହୁଏ) ଓ ବାସୁକୀ ନାଗ ଖୁଆଦଣ୍ଡ ମନ୍ଥିବା ନିମନ୍ତେ ଦଉଡ଼ିର କାର୍ଯ୍ୟ କରିଥିଲେ । ମନ୍ଦର ପର୍ବତ ସ୍ଥିର ରହିବା ନିମନ୍ତେ ପ୍ରଭୁ ନାରାୟଣ କଚ୍ଛପ ଅବତାର ହୋଇ ପିଠିରେ ମନ୍ଦର ପର୍ବତକୁ ଧରି ରଖିଲେ । ଏହି ମନ୍ଥନରୁ ଯଥାକ୍ରମେ ଐରାବତ ହସ୍ତୀ, ଉଚ୍ଚୈଶ୍ରବା ଅଶ୍ୱ, ପାରିଜାତ ଫୁଲ, ଚନ୍ଦ୍ର, ମା' ଲକ୍ଷ୍ମୀ, ଅନେକ ହୀରାନୀଳା, ମୋତି ମାଣିକ୍ୟ ବାହାରିବା ପରେ ଶେଷରେ ବାହାରିଲା କିଛି ହଳାହଳ

(ସାଂଘାତିକ) ବିଷ, ଯାହାକୁ ପାନ କରି ମହାଦେବ ନୀଳକଣ୍ଠ ହୋଇଗଲେ ଏବଂ ଏକ ଅମୃତଭାଣ୍ଡ ବା ଅମୃତ କଳସ । ଏହି ଅମୃତ ଯିଏ ପାଇବ ସିଏ ଅମର ହୋଇଯିବ । ଅସୁରମାନେ ଏହି ଅମୃତ ପାଇଲେ ଅମର ହୋଇ ନାନା ଉତ୍ପାତ କରିବାର ଆଶଙ୍କା କରି ଏହି ଅମୃତ ସେମାନଙ୍କୁ ନଦେବା ନିମନ୍ତେ ଦେବତାମାନେ ପ୍ରଭୁ ନାରାୟଣଙ୍କୁ ପ୍ରାର୍ଥନା କଲେ । ନାରାୟଣ ଏକ ଅପୂର୍ବ ସୁନ୍ଦରୀ ମୋହିନୀ କନ୍ୟା ବେଶରେ ଆସି ଅମୃତ କଳସକୁ ନେଇ ଅସୁରମାନଙ୍କୁ ନଦେଇ ଦେବତାମାନଙ୍କୁ ଦେବାର ପ୍ରୟାସ କଲେ । ଘଟଣାକ୍ରମେ ଅମୃତ କଳସ ବା ଅମୃତ କୁମ୍ଭରୁ କିଛି ମର୍ତ୍ତ୍ୟଲୋକର ଭାରତ (ଜମ୍ବୁଦ୍ୱୀପ)ର ନାସିକ, ହରିଦ୍ୱାର, ଉଜ୍ଜୟିନୀ ଓ ପ୍ରୟାଗ (ଆହ୍ଲାବାଦ – ସଂଗମ)ରେ ପଡ଼ି ଯାଇଥିଲା । ସେହି ସ୍ମୃତିରେ ପ୍ରତି ୩ ବର୍ଷରେ ଥରେ ଏହିସବୁ ସ୍ଥାନରେ କୁମ୍ଭମେଳା ଆୟୋଜିତ ହୋଇ ଆସୁଅଛି । ଦେବତା ଓ ଅସୁରମାନଙ୍କ ମଧ୍ୟରେ ଏହି ପରିପ୍ରେକ୍ଷୀରେ (ଅମୃତ ପାଇଁ) ୧୨ ଦିନ ଯୁଦ୍ଧ ହୋଇଥିଲା । ସେଇ ସ୍ମୃତିରେ ସେଇସବୁ ସ୍ଥାନରେ ୧୨ବର୍ଷରେ ଥରେ କୁମ୍ଭମେଳା ହୁଏ । ୬ ବର୍ଷରେ ଥରେ ଅର୍ଦ୍ଧକୁମ୍ଭ କେବଳ ହରିଦ୍ୱାର ଓ ପ୍ରୟାଗରାଜରେ ହୁଏ । ଏହି ମେଳା ହିନ୍ଦୁମାନଙ୍କର ଆସ୍ଥାର କୁମ୍ଭ, ବିଶ୍ୱାସର କୁମ୍ଭ, ଭରସାର କୁମ୍ଭ, ସଂସ୍କୃତିର କୁମ୍ଭ ଓ ପ୍ରେମର କୁମ୍ଭ । କୁହାଯାଏ ୪ଟି କୁମ୍ଭ ମର୍ତ୍ତ୍ୟରେ ଏବଂ ୮ଟି କୁମ୍ଭ ସ୍ୱର୍ଗରେ ହୋଇଥାଏ । କୁମ୍ଭମେଳାର ପ୍ରକାର ଭେଦ – ଅର୍ଦ୍ଧ କୁମ୍ଭ, ପୂର୍ଣ୍ଣ କୁମ୍ଭ, ମହାକୁମ୍ଭ । ୨୦୧୩ରେ ପ୍ରୟାଗରାଜରେ କୁମ୍ଭ ମେଳା ହୋଇଥିଲା । ଚଳିତ ବର୍ଷ ୨୦୧୯ରେ ପ୍ରୟାଗରାଜରେ ଅର୍ଦ୍ଧକୁମ୍ଭ ବା କୁମ୍ଭମେଳା ଅନୁଷ୍ଠିତ ହୋଇଥିଲା । ନାସିକରେ ଗୋଦାବରୀ ନଦୀ ତଟରେ ତ୍ରୟମ୍ବକେଶ୍ୱରଙ୍କଠାରେ, ଉଜ୍ଜୟିନୀରେ କ୍ଷିପ୍ରା ନଦୀ କୂଳରେ ମହାକାଳେଶ୍ୱର (ଦ୍ୱାଦଶ ଜ୍ୟୋତିର୍ଲିଙ୍ଗଙ୍କ ମଧ୍ୟରୁ ଅନ୍ୟତମ), ହରିଦ୍ୱାରରେ ଗଙ୍ଗା ନଦୀତଟରେ ଓ ପ୍ରୟାଗରାଜ (ଆହ୍ଲାବାଦରେ) ସଙ୍ଗମ – ଗଙ୍ଗା, ଯମୁନା ଓ ସରସ୍ୱତୀର ମିଳନସ୍ଥଳୀରେ କୁମ୍ଭମେଳା ଅନୁଷ୍ଠିତ ହୁଏ । ଗ୍ରହ, ନକ୍ଷତ୍ର ଓ ରାଶିର ଚଳନାନୁଯାୟୀ ଗଣନା ଦ୍ୱାରା କେଉଁ ବର୍ଷ କେଉଁଠାରେ କୁମ୍ଭମେଳା ଅନୁଷ୍ଠିତ ହେବ ସ୍ଥିର କରାଯାଏ ।

୧. ଯେତେବେଳେ ବୃହସ୍ପତି ମେଷ କିମ୍ବା ବୃଷ ରାଶିରେ ଏବଂ ସୂର୍ଯ୍ୟ ଚନ୍ଦ୍ର ମକର ରାଶିରେ ପ୍ରବେଶ କରନ୍ତି । ମାଘ (ଜାନୁଆରୀ–ଫେବୃଆରୀ) ମାସରେ ଅମାବାସ୍ୟାରେ ପ୍ରୟୋଗଠାରେ କୁମ୍ଭବେଳା ଅନୁଷ୍ଠିତ ହୁଏ ।

୨. ଯେତେବେଳେ ବୃହସ୍ପତି କୁମ୍ଭ ରାଶିରେ ଏବଂ ସୂର୍ଯ୍ୟ ମେଷ ରାତିରେ ପ୍ରବେଶ କରନ୍ତି, ଚୈତ୍ର (ମାର୍ଚ୍ଚ–ଏପ୍ରିଲ) ମାସରେ ହରିଦ୍ୱାରରେ କୁମ୍ଭ ମେଳା ଅନୁଷ୍ଠିତ ହୁଏ ।

୩. ଯେତେବେଳେ ବୃହସ୍ପତି ସିଂହ ଏବଂ ସୂର୍ଯ୍ୟ ମେଷ ରାଶିରେ ପ୍ରବେଶ କରନ୍ତି କିମ୍ବା ଯେତେବେଳେ ବୃହସ୍ପତି ଏବଂ ଚନ୍ଦ୍ର ସୂର୍ଯ୍ୟ ଦୁହେଁ ତୁଳା ରାଶିରେ ଥାଆନ୍ତି, ସେତେବେଳେ ହିନ୍ଦୁ ବୈଶାଖ (ଏପ୍ରିଲ–ମେ) ମାସରେ ଉଜ୍ଜୟିନୀରେ କୁମ୍ଭମେଳା ।

୪. ଯେତେବେଳେ ସୂର୍ଯ୍ୟ ଓ ବୃହସ୍ପତି ସିଂହ ରାଶିରେ ଥାଆନ୍ତି ଅର୍ଥାତ୍ ହିନ୍ଦୁ ମାସ ଭାଦ୍ରବ (ଅଗଷ୍ଟ–ସେପ୍ଟେମ୍ବର)ରେ ନାସିକରେ କୁମ୍ଭମେଳା ଅନୁଷ୍ଠିତ ହୁଏ । ଶେଷୋକ୍ତ ୩ ଓ ୪ କୁମ୍ଭକୁ ସିଂହସ୍ଥ କୁମ୍ଭ ମଧ୍ୟ କୁହାଯାଏ, ସିଂହ ରାଶିରେ ସମ୍ଭବ ହେତୁ । ଆଧୁନିକ ଯୁଗରେ ସମ୍ରାଟ ହର୍ଷବର୍ଦ୍ଧନଙ୍କ ସମୟରେ ଚୀନ୍‌ରୁ ଆସିଥିବା ପରିବ୍ରାଜକ ହୁଏନସାଂଙ୍କ ବିବରଣୀରୁ କୁମ୍ଭମେଳା ଇତିହାସର ବର୍ଣ୍ଣନା ପ୍ରାପ୍ତ, ଯାହା ପ୍ରାଚୀନତମ ଆଜି ସୁଦ୍ଧା । ଆଦିଶଙ୍କରାଚାର୍ଯ୍ୟ ଏହି ମେଳାର ଶୁଭାରମ୍ଭ କରିଥିଲେ ।

ଚଳିତ ବର୍ଷ ପ୍ରୟାଗରାଜ କୁମ୍ଭମେଳା, ୨୦୧୯ ଜାନୁଆରୀ ୧୫ ମକର ସଂକ୍ରାନ୍ତି (ପ୍ରଥମ ଶାହି ସ୍ନାନ)ଠାରୁ ୪ ମାର୍ଚ୍ଚ ୨୦୧୯ ମହାଶିବରାତ୍ରୀ (ଶେଷ ଶାହି ସ୍ନାନ) ପର୍ଯ୍ୟନ୍ତ ୪୯ ଦିନ ବ୍ୟାପି ଅନୁଷ୍ଠିତ ହୋଇଥିଲା । ମହା ଆଡ଼ମ୍ବରରେ ଅତ୍ୟନ୍ତ ସୁପରିକଳ୍ପିତ ସୁଚିନ୍ତିତ ଓ ସୁବ୍ୟବସ୍ଥିତ ଭାବେ ମହାକୁମ୍ଭମେଳା । ଏହାକୁ ସୁଚାରୁରୂପେ ସମ୍ପନ୍ନ କରିବାକୁ ଉତ୍ତରପ୍ରଦେଶର ମୁଖ୍ୟମନ୍ତ୍ରୀ ଯୋଗୀ ଆଦିତ୍ୟନାଥଙ୍କ ସରକାର ଆୟୋଜନ କରିଥିଲେ, ଯାହା

ଗତ ୨୦୧୩ର  କୁମ୍ଭମେଳା ଖର୍ଚ୍ଚର ପ୍ରାୟ ୩ ଗୁଣରୁ ଅଧିକ ।

ସଂଗମ ତଟରେ ୧୦,୦୦୦ ଏକର ସ୍ଥାନରେ ଏକ ଅସ୍ଥାୟୀ କୁମ୍ଭ ସହର ନିର୍ମାଣ କରାଯାଇଥିଲା । ୨୫୦ କି.ମି. ନୂଆ ସଡ଼କ ସହିତ ଅନ୍ୟ ସଡ଼କଗୁଡ଼ିକର ନବୀକରଣ ଓ ପ୍ରଶସ୍ତିକରଣ, ୨୬୪ ଗଳି ରାସ୍ତାର ପ୍ରଶସ୍ତିକରଣ, ୧୦ଟି ନୂଆ ଫ୍ଲାଇ ଓଭର ନୂଆ ନୂଆ ସ୍ୱତନ୍ତ୍ର ଟ୍ରେନ୍ ସହିତ ତା'ର ରହଣି ଅନ୍ୟ ୩ଟି ଷ୍ଟେସନ୍‌ରେ କରାଯାଇଥିଲା । ୧୩ଟି ନୂଆ ବିମାନ ପଥ ଖୋଲା ଯାଇଥିଲା । ବମ୍‌ରୌଲି ବିମାନଘାଟି (ଉନ୍ନୀତ ହୋଇଥିବା)କୁ କୁମ୍ଭ ସହର ସହିତ ଯୋଡ଼ିବା ନିମନ୍ତେ । ସଂଗମକୁ ଜଳପଥରେ ଆସିବା ନିମନ୍ତେ ମଧ୍ୟ ନୂଆ ନୂଆ ଭେସେଲ ସହିତ ଜଳପଥର ବିକାଶ କରାଯାଇଥିଲା, ଯେଉଁଥିରେ ୨୨ଟି ନୂଆ ଅସ୍ଥାୟୀ (ପଣ୍ଟୁନ) ପୋଲ ସାମିଲ ଥିଲା । ସମ୍ପୂର୍ଣ୍ଣ କୁମ୍ଭମେଳା ସ୍ଥାନ ଉପରେ ନଜର ରଖିବା ନିମନ୍ତେ ୧,୪୦୦ଟି ସିସିଟିଭି କ୍ୟାମେରା ବ୍ୟବସ୍ଥା ସହ ୨୪ ଘଣ୍ଟିଆ ସହାୟତା ପାଇଁ କଣ୍ଟ୍ରୋଲ ରୁମ୍ ଖୋଲା ଯାଇଥିଲା । ପରିମଳ ଦୃଷ୍ଟିରୁ ୨୦,୦୦୦ ଡଷ୍ଟବିନ୍ ବସାଯାଇଥିବା ସହ ସ୍ୱୟଂକ୍ରିୟ ମଇଳା ଉଠାଇବା ବ୍ୟବସ୍ଥା ହୋଇଥିଲା । ୧.୨୨ ଲକ୍ଷ ପରିବେଶ ଅନୁକୂଳ ଟୟଲେଟ୍ ନିର୍ମାଣ କରାଯାଇଥିଲା ଯାହା ବିଶ୍ୱର ସର୍ବବୃହତ୍ ପରିମଳ ବ୍ୟବସ୍ଥା ଭାବେ ଗିନିଜ୍ ବୁକ୍ ଅଫ୍ ୱାର୍ଲଡ୍ ରେକର୍ଡ୍ସରେ ସ୍ଥାନିତ ହୋଇଛି । ପର୍ଯ୍ୟାପ୍ତ ପାନୀୟ ଜଳର ସୁବିଧା ସହିତ ସଦାସର୍ବଦା ମେଳା ସ୍ଥାନ ଆଲୋକୀକରଣ କରାଯାଇଥିଲା । ମେଳା ସ୍ଥଳରେ ସାର୍ବଜନିକ ବିଶ୍ରାମ ନିମନ୍ତେ ତମ୍ବୁ ଘର କରାଯାଇଥିଲା । ଶ୍ରଦ୍ଧାଳୁଙ୍କ ନିମନ୍ତେ ମେଳା ସ୍ଥଳୀରେ ୬୦୦ଟି ରୋଷେଇଘର କାମ କରୁଥିଲା, ଯେଉଁଠି ସର୍ବଦା ସାତ୍ତ୍ୱିକ ଖାଦ୍ୟ ମିଳୁଥିଲା, ଚା' ଓ କଫି ସହିତ । ଅସଂଖ୍ୟ ଆସିବାକୁ ଥିବା ଶ୍ରଦ୍ଧାଳୁ ଓ ବିଦେଶୀଙ୍କ ଦୃଷ୍ଟି ଆକର୍ଷଣ ନିମନ୍ତେ ସୌନ୍ଦର୍ଯ୍ୟକରଣ ଅନ୍ତର୍ଗତ ସହରର ୨୦ ଲକ୍ଷ ବର୍ଗଫୁଟ କାନ୍ଥକୁ ଚିତ୍ରାୟିତ କରାଯାଇଥିଲା ସୁନ୍ଦର ସୁନ୍ଦର ଚିତ୍ରରେ ।

ଏସବୁ ବ୍ୟତୀତ ମେଳା ସ୍ଥଳରେ ୫୦ ଏକର ସ୍ଥାନରେ 'ଇନ୍ଦ୍ରପ୍ରସ୍ଥ' ନାମକ ୧୦୦୦ଟି ପଞ୍ଚତାରକା ସୁବିଧା ଥିବା ତମ୍ବୁଘର କରାଯାଇଥିବା ବିଦେଶୀ ଅତିଥି ଓ ଶୀର୍ଷସ୍ତରୀୟ ଅଧିକାରୀ ଓ ରାଜନେତାମାନଙ୍କ ନିମନ୍ତେ, ଯାହାର କାମ ନିର୍ଦ୍ଧାରିତ ଏକମାସ ମଧ୍ୟରେ ସମାପ୍ତ ହୋଇଥିଲା । ସାଧାରଣ ଶ୍ରଦ୍ଧାଳୁଙ୍କ ସ୍ନାନ ନିମନ୍ତେ କେତୋଟି ନୂଆ ଘାଟ ସହିତ ଏକ ଭିଆଇପି ଘାଟ ନିର୍ମାଣ କରାଯାଇଥିଲା । ଗତ ବିଶ୍ୱକପ୍ ହକି ନିମନ୍ତେ ରାଜଧାନୀ ଭୁବନେଶ୍ୱରରେ କେତେକ ସ୍ଥାନରେ ବଡ଼ ବଡ଼ ଫାଇବର ଅକ୍ଷରରେ 'ଏକାମ୍ର କ୍ଷେତ୍ର' ଓ I Love Bhubaneswar ଭଳି ସଂଗମ ସ୍ଥଳରେ କେତେକ ଘାଟ ନିକଟରେ 'ଦିବ୍ୟ କୁମ୍ଭ, ଭବ୍ୟ କୁମ୍ଭ' ସେମିତି ଲେଖାଯାଇଥିଲା । ସବୁ ଚିଠିପତ୍ର ତଥା ସବୁଠି ଉଲ୍ଲେଖ ନିମନ୍ତେ ଉତ୍ତରପ୍ରଦେଶ ସରକାର ଏକ ସ୍ୱତନ୍ତ୍ର ଲୋଗୋ ପ୍ରସ୍ତୁତ କରିଥିଲେ କୁମ୍ଭ ନିମନ୍ତେ ।

ମେଳାର ପ୍ରମୁଖ ଆକର୍ଷଣ ହେଲା କୁମ୍ଭମେଳାର ୧୩ ଗୋଟି ଆଖଡ଼ା, ଚଳିତ ବର୍ଷ ସେଥିରେ ସାମିଲ ହୋଇଥିଲା, ଆଉ ଏକ ଆଖଡ଼ା, କିନ୍ନର ଆଖଡ଼ା ସମୁଦାୟ ୧୪ ଆଖଡ଼ା । ଆଦି ଶଙ୍କରାଚାର୍ଯ୍ୟ ସନାତନ ହିନ୍ଦୁ ଧର୍ମର ରକ୍ଷା ତଥା ପ୍ରଚାର ପ୍ରସାର ନିମନ୍ତେ ୪ ଗୋଟି ପୀଠ ସ୍ଥାପନ କରିଥିଲେ । ହିନ୍ଦୁ ଧର୍ମକୁ ସୁରକ୍ଷା ଦେବା ପାଇଁ ଏହି ଆଖଡ଼ାଗୁଡ଼ିକ ପ୍ରତିଷ୍ଠା ହୋଇଥିଲା । ଉପରୋକ୍ତ ୧୩ ଆଖଡ଼ା ମଧ୍ୟରୁ ୭ଟି ପ୍ରତିଷ୍ଠା କରିଥିଲେ ସ୍ୱୟଂ ଶଙ୍କରାଚାର୍ଯ୍ୟ । ନିମ୍ନରେ ଆଖଡ଼ାଗୁଡ଼ିକ ସମ୍ବନ୍ଧରେ କିଛି ।

୧. ସବୁଠୁ ବଡ଼ ଆଖଡ଼ା, ଜୁନା ଆଖଡ଼ା ଯେଉଁଥିରେ ୪ ଲକ୍ଷ ସାଧୁ ଅଛନ୍ତି । ଏହି ଆଖଡ଼ାର ନାମ ଶ୍ରୀ ପଞ୍ଚଦଶନାମୀ ଜୁନା ଆଖଡ଼ା । ଏହାର ପ୍ରମୁଖ ହେଲେ ଶ୍ରୀ ହରିଗିରିଜୀ ମହାରାଜ, ମୁଖ୍ୟାଳୟ – ବାରଣାସୀ । ଏଥିରେ ମହିଳା ସନ୍ନ୍ୟାସିନୀ ମଧ୍ୟ ଅଛନ୍ତି, ଯେଉଁମାନେ ଅଲଗା ରୁହନ୍ତି । ସେ ସ୍ଥାନକୁ ମାଈବାଡ଼ା କୁହାଯାଏ । ଏଥିରେ ବହୁତ ସଂଖ୍ୟାରେ ବିଦେଶୀ ସନ୍ନ୍ୟାସୀ ମଧ୍ୟ ଅଛନ୍ତି ଏମାନଙ୍କ ଇଷ୍ଟଦେବ ହେଲେ ରୁଦ୍ରାବତାର ଦତ୍ତାତ୍ରେୟ ।

୨. ଶ୍ରୀପଞ୍ଚ ଅଟଳ ଆଖଡ଼ାର ଇଷ୍ଟଦେବ ଗଣେଶ, ଏହାର ମୁଖ୍ୟାଳୟ ହରିଦ୍ୱାର । ଏଥିରେ ପ୍ରାୟ ୭୦୦ ସାଧୁ ଅଛନ୍ତି । ଭାଲକୁ ଶସ୍ତ୍ର ରୂପେ ପୂଜା କରାଯାଏ । ଏହି ଆଖଡ଼ାର ୨ଟି ଧ୍ୱଜା– ଧର୍ମଧ୍ୱଜା ଓ ତାଙ୍କର ମେଳାରେ ପ୍ରବେଶ କଲେ ଧର୍ମଧ୍ୱଜା ଲଗାଯାଏ ଏବଂ ସ୍ନାନ ସମୟରେ ପର୍ବତଧ୍ୱଜା ଲଗାଯାଏ । ଉଦୟଗିରିଜୀ ମୁଖ୍ୟ ।

୩. ଶ୍ରୀପଞ୍ଚନାମୀ ଆନନ୍ଦ ଆଖଡ଼ାର ଇଷ୍ଟଦେବ ସୂର୍ଯ୍ୟ ଓ ଏହାର ମୁଖ୍ୟାଳୟ ମଧ ବାରଣାସୀ । ଏଥିରେ ୧୮,୦୦୦ ସନ୍ଥ ଅଛନ୍ତି । ଏହାର ମୁଖ୍ୟ ହେଲେ ଶଙ୍କରାନନ୍ଦଜୀ ସରସ୍ୱତୀ ।

୪. ଦଶନାମୀ ଆଖଡ଼ା – ଏହି ଆଖଡ଼ାର ଇଷ୍ଟଦେବ ଶ୍ରୀ ଗଣପତି, ଏହି ଆଖଡ଼ାରେ ପ୍ରାୟ ୧୨,୦୦୦ ସାଧୁ ଅଛନ୍ତି ଏହି ଆଖଡ଼ାର ମୁଖ୍ୟାଳୟ ବାରଣାସୀ ଭାଲକୁ ଦେବତା ରୂପେ ପୂଜା କରାଯାଏ । ଏଥିରେ ମହିଳା ସାଧୁ ଅଛନ୍ତି । ମୁଖ୍ୟ ପ୍ରେମପୁରୀଜୀ ମହାଭାଗ ।

୫. ପଞ୍ଚାୟତ ତପୋନିଧି ନିରନା ଆଖଡ଼ା– ଏହି ଆଖଡ଼ାର ଇଷ୍ଟଦେବ କାର୍ତ୍ତିକେୟ । ଏହାର ମୁଖ୍ୟାଳୟ ଆହ୍ଲାବାଦ, ଏଥିରେ ପ୍ରାୟ ୧୦,୦୦୦ ସାଧୁ ଅଛନ୍ତି । ମହିଳା ସାଧ୍ୱୀ ଅଛନ୍ତି ।

୬. ଶ୍ରୀପଞ୍ଚାୟତ ମହାନିର୍ବାଣ ଆଖଡ଼ା – ଏହି ଆଖଡ଼ାର ଇଷ୍ଟଦେବ ମହାମୁନୀ କପିଳ । ଏହି ଆଖଡ଼ାର ଦୁଇଟି ଧ୍ୱଜା ଅଛି । ଏଥିରେ ପ୍ରାୟ ୬୦୦୦ ସାଧୁ ଅଛନ୍ତି । ଏହାର ମୁଖ୍ୟାଳୟ ଆହ୍ଲାବାଦ । ମହିଳା ସାଧୁ ନାହାନ୍ତି । ମୁଖ୍ୟ ରମେଶଗିରିଜୀ ମହାରାଜ ।

୭. ପଞ୍ଚ ଅଗ୍ନି ଆଖଡ଼ା – ଏହି ଆଖଡ଼ାର ଇଷ୍ଟଦେବ ଗାୟତ୍ରୀ ମାତା ଏବଂ ଅଗ୍ନି । ଏହାର ସଭ୍ୟ ସଂଖ୍ୟା ପ୍ରାୟ ୩୦୦୦ । ଏହାର ମୁଖ୍ୟାଳୟ ବାରଣାସୀ ।

### ବୈରାଗୀମାନଙ୍କର ୩ଟି ଆଖଡ଼ା

୮. ଶ୍ରୀପଞ୍ଚ–ଦିଗମ୍ବର ଆଖଡ଼ା – ଇଷ୍ଟଦେବ ବାଳାନନ୍ଦ ସ୍ୱାମୀ । ଏଥିରେ ମହିଳା ସନ୍ଥ ନାହାନ୍ତି । ସାଧୁ ସଂଖ୍ୟା ୧୫୦୦୦ । ପ୍ରମୁଖ ମହନ୍ତ ରାମକିଶନ ନନ୍ଦ ଦାସଜୀ ମହାରାଜ ।

୯. ଶ୍ରୀପଞ୍ଚ ରାମାନନ୍ଦାୟ ନିର୍ମୋହୀ ଆଖଡ଼ା – ଇଷ୍ଟଦେବ ହନୁମାନ, ସଂସ୍ଥାପକ– ରାମାନନ୍ଦାଚାର୍ଯ୍ୟ । ଏହି ଆଖଡ଼ାରେ ପ୍ରାୟ ୧୫,୦୦୦ ସାଧୁ ଅଛନ୍ତି ।

୧୦. ଶ୍ରୀପଞ୍ଚ ରାମାନନ୍ଦାୟ ନିର୍ବାଣ ଆଖଡ଼ା – ଇଷ୍ଟଦେବ ହନୁମାନଜୀ, ଏହାର ମୁଖ୍ୟାଳୟ ଅଯୋଧ୍ୟା । ଏହାର ସାଧୁମାନେ ଉର୍ଦ୍ଧ୍ୱପୁଣ୍ଡ ତିଳକ ଲଗାନ୍ତି । ୧୨,୦୦୦ ସାଧୁ ଅଛନ୍ତି । ପ୍ରମୁଖ – ମହନ୍ତ ଧରମଦାସଜୀ ମହାରାଜ ।

### ଉଦାସୀନ ପରମ୍ପରାର ୨ଟି ଆଖଡ଼ା

୧୧. ଶ୍ରୀପଞ୍ଚାୟତି ବଡ଼ା ଉଦାସୀନ ଆଖଡ଼ା – ଇଷ୍ଟଦେବ ପଞ୍ଚଦେବ (ଗୋଲା ସାହିବ) ପ୍ରଧାନ କାର୍ଯ୍ୟାଳୟ ଆହ୍ଲାବାଦ ଏଥିରେ ୨୦୦୦୦ ସାଧୁ ଅଛନ୍ତି । ମହିଳା ସାଧୁ ନାହାନ୍ତି । ପ୍ରମୁଖ – ଶ୍ରୀ ମହନ୍ତ ମହେଶ୍ୱର ଦାସଜୀ ମହାରାଜ ।

୧୨. ଶ୍ରୀପଞ୍ଚାୟତି ନୂଆ ଉଦାସୀନ ଆଖଡ଼ା – ଇଷ୍ଟଦେବ ପଞ୍ଚଦେବ, ପ୍ରାୟ ୫,୦୦୦ ସାଧୁ ଅଛନ୍ତି ମୁଖ୍ୟାଳୟ ହରିଦ୍ୱାର, ମହିଳା ସାଧୁ ନାହାନ୍ତି । ପ୍ରମୁଖ – ଜଗତାର ମୁନି ମହାସଂଘ ।

୧୩. ଶିଖ୍ ପରମ୍ପରାର ଆଖଡ଼ା ଶ୍ରୀପଞ୍ଚାୟତ ନିର୍ମଳ ଆଖଡ଼ା – ଏହି ଆଖଡ଼ାର ପ୍ରତିଷ୍ଠା କରିଥିଲେ ଗୁରୁ ଗୋବିନ୍ଦ ସିଂ । ଏହାର ମୁଖ୍ୟାଳୟ ହରିଦ୍ୱାର, ମହିଳା ସାଧୁ ନାହାନ୍ତି । ଗୁରୁଗ୍ରନ୍ଥ ଇଷ୍ଟଦେବ, ପ୍ରାୟ ୧୫୦୦୦ ସାଧୁ ଅଛନ୍ତି । ପ୍ରମୁଖ – ମହନ୍ତ ସ୍ୱାମୀ ଜ୍ଞାନୀଦେବସିଂଜୀ ।

୧୪. ୨୦୧୯ ପ୍ରୟାଗରାଜ କୁମ୍ଭରେ ନୂଆକରି କିନ୍ନର ଆଖଡ଼ା ୧୪ତମ ଆଖଡ଼ା ଭାବେ ଭାଗ ନେଉଛି ଯାହାର ମହାମଣ୍ଡଳେଶ୍ୱର, ସ୍ୱାମୀ ଲକ୍ଷ୍ମୀନାରାୟଣ ତ୍ରିପାଠୀ । ଓଡ଼ିଶାରୁ ଏଥିରେ ମଣ୍ଡଳେଶ୍ୱର କିନ୍ନର ମୀରା ପରିଡ଼ା ଭାଗ ନେଇଥିଲେ । ଇଷ୍ଟଦେବ– ମହାକାଳ ଓ ବ୍ରହ୍ମଚାରୀ ଦେବୀ । ଏଥିରେ ପ୍ରାୟ ୨୫୦୦ରୁ ଅଧିକ ସାଧୁ ଅଛନ୍ତି ।

ଚଳିତ ବର୍ଷ ୨୦୧୯ କୁମ୍ଭ ମେଳାର ୬ ଗୋଟି – ଶାହୀସ୍ନାନ ଯୋଗ ଥିଲା । ଯଥା – ୧. ଜାନୁଆରୀ ମକର ସଂକ୍ରାନ୍ତି । ୨. ପୌଷପୂର୍ଣ୍ଣିମା (ମୋକ୍ଷ କଳ୍ପବାସ ଆରମ୍ଭ) – ୨୧ ଜାନୁଆରୀ । ୩. ଫେବୃଆରୀ ମୌନୀ ଅମାବାସ୍ୟା । ଫେବୃଆରୀ ୧୦ – ବସନ୍ତ ପଞ୍ଚମୀ, ୫. ଫେବୃଆରୀ – ମାଘ ପୂର୍ଣ୍ଣିମା । ୬. ମାର୍ଚ୍ଚ ମହାଶିବରାତ୍ରୀ/ ଜାଗର ଏହି ସ୍ନାନକୁ ଶାହୀ ସ୍ନାନ କୁହାଯିବାର କାରଣ ବିଭିନ୍ନ ଆଖଡ଼ାର ସାଧୁସନ୍ଥମାନେ ରାଜା/ମହାରାଜାଙ୍କ ଭଳି ବିଶାଳ ଭବ୍ୟ ଶୋଭାଯାତ୍ରାରେ ବିଶାଳ ସିଂହାସନ ଉପବେଶନ କରି ପଟୁଆରରେ ଆସନ୍ତି । ତେଣୁ ଉକ୍ତ ସ୍ନାନକୁ ଶାହୀ ସ୍ନାନ ବା ରାଜାସ୍ନାନ ବା ରାଜଯୋଗ ସ୍ନାନ ବା ଅମୃତସ୍ନାନ କୁହାଯାଏ । ସ୍ଥିରୀକୃତ ପବିତ୍ର ମୁହୂର୍ତ୍ତ (ଅମୃତ ଲଗ୍ନ ସମୟ)ରେ ଜଳ ଅମୃତତୁଲ୍ୟ ହୋଇଥାଏ । ଏହି ସ୍ନାନରେ ପ୍ରଥମେ ସାଧୁ ସନ୍ନ୍ୟାସୀମାନେ ବିଶେଷ କରି ନାଗା ସାଧୁମାନେ ପ୍ରଥମେ ସ୍ନାନ କରନ୍ତି । ପରେ ଅନ୍ୟାନ୍ୟ ଶ୍ରଦ୍ଧାଳୁ/ଭକ୍ତବୃନ୍ଦ ସ୍ନାନ କରନ୍ତି । ଏଥିପାଇଁ ଅଖିଳ ଭାରତୀୟ ଆଖଡ଼ା ପରିଷଦ ଦ୍ୱାରା ସମୟ ଓ କ୍ରମାନ୍ୱୟ ଧାର୍ଯ୍ୟ କରାଯାଇଥାଏ । ଚଳିତ ବର୍ଷ ପ୍ରଥମେ ଶ୍ରୀପଞ୍ଚ ଅଟଳ ଆଖଡ଼ା ଓ ଶେଷରେ ଶ୍ରୀ ପଞ୍ଚାୟତି ନିର୍ମଳ ଆଖଡ଼ା ଶାହୀ ସ୍ନାନ କରିବାର କାର୍ଯ୍ୟକ୍ରମ ଥିଲା । ସମସ୍ତ ଆଖଡ଼ାକୁ ୪୫ ମିନିଟ୍ ସମୟ ଦିଆଯାଇଥିଲା ଏବଂ ପ୍ରତ୍ୟେକ ଆଖଡ଼ାର ସ୍ନାନ ମଧ୍ୟରେ ୫/୧୦ ମିନିଟ୍ ସମୟ ପରିମଳ (ସଫେଇ) ନିମନ୍ତେ ରଖାଯାଇଥିଲା ।

ଏହି ଅବସରରେ ସାରା ବିଶ୍ୱ ଭାରତୀୟ ଧର୍ମ ସଂସ୍କୃତି, ଐତିହ୍ୟ, ପରମ୍ପରା, ଇତିହାସ, ଚଳଣି ସହିତ ପରିଚିତ ହୋଇ କୁମ୍ଭର ବିଭିନ୍ନ ବିଧି, ନିୟମ, ରହସ୍ୟ ସମ୍ବନ୍ଧେ ଅବଗତ ହୋଇଥିଲେ । କୁମ୍ଭମେଳା ପୃଥିବୀର ସବୁଠୁ ବଡ଼ ମେଳା ଭାବେ ମାନ୍ୟତାପ୍ରାପ୍ତ ଗିନିଜ୍ ବୁକ୍ ଅଫ୍ ୱାର୍ଲଡ୍ ରେକର୍ଡ ଦ୍ୱାରା ୨୦୧୭ରେ ୟୁନେସ୍କୋ ଦ୍ୱାରା କୁମ୍ଭମେଳାକୁ ମାନବ ସମାଜର ସର୍ବବୃହତ୍ ସାଂସ୍କୃତିକ ମେଳା ଆଖ୍ୟା ଦିଆଯାଇଛି । କୁମ୍ଭ ସମୟରେ ମାସାଧିକ କାଳ ଗୃହସ୍ଥାଶ୍ରମରେ ରହି ମଧ୍ୟ ଜପ, ତପ, ଧ୍ୟାନ, ସ୍ନାନ, ଦାନ ଆଦି କରି ଯିଏ କୁମ୍ଭ ସ୍ଥାନରେ ଗଙ୍ଗାକୂଳରେ କଟାଇଦିଏ, ତାକୁ କଳ୍ପବାସ କୁହାଯାଏ, ଗୋଟିଏ ସ୍ଥାନରୁ ଏମିତିକି ଗୋଟିଏ କୋଠରୀରେ ଜପ, ତପ, ଧ୍ୟାନ, ଭୋଜନ, ପୂଜନ ସବୁ ସମାପନ କରିବାକୁ ହୁଏ । କଳ୍ପବାସରେ ସ୍ଥାନୀୟ ତୀର୍ଥ ପୁରୋହିତମାନଙ୍କର ପ୍ରମୁଖ ଭୂମିକା ଥାଏ । ବିଶ୍ୱାସ ଏଥିରେ ସକଳ କାମନା ପୂରଣ ହୁଏ ଏବଂ ମୋକ୍ଷ ମଧ୍ୟ ମିଳେ ।

ଏହି ମେଳାରେ ଅଘୋରୀ, ନାଗା, କିନ୍ନର ଆଦି ଅନେକ ପ୍ରକାର ସାଧୁ ଯୋଗ ଦେଇଥିଲେ । ମହିଳା ସ୍ୱାଧୀମାନଙ୍କୁ ଅବଧୂତ କୁହାଯାଏ । ଅନେକ ପ୍ରକାର ସାଧୁ ଏଥର ଆସିଥିଲେ । ଏହି ଭବ୍ୟ ଆସନ୍ତା ୨୦୨୫ରେ ପ୍ରୟାଗରାଜରେ ମହାକୁମ୍ଭର ପ୍ରତୀକ୍ଷା ସହିତ ।

କପିଳପ୍ରସାଦ, ଭୁବନେଶ୍ୱର



# 'ଜାହେର୍ ଗାଲ୍' : ସାନ୍ତାଳି ସଂସ୍କୃତିର ଏକ ଅବିଚ୍ଛେଦ୍ୟ ଅଙ୍ଗ

ଠାକୁରଦାସ ହାଁସଦାଃ

ସାନ୍ତାଳ ଏକ ଆଦିବାସୀ ସମ୍ପ୍ରଦାୟର ଜନଜାତି । ଓଡିଶାରେ ଥିବା ୬୨ ଗୋଟି ଜନଜାତି ମଧ୍ୟରୁ ସାନ୍ତାଳ ଜାତି ଏକ ଉନ୍ନତ, ଶିକ୍ଷିତ, ପରିଶ୍ରମୀ ଓ ପ୍ରତିଭାସମ୍ପନ୍ନ ଆଦିବାସୀ । ଏମାନଙ୍କର ସମାଜ, ସଂସ୍କୃତି, ଆଚାରବିଚାର, ନୀତି ନିୟମ, ବେଶଭୂଷା, ଖାଦ୍ୟପେୟ, ଭାଷା, ସାହିତ୍ୟ ଓ ଲିପି ଶିକ୍ଷା ଆଦି ଅନ୍ୟ ସମ୍ପ୍ରଦାୟ ଲୋକଙ୍କଠାରୁ ସ୍ୱତନ୍ତ୍ର । ଏସବୁକୁ ଆଜି ପର୍ଯ୍ୟନ୍ତ ଏମାନେ ବଜାୟ ରଖିଥିବାରୁ ସମାଜରେ ସଦା ଉଚ୍ଚପ୍ରଶଂସିତ ମଧ୍ୟ ହୋଇଥାନ୍ତି । ମନ୍ତ୍ରୀ, ବିଧାୟକ, ବୈଜ୍ଞାନିକ, ଡାକ୍ତର, ଚଳଚ୍ଚିତ୍ର ତାରକା, ଆଇନଜୀବୀ, ବୁଦ୍ଧିଜୀବୀ, ଆ.ଏ.ଏସ ଅଫିସର ଓ ରାଜ୍ୟପାଳ ଯାଏଁ ମଧ୍ୟ ଏହି ସାନ୍ତାଳ ସମ୍ପ୍ରଦାୟର ଲୋକମାନଙ୍କ ମଧ୍ୟରୁ ଦେଖିବାକୁ ମିଳିଥାଏ ଏବଂ ପୃଥିବୀର ସବୁ କୋଣରେ ଏହି ସାନ୍ତାଳ ଜନଜାତିମାନଙ୍କ ଅସ୍ତିତ୍ୱ ରହିଛି ବୋଲି ପ୍ରାୟ ଅନୁମାନ କରାଯାଏ ।

ବିଭିନ୍ନ ଜୀବିକା ଭିତରେ ନିଜକୁ ଖାପଖୁଆଇ ସମୟର ତାଳେ ତାଳେ ନିଜ ପରିବାରବର୍ଗଙ୍କ ସହିତ ବେଶ୍ ହସ ଖୁସିରେ ଜୀବନ ବିତାଇବାକୁ ସଦା ଆଗଭର ହୋଇଥାନ୍ତି । ଦୈନନ୍ଦିନ ଜଞ୍ଜାଳ ଭିତରେ ଥିଲେ ମଧ୍ୟ ନିଜ ସାନ୍ତାଳି ସମାଜରେ ଥିବା ପ୍ରଥା ପରମ୍ପରା, ପୂଜା ପଦ୍ଧତି ଓ ସମାଜ ସଂସ୍କୃତିକୁ କେବେ ଏମାନେ ଭୁଲନ୍ତି ନାହିଁ ।

ଏହି ସାନ୍ତାଳ ସମ୍ପ୍ରଦାୟ ଲୋକମାନଙ୍କର ପ୍ରତ୍ୟେକ ନିଜ ନିଜ ଗାଁରେ ଏକ ସ୍ୱତନ୍ତ୍ର ପୂଜା ପୀଠ ରହିଥାଏ, ଯାହାକୁ ସାନ୍ତାଳ ଭାଷାରେ 'ଜାହେର୍' କୁହାଯାଏ । ସାନ୍ତାଳି ସାହିତ୍ୟିକ ଭାଷାରେ ଏହାକୁ 'ଜାହେର୍ ଗାଲ୍' ଓ 'ଜାହେର୍ ଥାନ୍' କୁହାଯାଏ । ଜାହେର୍ ଗାଲ୍ ଏକ ପବିତ୍ର ପୂଜା ଓ ଧର୍ମପୀଠ, ଯାହାକୁ ପ୍ରତ୍ୟେକ ସାନ୍ତାଳି ଲୋକ ସମ୍ମାନ, ମାନମର୍ଯ୍ୟାଦା ଦେବା ସହିତ ଭକ୍ତିପ୍ରଣତିରେ ଏଠାରେ ଜୁହାରୀ ହୋଇଥାଏ । ଏହି ଜାହେର ଗାଲ୍ ଏକ ଧାର୍ମିକ ଅନୁଷ୍ଠାନ, ଯାହା ଗାଁର ନିଜ ପରିସୀମା ମଧ୍ୟରେ ସାଧାରଣତଃ ଗାଁ ମୁଣ୍ଡରେ ଅବସ୍ଥିତ ଥାଏ । ଏଠାରେ ପ୍ରାୟ ୫୦ରୁ ଅଧିକ ମାତ୍ରାରେ ଶାଳ ବୃକ୍ଷ ୨ରୁ ୪ ଏକର ଅଞ୍ଚଳ ଯାଏଁ ତୋଟା ମାଡି ରହିଥାଏ, କେତେକ ଗାଁରେ ୫୦୦ରୁ ଅଧିକ ଶାଳଗଛ ଅବସ୍ଥିତି ଥାଇ ୮ରୁ ୧୦ ଏକର ଯାଏଁ ଥିବାର ମଧ୍ୟ ଦେଖିବାକୁ ମିଳେ । ସମ୍ପ୍ରଦାୟର ପରମ୍ପରା ଅନୁସାରେ କେବଳ ଶାଳ ବୃକ୍ଷ ରୋପଣ କରି 'ଜାହେର୍ ଗାଲ୍' ତିଆରି କରାଯାଏ । ଏହି ସମ୍ପ୍ରଦାୟର ଅନ୍ୟ ପୂଜାସ୍ଥଳୀଗୁଡିକ ମଧ୍ୟ ରହିଛି କିନ୍ତୁ ସେସବୁକୁ 'ଜାହେର୍ ଗାଲ୍' କୁହାଯାଏ ନାହିଁ । ଜାହେର୍ ଗାଲ୍ କୌଣସି ମନ୍ଦିର କିମ୍ବା ଘର ଭିତରେ ହୋଇ ନଥାଏ । ଏହା ଏକ ଖୋଲାସ୍ଥାନ, ଯାହାର ଚାରିପଟେ ଶାଳ ବୃକ୍ଷ ରହିଥାଏ । ସାନ୍ତାଳି ଲୋକମାନଙ୍କର ବିଶ୍ୱାସ ରହିଛି ଯେ, ଜାହେର୍ ଗାଲ୍ ସେମାନଙ୍କୁ ବିଭିନ୍ନ କୁପ୍ରଭାବରୁ ସୁରକ୍ଷା ଦେଇଥାଏ ଏବଂ ସେଥିପାଇଁ ପ୍ରତ୍ୟେକ ସାନ୍ତାଳି ଗ୍ରାମବାସୀ ଏହି ପୂଜାପୀଠକୁ ଆଦିକାଳରୁ ରକ୍ଷଣାବେକ୍ଷଣ କରିଆସୁଛନ୍ତି ।

ସଭ୍ୟତାର ଇତିହାସ ପୃଷ୍ଠାକୁ ଓଲଟାଇଲେ ଜଣାଯାଏ, ଯେ ଏହି ଶାଳଗଛ ତୋଟାରେ କାଳକ୍ରମେ

ଗଢି ଉଠିଥିବା 'ଜାହେର ଗାଲ୍' ସାନ୍ତାଳି ସଂସ୍କୃତି ସହିତ ଅଙ୍ଗାଙ୍ଗୀ ଭାବେ ଜଡିତ ରହିଛି । ଅତୀତରେ ସାନ୍ତାଳି ସଭ୍ୟତାର 'ସାନ୍ତ୍ ଦିଶମ୍' ନାମକ ଏକ ବିରାଟ ବଡ ଦେଶ ଥିଲା । 'ସାଂ ଗାଡା' ନଦୀ ଉପତ୍ୟକାରେ ଥିବା 'ତିତ୍ରି ହୁଟୁବ୍ ଟାଣ୍ଡି' ନାମକ ଏକ ବିସ୍ତୃତ ପଥର ଅଞ୍ଚଳକୁ ଲାଗି ଏକ ଅଭୟାରଣ୍ୟ ରହିଥିଲା । ଏଠାରେ ବିଶାଳ ପଥର ଚଟାଣ ଉପର ଓ କୋରଡମାନଙ୍କରେ 'ଆଗିଲ୍ ମାନ୍ୱା' ତଥା ସାନ୍ତାଳି ପ୍ରଥମ ପୂର୍ବପୁରୁଷମାନେ ଜନବସତି ସ୍ଥାପନ କରିବା ଫଳରେ ସାନ୍ତାଳି ସଭ୍ୟତା ଗଢି ଉଠିଥିଲା । ସାନ୍ତାଳି ପୁରାଣଶାସ୍ତ୍ର 'ହିତାଲ୍' ଅନୁସାରେ ପରମପିତା ଓ ମାତା ହେଉଛନ୍ତି ପିଲ୍‌ଚୁ ହାଳାମ ଓ ପିଲ୍‌ଚୁ ବୁଢୀ । ତାଙ୍କରି ଔରସରୁ ସାନ୍ତାଳି ବଂଶଧରମାନେ ଜାତ ହୋଇଛନ୍ତି । ପରମପିତା ପିଲ୍‌ଚୁ ନିଜର ପୁତ୍ରମାନଙ୍କ କର୍ମ ଓ ଗୁଣର ଲକ୍ଷଣ ଅନୁସାରେ ସାନ୍ତାଳି ଜାତି ବିଭାଜନ କରିଛନ୍ତି ଏବଂ କାଳକ୍ରମେ ତାଙ୍କର ସନ୍ତାନ ସନ୍ତତିମାନେ ବିଭିନ୍ନ ଦଳର ଗୋଷ୍ଠିମାନ ଗଠନ କରିଥିଲେ । ସାନ୍ତାଳି ସମ୍ପ୍ରଦାୟର ସମୁଦାୟ ୧୨ଗୋଟି ସ୍ୱତନ୍ତ୍ର ଜାତି ରହିଛି ଏବଂ ସେଗୁଡିକ ହେଲା –୧) ହାଁସଦାଃ ୨) ମାରାଣ୍ଡି ୩) କିସ୍କୁ ୪) ସୋରେନ ୫) ହେମ୍ବ୍ରମ ୬) ବାସ୍କେ ୭) ବେଶ୍ରା ୮) ଟୁଡୁ ୯) ମୁର୍ମୁ ୧୦) ଚଣେ ୧୧) ଡଂଟ୍‌କା ଓ ୧୨) ପାଉରିଆ । ମାତ୍ର କାଳକ୍ରମେ ଶେଷ ତିନୋଟି ଯଥା ଚଣେ, ଡଂଟକା ଓ ପାଉରିଆ ଲୋକମାନେ ପ୍ରାୟତଃ ଲୋପ ପାଇଲେଣି କିମ୍ବା ସେମାନେ ଅନ୍ୟ ଗୋଷ୍ଠିରେ ମିଶି ଯାଇଛନ୍ତି ବୋଲି ଅନୁମାନ କରାଯାଏ ।

'ସାଂଗାଡା' ନଦୀ କୂଳରେ ଥିବା ଉର୍ବର ଜାଗାରେ ଏହି ସନ୍ତାଳି ସଭ୍ୟତାର ଲୋକମାନେ ଚାଷଜମି ତିଆରି କରି ଚାଷକାମ ଆରମ୍ଭ କରିଥିଲେ ଏବଂ କାଳକ୍ରମେ ସେମାନେ 'କୃଷିକାମ' ଶିକ୍ଷାଲାଭ କରି ପାରମ୍ପରିକ ପ୍ରଣାଳୀରେ କୃଷିବୃତ୍ତି କରିଆସୁଛନ୍ତି । ସେଠାରେ ଥିବା ଘଞ୍ଚ ଜଙ୍ଗଲରୁ ବିଭିନ୍ନ ଜୀବଜନ୍ତୁଙ୍କୁ ଶିକାର କରି ମାଂସ ଖାଇଲା ଓ ବଣ ପାହଡରୁ ମିଳୁଥିବା ଏକ ଲତା ଯାହାକୁ ସାନ୍ତାଳି ଭାଷାରେ 'ଲାମାଃ ଲାଲ୍' ବୋଲି କୁହାଯାଏ, ଏହି ଲତାକୁ ପଥରରେ ଛେଚି କତା ବାହାର କରି 'ଲାଲ୍ ବାବେର୍' ଦଉଡି କଲା । ଏହାରି ପତ୍ରକୁ ଲାମାଃ ସାକାମ୍ କୁହାଯାଏ, ଯାହାକୁ କାଠି ସାହାଯ୍ୟରେ ଟିପି ପତ୍ରର ପାତ୍ର 'ଖାଲାଃ' ପ୍ରସ୍ତୁତ କରି ବିଭିନ୍ନ ଖାଦ୍ୟ ଓ ଫଳମୂଳ ରଖିଲା । ଏହି ଲାମାଃ ଲାଲ୍ ଲତାର କତାକୁ ଛନ୍ଦି ବସ୍ତ୍ର ପରିଧାନ କରି ଲଜ୍ଜା ନିବାରଣ କରି ଶିଖିଲା ଏବଂ ଲତାର ପତ୍ରକୁ ଶୁଖାଇ 'ଗୁଙ୍ଗୁ' ପ୍ରସ୍ତୁତ କଲା, ଯାହାକୁ ବର୍ଷାଦିନେ ପରିଧାନ କରି ବର୍ଷା ଓ ଶୀତ ଦାଉରୁ ମଧ୍ୟ ନିଜକୁ ରକ୍ଷା ପାଇ ପାରୁଥିଲା । ସାନ୍ତାଳି ଆଗିଲ୍ ମାନୱାମାନେ ପ୍ରଥମେ ନିଜ ରହଣି ଘର ଏହି 'ଲାମାଃ ଲାଲ୍' ଲତା ପତ୍ରରେ ଗୁମ୍ଫା ତିଆରି କରି ରହୁଥିଲେ, ଯାହାକୁ ସାନ୍ତାଳି ଭାଷାରେ 'କୁମ୍ଭା' କୁହାଯାଏ ।

ଏହିଠାରେ ଥିବା ବଣ, ଜଙ୍ଗଲ, ପାହାଡ, ପର୍ବତ, ମାଳ ଆଦିରୁ ଫଳ ମୂଳ ଖାଇବା ସହିତ ଏଠାକାର ଜୀବଜନ୍ତୁଙ୍କୁ ଶିକାର କରି ମାଂସ ଖାଇ ନିଜର ଭୋକିଲା ପେଟ ପୋଷିଲା, ଶୁଖିଲା କାଠି ଉପରେ କାଠି ଘର୍ଷଣକରି ନିଆଁ ବାହାର କରିବା ସହିତ ଏଥିରେ ରୋଷେଇ କରିବା ପ୍ରଣାଳୀ ମଧ୍ୟ ଶିକ୍ଷାଲାଭ କରିଥିଲା । ସମ୍ପ୍ରଦାୟର ଜନସଂଖ୍ୟା ଅଭିବୃଦ୍ଧି ଘଟିବା ଫଳରେ ଗାଁ ଗଣ୍ଡା ମଧ୍ୟ ଗଢି ଉଠିଲା । ବୁଦ୍ଧି ଓ ସଭ୍ୟତାର ଧୀରେ ଧୀରେ ବିକାଶ ଘଟିବା ଫଳରେ ମନୁଷ୍ୟ ଜୀବନର ଚଳଣି ପ୍ରଣାଳୀରେ ମଧ୍ୟ ପରିବର୍ତ୍ତନ ଆସି ସୁଖରେ ଜୀବନଯାପନ କରିପାରିଲା । ଅଧୀବାସୀମାନେ ଆଉ ସବୁବେଳେ ଜଙ୍ଗଲରେ ଶିକାର ନକରି କୃଷି ଉପରେ ବେଶି ଧ୍ୟାନଦେଲେ ଓ ଚାଷ ଉପଯୋଗୀ ସମତଳ ଜାଗାମାନଙ୍କରେ ଚାଷବାସ କାମରେ ଅଧିକ ଲାଗି ପଡିଲେ । ନଦୀକୂଳିଆ ଓ ସୁରକ୍ଷିତ ସମତଳ ଅଂଚଳମାନଙ୍କରେ ସାନ୍ତାଳି ସଭ୍ୟତାର ବିକାଶ ହେବା ଯୋଗୁଁ ଅନେକ ସାନ୍ତାଳି ରାଜ୍ୟମାନ ଗଢି ଉଠିଥିଲା । ଏସବୁକୁ ସାନ୍ତାଳି ଭାଷାରେ 'ଗାଲ୍ ଦିଶମ୍' ବୋଲି କୁହାଯାଏ । ସଭ୍ୟତାର ବିକାଶ ଅନୁପାତରେ ସାନ୍ତାଳ ସମ୍ପ୍ରଦାୟ ଲୋକମାନଙ୍କର ନିଜର ପରିବାର, ଜାତି, ଦଳ, ଗୋଷ୍ଠି, ସମାଜ, ସଂସ୍କୃତି, ପରମ୍ପରା ଓ ସଂସ୍କାର ଆଦିର ଉନ୍ନତି ପ୍ରତି ଧ୍ୟାନ ଦେଲେ । ଯୁଗ ପରେ ଯୁଗ ସେମାନେ ସୁଖ ଶାନ୍ତିରେ ଜୀବନ ଅତିବାହିତ କରିପାରିଲେ କିନ୍ତୁ ପରେ

ପରେ ସେମାନଙ୍କର ଜୀବନ ପ୍ରଣାଳୀରେ ଅନେକ ବାଧା ସୃଷ୍ଟି ହେଲା । ପରସ୍ପର ଭିତରେ ସୁସମ୍ପର୍କ ରହିଲା ନାହିଁ ଏବଂ ସେମାନେ ନାନାପ୍ରକାର କଳହ, ଗଣ୍ଡଗୋଳ, ମାରପିଟ, ଝଗଡାଝାଟି, ହଣାକଟା, ତୀର ମରାମରି ହେଲେ । ଦଳଗତ ଗଣ୍ଡଗୋଳକୁ ଆଧାର କରି ନିଜ ପରିବାର ଭିତରେ ମଧ୍ୟ ସୁସମ୍ପର୍କ ନାହିଁ, ଫଳରେ ସେମାନେ ନାନାପ୍ରକାର ବାଧା, ବିଘ୍ନ ଓ ସମସ୍ୟାରେ ପଡିଲେ । 'ଯୋରଯାର ମୁଲକ୍ ତାର' ନୀତିରେ ଚାଲିଲା । ବାସସ୍ଥାନ, ବସ୍ତ୍ର, ପାନୀୟ ଜଳ ଓ ଖାଦ୍ୟ ପାଇଁ ସେମାନେ କଳହ କରିବା ଆରମ୍ଭ କଲେ । ସମାଜରେ ବେଶି ଅସାମାଜିକ କାମମାନ ବୃଦ୍ଧି ହେବା ଫଳରେ ସେମାନଙ୍କର ଜୀବନପ୍ରଣାଳୀରେ ଅନେକ ବାଧାପ୍ରାପ୍ତ ହେଲା । ଗୋଷ୍ଠି କନ୍ଦଳମାନ ସମାପ୍ତ ହେବା ପରିବର୍ତ୍ତେ ଗଣ୍ଡଗୋଳ ଅନେକ ଦିନ ଲାଗି ରହିଲା, ଫଳରେ ଲୋକମାନେ ଭଲରେ ଗଣ୍ଡାଏ ଖାଇବାକୁ ମଧ୍ୟ ପାଇଲେ ନାହିଁ । ସେମାନେ ନାନା ପ୍ରକାର ମହାମାରୀ ରୋଗଗ୍ରସ୍ତରେ ପଡି ଅନେକେ ଦୁର୍ବଳ ହେବା ସହିତ ମୃତ୍ୟୁବରଣ ମଧ୍ୟ କଲେ । କେତେକ ଦଳର ମୁଖିଆ ଓ ସରଦାର ଲୋକମାନେ ଗଣ୍ଡଗୋଳରେ ମରିଗଲେ, ଦଳର ମୁଖ୍ୟଲୋକ ମରିଯିବା ଫଳରେ ସେ ଦଳର ଲୋକମାନେ ସମ୍ପୂର୍ଣ୍ଣ ଅସହାୟ ଅବସ୍ଥାରେ ପଡି ରହିଲେ । ଏପରି ଜଟିଳ ଅବସ୍ଥାକୁ ଦେଖି ଦଳର ମୁଖିଆ, ସରଦାର ଓ ପଣ୍ଡିତ ଲୋକମାନେ ଆଉ ଗଣ୍ଡଗୋଳ ଉପରକୁ ଗଲେ ନାହିଁ । ସଭ୍ୟତାରେ କିଛି ଅଘଟଣ ଘଟିଥିବା କଥା ବୁଝି ପାରିଲେ, ଯୁଗ ଅନୁସାରେ କୌଣସି ଅମଙ୍ଗ କାରଣ ସକାଶେ ସାନ୍ତାଳ ସମାଜରେ ଏପରି ଦୈବ ଶକ୍ତିର କୁପ୍ରଭାବ ପଡିଛି ବୋଲି ମତ ଦେଲେ, ଯାହାଫଳରେ ସେମାନେ ଏପରି ଏକ ମହାବିପଦରେ ପଡିଛନ୍ତି ।

ଏହି ମହାବିପଦରୁ ସେମାନେ କିଭଳି ସବୁଦିନ ପାଇଁ ରକ୍ଷାପାଇ ପାରିବେ ଏବଂ ସେମାନେ କ'ଣ କଲେ ପୁନର୍ବାର ନିଜ ଜାତିଭାଇ ଓ ଜ୍ଞାତିକୁଟୁମ୍ବ ସହିତ ସଦ୍‌ଭାବ ରଖି ସମାଜରେ ସୁଖରେ ଜୀବନଯାପନ କରିପାରିବେ, ସେଥିପାଇଁ ସେମାନେ ଏକ ସ୍ଥାୟୀ ସମାଧାନର ପନ୍ଥା ଅନ୍ୱେଷଣ କରିବାରେ ସମସ୍ତେ ଏକାଠି ଆଲୋଚନା ସଭାରେ ବସିଲେ । ଏହାକୁ ସାନ୍ତାଳି ଭାଷାରେ 'ଆଚାରମିଃଦ୍ ବିଚାରମିଃଦ୍ ଲାଗିନ୍ ଦିଶମ୍ ହଲ୍ ଦର୍‌ବାର୍ ରେକ ଦୁଲୁଃବ୍ ଲେନା' ଅର୍ଥାତ୍ 'ସମ ଆଚରଣ ଓ ସମ ବିଚାରଣ' ପାଇଁ ଦେଶବାସୀମାନେ 'ଦରବାର' ସଭା କରି ବସିଥିଲେ ।

**୧) ଅଶନ ଗଛମୂଳେ ସଭା 'ଏରେ ଆତ୍‌ନାଃ'**

ସାନ୍ତାଳି ସଭ୍ୟତାର ସମସ୍ତ ଦଳର ମୁଖିଆ, ସରଦାର, ସଖା ଓ ପଣ୍ଡିତ ଲୋକମାନେ ପ୍ରଥମେ 'ଅଶନ' ଗଛ ଛାଇରେ ବସି ବିଚାର କଲେ । ଅଶନ ଗଛକୁ ସାନ୍ତାଳି ଭାଷାରେ ଆତ୍‌ନାଃ ଦାରେ କୁହାଯାଏ । ଲୋକମାନେ ତାଙ୍କର ନାନାପ୍ରକାର ସମସ୍ୟା ଓ ଅସୁବିଧା ସମ୍ମୁଖୀନ ହେଉଥିବା ବିଷୟରେ କହିଲେ ଏବଂ ବିଭିନ୍ନ ବିଷୟରେ ସବିଶେଷ ଆଲୋଚନା ପରେ ସାନ୍ତାଳି ସମାଜ, ସଂସ୍କୃତି, ପ୍ରଥା, ପରମ୍ପରା, ପର୍ବପର୍ବାଣି, ଆଚାର, ବିଚାର, ନୀତି ନିୟମ ଓ ଆଇନ କାନୁନ ଆଦି ସବୁର ବିଧି ପ୍ରସ୍ତୁତ କଲେ । ସେମାନେ ଯେତେବେଳେ ସଭାଭଙ୍ଗ କରିବାକୁ ଗଲେ ସେତେବେଳେ ଏକ ଭୟଙ୍କର ଅଘଟଣ ହଠାତ୍ ଘଟିଲା । 'ସେମାନେ ଯେଉଁ ଅଶନ ଗଛ ମୂଳରେ ବସି ବିଧି ପ୍ରସ୍ତୁତ କଲେ, ସେ ଗଛର ଡାଳ ଅଚାନକ ଭାଙ୍ଗି ତଳେ ପଡିବା ଆରମ୍ଭ କରିଥିଲା' । ଏହାକୁ ଦେଖି ସଖା ଓ ପଣ୍ଡିତମାନେ ଅଶୁଭ ଲକ୍ଷଣ ବୋଲି ମତ ଦେବା ସହିତ ଦେବାଦେବୀମାନେ ମଧ୍ୟ ତାଙ୍କରି ନିଷ୍ପତ୍ତି ଉପରେ ଖୁସି ନାହାନ୍ତି ବୋଲି ଭାବିଲେ ।

ଅଶନ ଗଛର ଏପରି ଦୈବ ଦୁର୍ଘଟଣା ଦେଖି ପଣ୍ଡିତମାନେ ଅଶନ ବୃକ୍ଷକୁ ଆଖ୍ୟା ଦେଲେ 'ଏରେ ଆତ୍‌ନାଃ' । କୌଣସି ଶୁଭକାମରେ ବାଧା ଉପୁଜିଲେ ସାନ୍ତାଳି ଭାଷାରେ 'ଏରେ ବା ଅଶୁଭ' କୁହାଯାଏ । ଯେମିତିକି ବାଟରେ ଗଲାବେଳେ ଯଦି ବିରାଡିଟିଏ ପାର ହୋଇଯାଏ । କୌଣସି ଶୁଭ କାମରେ କିମ୍ବା ଆଲୋଚନା ବେଳେ ଯଦି ବସିଥିବା ଖଟ କିମ୍ବା ଗଛର ଡାଳ ହଠାତ୍ କୌଣସି କାରଣ ନଥାଇ ଭାଙ୍ଗି ଯାଏ, ତେବେ ଏପରି ଅଘଟଣକୁ 'ଏରେ' କୁହାଯାଏ । ଅଶନ ଗଛଠାରେ ଅଶୁଭ

ଓ ଅଘଟଣ ଦେଖି ବିଚାରକମାନେ ଭୟଭୀତ ହୋଇ ପୁଣି ଅନ୍ୟ ଏକ ଜାଗାକୁ ଯାଇ ବସିଲେ ।

### ୨) ମହୁଲ ଗଛମୂଳ ସଭା 'ଖଦେ ମାତ୍‌କମ୍'

ଅଶନ ଗଛ ମୂଳରୁ ସମସ୍ତ ଦଳର ମୁଖିଆ, ସରଦାର, ସଖା ଓ ପଣ୍ଡିତମାନେ ଉଠି ଯାଇ 'ମହୁଲ ଗଛ' ମୂଳେ ବିଚାର କଲେ । ଏଠାରେ ମଧ୍ୟ ପୂର୍ବ ପରି ସବୁ ସମସ୍ୟା ପୁଣି ନୂଆ କରି ଆଲୋଚନା କଲାପରେ ବିଧି ପ୍ରସ୍ତୁତ କଲେ । ସଭାର ସମସ୍ତ କାମ ସାରି ସଭା ଭଙ୍ଗ କଲାବେଳକୁ ସେମାନେ ଯେଉଁ ଗଛ ମୂଳରେ ଆଲୋଚନା କରୁଥିଲେ, ସେହି ଗଛକୁ ଅନେଇ ଦେଖିଲା ବେଳକୁ ସେମାନେ ପୁଣି ଅବାସ୍ତବ ଓ ଅଘଟଣ ଘଟିଥିବାର ଦେଖିଲେ, 'ମହୁଲ ଗଛର ଧଳା ମହୁଲ ଫୁଲଗୁଡିକ ଖୁଦ ପରି ଛୋଟ ଛୋଟ ହୋଇଯାଇଛି' । ଏହାକୁ ଦେଖି ସଭା ମଣ୍ଡଳୀମାନେ ଅନେକ ଆଶ୍ଚର୍ଯ୍ୟ ହେଲେ, ପଣ୍ଡିତମାନେ ଏହାକୁ ଅଶୁଭ ଲକ୍ଷଣ ବୋଲି ମତ ଦେବା ସହିତ ଦେବାଦେବୀମାନେ ଏଥିରେ ଖୁସି ନାହାନ୍ତି ବୋଲି କହିଲେ । ମହୁଲ ଗଛର ଫୁଲଗୁଡିକ ଖୁଦପରି ହୋଇଥିବାରୁ ଏହାକୁ ଆଖ୍ୟା ଦେଲେ 'ଖଦେ ମାତ୍‌କମ୍' ତଥା 'ଖୁଦ ମହୁଲ' । ସେଠାରୁ ସମସ୍ତ ବିଚାରକମାନେ ଉଠି ଯାଇ ପୁଣି ଅନ୍ୟ ଗଛମୂଳ ଛାଇରେ ବସିଲେ ।

### ୩) ବରଗଛ ମୂଳେ ସଭା 'ପେଟେର୍ ବାଲେ'

ମହୁଲ ଗଛ ମୂଳରୁ ସମସ୍ତ ବିଚାରକ ମଣ୍ଡଳୀ ଉଠି ପୁଣି ଏକ ବିରାଟ ବରଗଛ ଛାଇରେ ଯାଇ ଆଲୋଚନା ଆରମ୍ଭ କଲେ । ପୂର୍ବ ପରି ଏଠାରେ ମଧ୍ୟ ସେମାନେ ଆରମ୍ଭରୁ ସମସ୍ତ ସମସ୍ୟାମାନ ଆଲୋଚନା କଲାପରେ ବିଧି ପ୍ରସ୍ତୁତ କଲେ । ତାଙ୍କର ସଭା ଓ ବିଧି ପ୍ରସ୍ତୁତି କାର୍ଯ୍ୟ ଶୁଭ କି ଅଶୁଭ ଲକ୍ଷଣ ଜାଣିବା ପାଇଁ ସମସ୍ତ ବିଚାରକ ମଣ୍ଡଳୀମାନେ ବ୍ୟସ୍ତ ହୋଇ ବସିଥିବା ଗଛକୁ ଚାହିଁଲେ । ସେମାନେ ଏଥର ମଧ୍ୟ ଏକ ଅଘଟଣ ଘଟିଥିବାର ଦୃଶ୍ୟ ଦେଖିଲେ, 'ବର ଗଛର ସମସ୍ତ ପତ୍ରଗୁଡିକ ମୋଡି ଜାକି ଜାକି ଛୋଟ ଛୋଟ ହୋଇଯିବା ସହିତ ବର ଗଛର ଡାଳ ସବୁ ବର ଓହଳ ପରି ତଳକୁ ଝୁଙ୍କି ଯାଇଥିଲା' । ବର ଗଛର ଏପରି ଅବସ୍ଥାକୁ ଦେଖି ପଣ୍ଡିତମାନେ 'ଅଶୁଭ ଲକ୍ଷଣ' ବୋଲି ମତଦେବା ସହିତ ବର ଗଛକୁ ନାମ ଦେଲେ 'ପେଟେର୍ ବାଲେ' । ସେଠାରୁ ସମସ୍ତ ବିଚାରକମାନେ ଉଠି ପଡି ପୁଣି ଅନ୍ୟ ଏକ ନୂତନ ଗଛ ମୂଳରେ ଯାଇ ବସିଲେ ।

### ୪)କେନ୍ଦୁ ଗଛମୂଳେ ସଭା 'ଲେପେଜ୍ ଡିରିଲ୍'

ବର ଗଛ ମୂଳେ ଅଶୁଭ ଲକ୍ଷଣ ପାଇଲା ପରେ ସମସ୍ତ ପଣ୍ଡିତ, ମୁଖିଆ ଓ ଅନ୍ୟ ମାନ୍ୟଗଣ୍ୟ ବ୍ୟକ୍ତିମାନେ ଯାଇ ଏଥର କେନ୍ଦୁ ଗଛ ମୂଳରେ ପୁଣି ବସି ବିଚାର ଆରମ୍ଭ କଲେ । ପୂର୍ବପରି ସେମାନେ ସମସ୍ତ ଆଲୋଚନା ଓ ନିୟମ ବିଧି ପ୍ରସ୍ତୁତ କରି ପୁଣି ଆଗପରି ଶୁଭ କି ଅଶୁଭ ଲକ୍ଷଣ ଜାଣିବା ପାଇଁ ସମସ୍ତେ କେନ୍ଦୁ ଗଛକୁ ଅନେଇଲେ । ଏଥର ମଧ୍ୟ ପୂର୍ବ ପରି ଅଶୁଭ ଲକ୍ଷଣ ଦେଖିବାକୁ ପାଇଲେ । କେନ୍ଦୁ ଗଛର ସମସ୍ତ ଅଙ୍ଗଗୁଡିକ ନିଆଁରେ ଜଳିଯାଇ ଅଂଗାର ପରି ଦେଖାଦେଲା ଓ କେନ୍ଦୁ ଫଳଗୁଡିକ ସିଝି ନଷ୍ଟ ହୋଇଯାଇ ଥିଲା । କେନ୍ଦୁ ଗଛ ଓ ଫଳର ଏପରି ଅବସ୍ଥାକୁ ଦେଖି ପଣ୍ଡିତମାନେ ଘଟଣାକୁ ମଧ୍ୟ ଅଶୁଭ ଲକ୍ଷଣ ବୋଲି ମତାମତ ଦେବା ସହିତ କେନ୍ଦୁ ଗଛକୁ ଆଖ୍ୟା ଦେଲେ 'ଲେପେଜ୍ ଡିରିଲ୍' ।

କେନ୍ଦୁ ଗଛର ଏପରି ଅବାସ୍ତବ ଅବସ୍ଥା ଓ ଲକ୍ଷଣ ଦେଖି ସମସ୍ତ ବିଚାରକମାନେ ଭାବିଲେ ସେମାନେ ପ୍ରସ୍ତୁତ କରିଥିବା ବିଧିଗୁଡିକ ଉପରେ କୌଣସି ସତ୍ୟତା ନାହିଁ, ଯାହାଫଳରେ ଦେବାଦେବୀମାନେ ଆଦୌ ପ୍ରସନ୍ନ ହେଉ ନାହାନ୍ତି । ନିରାଶ ହୋଇ ସେଠାରୁ ସମସ୍ତ ବିଚାରକମାନେ ଉଠି ଯାଇ ପୁଣି ଅନ୍ୟ ଏକ ଗଛ ମୂଳରେ ଯାଇ ବସିଲେ ।

### ୫) ଶାଳଗଛମୂଳେ ସଭା 'ସାରି ସାର୍‌ଜମ୍'

ଗୋଟିଏ ଗଛ ମୂଳେ ସବିଶେଷ ଆଲୋଚନା ଓ ବିଧି ପ୍ରସ୍ତୁତ ପରେ ଦୈବ ଦୁର୍ଘଟଣା ଘଟି ଅଶୁଭ ଲକ୍ଷଣ ପ୍ରକଟ ହେବାରୁ ଅନ୍ୟ ଏକ ନୂତନ ଗଛ ମୂଳରେ ଯାଇ ପୁନର୍ବାର ଆରମ୍ଭରୁ ପ୍ରସ୍ତୁତ କରିବା ଏବଂ ବାରମ୍ବାର ଏହିପରି ବିଫଳ, ହଇରାଣ ହରକତ ହୋଇ ସମସ୍ତ ବିଚାରକ ମଣ୍ଡଳୀମାନେ ନିରାଶ ହୋଇଯାଇଥିଲେ ସତ କିନ୍ତୁ

ସେମାନେ ହାର ମାନି ନଥିଲେ । ଏହିପରି ଭାବରେ ଅନେକ ଦିନ ପରେ ଦିନ ଓ ବର୍ଷ ପରେ ବର୍ଷ ବିଚାର, ସଭା ଓ ଆଲୋଚନା କରି ୧୨ବର୍ଷ କାଳ ଅତିବାହିତ ହୋଇଗଲା । ପରିଶେଷରେ ସେମାନେ ଏକ ଶାଳ ବଣରେ ପହଞ୍ଚି 'ଶାଳ ଗଛ' ମୂଳରେ ଯାଇ 'ଦରବାର' ସଭା ବସିଲେ ।

ଶାଳଗଛ ଛାଇରେ ବସି ସେମାନେ ପୂର୍ବପରି ଆଲୋଚନା ଆରମ୍ଭ କଲେ 'କାହିଁକି ସେମାନେ ଏପରି ଅନାହାରରେ ମୃତ୍ୟୁ, ଗଣ୍ଡଗୋଳ, ମାରପିଟ୍, ହଣାକଟା, ଲୁଣ୍ଠନ ଆଦିରେ ଲିପ୍ତ ରହି ବାରମ୍ବାର ହଇରାଣ ହରକତ ହୋଇ ଅର୍ଜି ଥିବା ଧନ ସମ୍ପତ୍ତି ସହିତ ମୂଲ୍ୟବାନ ମନୁଷ୍ୟ ଜୀବନକୁ ହରାଇ ବସୁଥିଲେ । ନିଜ ପିଲାଛୁଆ ଓ ପରିବାରବର୍ଗଙ୍କ ସହିତ ସୁଖରେ ସମୟ ଅତିବାହିତ କରିପାରି ନଥିଲେ । ଏ ସମସ୍ତ ଜଞ୍ଜାଳ ଓ ବିପଦରୁ କିଭଳି ଆଜୀବନ ସୁରକ୍ଷା ପାଇପାରିବେ, ସେସବୁ ବିଷୟରେ ସବିଶେଷ ଆଲୋଚନା କଲାପରେ ସାନ୍ତାଳ ସମାଜ, ସଂସ୍କୃତି, ଧର୍ମ, ପ୍ରଥା ପରମ୍ପରା, ନୀତି ନିୟମ ଓ ପାଂଚ ପଂଚାୟତର ଆଇନ୍ ଆଦି ବିଧି ପ୍ରସ୍ତୁତ କରି ଚୂଡାନ୍ତ ନିଷ୍ପତ୍ତି ନେଲେ ଏବଂ ସମ୍ପ୍ରଦାୟର ଇଷ୍ଟ ଦେବାଦେବୀଙ୍କୁ ପ୍ରଣାମ ଜଣାଇ, ମନ୍ତ୍ର ଜପି ପ୍ରାର୍ଥନା କଲେ । ସାନ୍ତାଳ ଲୋକଙ୍କର କରୁଣା ଗୁହାରି ଶୁଣି ଦେବତାମାନେ ସ୍ୱର୍ଗରୁ ଅହ୍ଲେଇ ଆସି ସାନ୍ତ୍ ଦେଶରେ ପ୍ରକଟ ହେଲେ ଏବଂ ଶାଳ ଗଛ ମୂଳେ ପ୍ରାର୍ଥନା କରୁଥିବା ସାନ୍ତାଳ ଲୋକମାନଙ୍କୁ 'ଆଶୀର୍ବାଦ' ଦେଇ କହିଲେ– 'ଧରମ୍ କରମ୍ ଗେ କାମିପେ' ଅର୍ଥାତ୍ 'ଧର୍ମ ଅନୁସାରେ କର୍ମ ହିଁ ମନୁଷ୍ୟର ପରମ କର୍ତ୍ତବ୍ୟ' । ସାନ୍ତାଳ ସମ୍ପ୍ରଦାୟ ଶାସ୍ତ୍ର ଅନୁସାରେ ଧରମ ହେଉଛି ଈଶ୍ୱର ବା ପରମପିତା ପରମେଶ୍ୱର । ତାଙ୍କର ଇଚ୍ଛାରେ ମନୁଷ୍ୟ କରମ୍ ବା କାର୍ଯ୍ୟ ସମ୍ପାଦନ କରିବା ପ୍ରତ୍ୟେକ ମନୁଷ୍ୟର ପରମ କର୍ତ୍ତବ୍ୟ ହେବା ବିଧେୟ । 'ସାନ୍ତ ଦିଶମ୍ ସାନ୍ତାଲ୍ ହଲ୍' ତଥା ସାନ୍ତ୍ ଦେଶର ସାନ୍ତାଳ ଲୋକମାନେ ଏଣିକି ଈଶ୍ୱରଙ୍କ ନିୟମ ଅନୁସାରେ ଜୀବନ–ଯାପନ କଲେ ଆଉ କେବେ ଏପରି ଜଟିଳ ସମସ୍ୟା ଓ ମହାବିପଦରେ ପଡିବେ ନାହିଁ ବୋଲି ଦେବତାମାନେ ଆଶୀର୍ବାଦ ଦେଇ ସେହି ଶାଳ ଗଛ ମୂଳରୁ ଉଭାନ ହେଲେ ।

ଶାଳ ଗଛ ମୂଳେ ବିଭିନ୍ନ ଆଲୋଚନା ମାଧ୍ୟମରେ ସାନ୍ତାଳି ବିଧି ପ୍ରସ୍ତୁତି କାମ ସମ୍ପୂର୍ଣ୍ଣ ଫଳପ୍ରଦ ହୋଇଥିବାରୁ ଓ ସ୍ୱର୍ଗପୁରରୁ ଦେବତାମାନେ ଓହ୍ଲେଇ ଆସି ବିଚାରକ ମଣ୍ଡଳୀକୁ ଆଶୀର୍ବାଦ ଦେଇ ଥିବାରୁ ପଣ୍ଡିତମାନେ ଶାଳଗଛକୁ 'ସାରି ସାର୍‌ଜମ୍ ଦାରେ' ଅର୍ଥାତ୍ 'ସତ୍ୟ ଶାଳ ଗଛ' ବୋଲି ଆଖ୍ୟା ଦେଲେ । ନିଜେ ଅବସ୍ଥାପିତ କରୁଥିବା ଦେଶର ନାମ ସାନ୍ତାଳି ଭାଷାରେ ରଖାଗଲା 'ସାନ୍ତ୍ ଦିଶମ୍' । ଯାହାର ଅର୍ଥ 'ଏକ ଶାନ୍ତିପୂର୍ଣ୍ଣ ଦେଶ' । ନିଜ 'ଦେଶ'ର ନାମ 'ସାନ୍ତ୍' ସହିତ 'ଲୋକ' ଶବ୍ଦ 'ହଲ୍'କୁ ଯୋଗ କରି ନିଜସ୍ୱ ଜାତିର ପରିଚୟ ରଖିଲେ 'ସାନ୍ତାଳ' । ନିଜ ସାନ୍ତାଳି ଭାଷାରେ–'ସାରି ହଲ୍ ଗେ ସାନ୍ତାଲ୍ ଦ' ଅର୍ଥାତ୍ 'ଧରମ' ଅବା ଈଶ୍ୱରଙ୍କ ଆଦେଶାନୁସାରେ ନିଜ କର୍ମ ସମ୍ପାଦନ କରୁଥିବା ଏକ ସଚ୍ଚୋଟ ପଣିଆ ମଣିଷ କୁହିଁ 'ହଲ୍' କୁହାଯାଏ ।

'ସାର୍‌ଜମ୍' ଶବ୍ଦଟିର କେତେକ ବିଶେଷତା ମଧ୍ୟ ରହିଛି–'ସାର୍' କହିଲେ 'ଉର୍ବର ଅବା ପୁଷ୍ଟି' ଏବଂ 'ଜମ୍' କହିଲେ ସନ୍ତାଳି ଭାଷାରେ ଭୋଜନ କରିବାକୁ ବୁଝାଏ । ଅତଏବ୍ ସାର୍‌ଜମ୍ କହିଲେ ପୁଷ୍ଟିସାର ଭୋଜନ ଗ୍ରହଣ କରିବାକୁ ବୁଝାଏ । ସାନ୍ତ୍ ଦେଶର ସାନ୍ତାଳ ଲୋକଙ୍କର ସମସ୍ତ କାର୍ଯ୍ୟ ଓ ବିଧି ଶାଳଗଛ ମୂଳେ ହିଁ ଫଳପ୍ରଦ ହୋଇଥିଲା, ତେଣୁ ସେହିଦିନଠାରୁ ସାନ୍ତାଳି ଲୋକମାନେ ଶାଳଗଛ ମୂଳେ ନିଜ ଇଷ୍ଟ ଦେବାଦେବୀଙ୍କୁ ସ୍ଥାପନ କରି ପୂଜା କରିବା ସହିତ ଏହାର ବିଭିନ୍ନ ଉପାଦାନଗୁଡିକ ନିଜ ସମାଜ, ସଂସ୍କୃତି ଓ ପ୍ରଥା–ପରମ୍ପରା ସହିତ ଜଡିତ କରି ବ୍ୟବହାର କରି ଆସୁଛନ୍ତି । ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ସାନ୍ତାଳି ଲୋକମାନେ ତାଙ୍କ ଇଷ୍ଟ ଦେବାଦେବୀଙ୍କ ଆଦେଶାନୁସାରେ ନିଜର ଧର୍ମ ଓ କର୍ତ୍ତବ୍ୟ ପାଳନ କରି ଚାଲିଛନ୍ତି ।

ସେମାନେ ବସବାସ କରୁଥିବା ପ୍ରତ୍ୟେକ ସାନ୍ତାଳି ଗ୍ରାମରେ ଦେବାଦେବୀଙ୍କୁ ପୂଜାର୍ଚ୍ଚନା କରିବା ପାଇଁ ଶାଳ ଗଛମାନ ଲଗାଇ 'ଜାହେର୍ ଗାଲ୍' ନାମରେ ନାମିତ କଲେ ଏବଂ ଏହାରି ମଧ୍ୟରେ ଦେବାଦେବୀଙ୍କୁ ସ୍ଥାପନ କରି ପୂଜା କଲେ । ଏହାପରେ ବିଧିବଦ୍ଧ ଭାବେ ସାନ୍ତାଳ ସମାଜର

ସମସ୍ତ ପ୍ରଥା ପରମ୍ପରା, ପର୍ବପର୍ବାଣି, ରୀତିନୀତି, ଶୁଭ ଓ ସଂସ୍କାର କାମରେ ଶାଳ ଗଛକୁ ଦେବତୁଲ୍ୟ ସମ୍ମାନ ଦେଇ 'ଦାରୁବ୍ରହ୍ମ' ରୂପରେ ସର୍ବତ୍ର ବ୍ୟବହାର କରିବା ଆରମ୍ଭ କଲେ ।

## ସାନ୍ତାଳ ସମାଜରେ ଶାଳ ଗଛର ବିଭିନ୍ନ ଉପାଦାନ ଗୁଡ଼ିକର ସଦ୍ ବ୍ୟବହାର

ଶାଳ ଗଛର ସାଧାରଣତଃ ଉଚ୍ଚତା ପ୍ରାୟ ୫୦ ଫୁଟରୁ ୧୫୦ ଫୁଟ୍ ଯାଏଁ ଦେଖିବାକୁ ମିଳିଥାଏ ଓ ଏହା ୧୦୦ ବର୍ଷରୁ ଅଧିକ ବର୍ଷ ଯାଏଁ ବଂଚି ରହିପାରେ । ଏହି ଶାଳଗଛର ବିଭିନ୍ନ ଅଙ୍ଗଗୁଡିକ ସାନ୍ତାଳି ଜନଜାତିମାନେ ବ୍ୟବହାର କରୁଥିବା ଉପାଦାନଗୁଡିକ ନିମ୍ନରେ ବର୍ଣ୍ଣନା କରାଗଲା ।

**(୧) ଶାଳ ପତ୍ର –** ପତ୍ରକୁ ସାନ୍ତାଳି ଭାଷାରେ 'ସାକାମ୍' କୁହାଯାଏ । ସାନ୍ତାଳି ଲୋକମାନେ ଶାଳ ପତ୍ରରେ ଖୋଲି, ସାର୍‌ତାଲ୍ ତଥା ୨ଟି ଶାଳ ପତ୍ରକୁ ଟିପି ଖାଦ୍ୟ ରଖିବା, ବଂଗାଫୁଲୁଃ ତଥା ପୂଜା ପାଇଁ ଦୋନା, ରେଃଦ୍ ତଥା ପତ୍ରପୁଡିଆ, ପୁଙ୍ଗି ତଥା ଦେଶୀ ବିଡି ପ୍ରସ୍ତୁତ, ଲାଃଦ୍ ତଥା ପତ୍ରପୋଡାରେ ଖାଦ୍ୟ ପ୍ରସ୍ତୁତ, ଖାଲାଃ ତଥା ଖାଦ୍ୟ ରଖିବା କିମ୍ବା ଖାଇବା ପାଇଁ ବଡ ଦୋନା ପ୍ରସ୍ତୁତ କରିବା, ପୋଟମ୍ ତଥା ଶୁଖିଲା ଖାଦ୍ୟ ସାମଗ୍ରୀକୁ ପୁଡିଆରେ ବାନ୍ଧି ଅନେକ ଦିନଯାଏଁ ରଖିବା । ଏହା ସହିତ ପତ୍ରକୁ ଶୁଖେଇ ସେମାନେ ଅନେକ ଦିନ ଯାଏଁ ରଖିଥାନ୍ତି ଓ ପର୍ବପର୍ବାଣିମାନଙ୍କରେ ଦରକାର ମୁତାବକ ଏହାକୁ ବ୍ୟବହାର କରିଥାନ୍ତି । ସାନ୍ତାଳି ସମାଜର ସଂସ୍କୃତି, ପ୍ରଥା ଓ ପରମ୍ପରା ଅନୁସାରେ ନିଜ ବନ୍ଧୁମାନଙ୍କୁ ବିବାହ ନିମନ୍ତ୍ରଣ ଦେଲାବେଳେ ଦୁଇଟି ଶାଳପତ୍ରକୁ ଟିପି 'ଫୁଲୁଃ' ତଥା ଦୋନା ତିଆରି କରାଯାଏ ଏବଂ ସେଥିରେ ଅଳ୍ପ ଅରୁଆ ଚାଉଳ ଓ ଦୁବଘାସ ରଖି ଏକ ହଳଦି ଲଗା ସୂତା ସାହାଯ୍ୟରେ ବାନ୍ଧି 'ବିବାହ ନିମନ୍ତ୍ରଣ' ଦିଆଯାଏ ।

**(୨)ଶାଳ ଫୁଲ–** ଶାଳ ଗଛରେ ପ୍ରଥମ ଫୁଲ ଆସିଲେ 'ବାହା ପାରାବ୍' ତଥା ପୁଷ୍ପ ପର୍ବ ପାଳନ କରାଯାଏ । ଏହାକୁ ସାନ୍ତାଳି ଭାଷାରେ 'ବାହାବଙ୍ଗା' ବୋଲି କହାଯାଏ । ଏହି ବାହା ବଙ୍ଗା ପର୍ବରେ ଶାଳ ଗଛର ଫୁଲ ପୂଜା କରାଯାଏ । ସମସ୍ତ ସାନ୍ତାଳ ଲୋକମାନେ ସମାଜର ପାରମ୍ପରିକ ବେଶରେ ସାଜି ଜାହେର୍ ଗାଳକୁ ଦର୍ଶନରେ ଯାଆନ୍ତି । ଜାହେର ଗାଳ୍‌ରେ ସମ୍ପ୍ରଦାୟର ଇଷ୍ଟ ଦେବାଦେବୀଙ୍କୁ ପୂଜାର୍ଚ୍ଚନା କରିବା ପରେ ବାହା ସେରେଞ୍ଜ୍(ପୁଷ୍ପ ଜନିତ ଗୀତ) ଓ ବାହା ଏନେଃଜ୍ (ପୁଷ୍ପ ଜନିତ ନାଚ) କରିଥାନ୍ତି । ଶାଳ ଫୁଲକୁ ପୂଜା କଲା ପରେ, ନାୟକେ ତଥା ପୂଜାରୀ ସମସ୍ତ ଭକ୍ତମାନଙ୍କୁ ଶାଳଫୁଲ ଦେଇଥାନ୍ତି ଏବଂ ଶ୍ରଦ୍ଧାଳୁମାନେ ଏହାକୁ ଭକ୍ତି ସହକାରେ ଦେବାଦେବୀଙ୍କର ଆଶୀର୍ବାଦ ଭାବି ବ୍ୟବହାର କରିଥାନ୍ତି । ଶାଳଫୁଲକୁ ପୁଅମାନେ କାନରେ ଗୁଞ୍ଜିଲା ବେଳକୁ ଝିଅମାନେ ଏହାକୁ ନିଜ ବେଣୀରେ ଖୋସାମାରି ସାନ୍ତାଳି ରମଣୀ ରୂପରେ ବେଶ ସାଜିଥାନ୍ତି ।

**(୩) ଶାଳ ଡାଳ–** ପ୍ରାତଃ ନିତ୍ୟକର୍ମ ବେଳେ ସାନ୍ତାଳି ଲୋକମାନେ ଶାଳ ଗଛର କଅଁଳିଆ ଡାଳରେ ଦାନ୍ତ ଘଷିବାକୁ ଭଲ ପାଆନ୍ତି । ଶାଳ ଗଛର ରସରେ କ୍ୱାଥ ଅଂଶ ଥିବାରୁ ଏହି ଶାଳ କାଠିରେ ଦାନ୍ତ ଘଷିଲେ ମାଢ଼ି ଓ ଦାନ୍ତ ଘା' ଅତି ଶୀଘ୍ର ଭଲ ହୋଇଥାଏ । କାହାଘରେ କୁଣିଆ ଆସିଲେ ସମ୍ମାନର ସହିତ ଶାଳ ଦାନ୍ତକାଠି ପ୍ରଦାନ କରି ପ୍ରାତଃ କାଳରେ ଅତିଥି ସଂସ୍କାର କରିବାର ସାନ୍ତାଳି ସମାଜରେ ବିଗତ ଦିନରୁ ଏକ ପରମ୍ପରା ରହିଛି ।

**(୪) ଶାଳ ବକ୍କଳ ଓ ଚେର–** ଶାଳ ଗଛର ବକ୍କଳ କ୍ୱାଥରୁ ଔଷଧ ତିଆରି କରି ଏହାକୁ ବିଭିନ୍ନ ରୋଗ ନିବାରଣ କରିବାରେ ବ୍ୟବହାର କରାଯାଏ । କେତେକ ଲୋକମାନେ ଶୁଖିଲା ବକ୍କଳକୁ ଜାଳ ଆକାରରେ ମଧ୍ୟ ବ୍ୟବହାର କରିଥାନ୍ତି । ଶାଳ ବୃକ୍ଷର ଚେରରେ ଅନେକ ଔଷଧୀୟ ଗୁଣମାନ ଭରି ରହିଥିବାରୁ ଏହାକୁ କବିରାଜମାନେ ମଧ୍ୟ ଔଷଧରେ ବ୍ୟବହାର କରିଥାନ୍ତି ।

**(୫) ଶାଳ ଗଣ୍ଡି–** ଶାଳ ଗଛର ଗଣ୍ଡି ବହୁତ ମଜଭୁତ ଓ ଦୀର୍ଘସ୍ଥାୟୀ ହୋଇଥିବାରୁ ଏହାକୁ ସାନ୍ତାଳି ଲୋକମାନେ ମୁଖ୍ୟତଃ ଠାକୁର ଘର ଓ ବାସ ଘର ଚୌକାଠ,

ଦ୍ୱାରବନ୍ଧ, କବାଟ, ଧାରଣା, ବତା ଏବଂ ରଳା ଆଦି ଆକାରରେ ଘର ତିଆରି କଲାବେଳେ ବ୍ୟବହାର କରିବାକୁ ପସନ୍ଦ କରିଥାନ୍ତି । ସାନ୍ତାଳି ଜନଜାତିମାନଙ୍କର ନିଜସ୍ୱ ଜମି ରହିଛି ଏବଂ ସେମାନେ ଚାଷବାସ କରିବାକୁ ଭଲପାଆନ୍ତି । ଶାଳଗଛର ମୋଟା ଗଣ୍ଡିରୁ ଚାଷୀମାନେ ହଳ ଲଙ୍ଗଳ ନିଜେ ତିଆରି କରନ୍ତି ଆଉ ଧାନ ଶସ୍ୟ ରଖିବା ପାଇଁ ଧାନ ଖମାର ଏହି ଶାଳ ଗଣ୍ଡି ଓ କାଠପଟାରେ ତିଆରି କରିଥାନ୍ତି । ସେମାନେ ଶାଳ ଗଛର ଗଣ୍ଡିକୁ ଜାଳେଣି କାଠ ରୂପେ ବିଶେଷ ଶୀତଦିନରେ ଜାଳି ଥଣ୍ଡାଦାଉରୁ ନିଜକୁ ରକ୍ଷା କରିଥାନ୍ତି ।

**(୬) ଝୁଣା–** ପୁରୁଣା ଶାଳଗଛରୁ ଝୁଣା ବାହାରି ଥାଏ । ଏହାକୁ ସାନ୍ତାଳି ଭାଷାରେ 'ଧୁଣା' କୁହାଯାଏ । ସାନ୍ତାଳି ଲୋକମାନେ ବିଭିନ୍ନ ଦେବାଦେବୀ ପୂଜାର୍ଚ୍ଚନା ବେଳେ ଝୁଣା ଧୂପ ଦେଇଥାନ୍ତି । ଏହା ବ୍ୟତୀତ, ଝୁଣାକୁ ମଶା ଧୂପ ଆକାରରେ ମଧ୍ୟ ବ୍ୟବହାର କରାଯାଏ । ଖାଦ୍ୟପାତ୍ରଗୁଡ଼ିକ କଣା ହୋଇଯାଇ ଥିଲେ ଝୁଣାକୁ ତରଳେଇ କଣା ବନ୍ଦ କରିବା ପାଇଁ 'ଝୁଣାମୁଦି' ବ୍ୟବହାର କରାଯାଏ । ଏହା ବ୍ୟତୀତ ଆଣ୍ଠୁ, ଗଣ୍ଠି ବାତ ଓ ଅଣ୍ଟାବ୍ୟଥାରେ ଝୁଣାକୁ ଔଷଧ ଆକାରରେ ବ୍ୟବହାର କଲେ ତୁରନ୍ତ ଉପଶମ ମିଳି ପାରିଥାଏ ।

**(୭) ଶାଳ ମଞ୍ଜି–** ଶାଳ ମଞ୍ଜିରୁ ଖାଇବା ଉପଯୋଗୀ ତେଲ ବାହାରି ଥାଏ । ସାନ୍ତାଳି ଲୋକମାନେ ଶାଳ ଫଳ ମଞ୍ଜିକୁ ପେଡ଼ି ସେଥିରୁ ତେଲ ବାହାର କରି ବିଭିନ୍ନ କାର୍ଯ୍ୟରେ ବ୍ୟବହାର କରିଥାନ୍ତି । ରାତ୍ରିରେ ଶାଳ ତେଲକୁ ଦୀପ ଆକାରରେ ବ୍ୟବହାର କରି ଅନ୍ଧାରରୁ ମୁକ୍ତି ମିଳିଥାଏ । ଏହା ବ୍ୟତୀତ ଶାଳମଞ୍ଜି ଚୂର୍ଣ୍ଣକୁ ମୁଣ୍ଡ କେଶ ଧୋଇବା ପାଇଁ ମଧ୍ୟ ବ୍ୟବାହାର କରାଯାଇଥାଏ ।

### 'ଜାହେର୍ ଗାଲ୍' ପୂଜାପୀଠ ନିର୍ମାଣ

ଜାହେର୍ ଗାଲ୍ ଏକ ପବିତ୍ର ପୂଜା ଓ ଧର୍ମ ପୀଠ । ଏହି 'ଜାହେର୍ ଗାଲ୍'କୁ ସାନ୍ତାଳ ସମ୍ପ୍ରଦାୟର ଜନଜାତି ମାନେ 'ଧରମ୍ ଗାଲ୍' ତଥା 'ଧର୍ମପୀଠ' ଭାବରେ ସମ୍ମାନ ଦେଇଥାନ୍ତି । ଜାହେର୍ ଗାଲ୍ ଏକ ସ୍ୱତନ୍ତ୍ର ସୀମା ପରିଧି ମଧ୍ୟରେ ଅବସ୍ଥିତ ରହିଥାଏ । ସାଧାରଣତଃ ଏହା ଆୟତାକାର ନହୋଇ ଗୋଲାକାର ତିଆରି କରାଯାଇ ଥାଏ । ଏହାର ଚତୁଃପାର୍ଶରେ ଅନେକ ଶାଳଗଛ ଲଗାଯାଇଥାଏ । ସାନ୍ତାଳି ଗାଁର ସମ୍ବଳାନୁସାରେ କେଉଁଠି କାଠଖୁଣ୍ଟ ପୋତି ସୀମା କରାଯାଇ ଥାଏ ତ କେଉଁଠି ଖାଲି ପଥରଗାଡ଼ି କିମ୍ବା ଥୋଇଦେଇ ଏହାର ସୀମା ଆବଦ୍ଧ କରି ସୁରକ୍ଷା କରାଯାଇଥାଏ । ଜାହେର୍ ଗାଲ୍‌କୁ ସୀମାବଦ୍ଧ କଲା ପରେ ଏହାରି ମଝିରେ ଏକ ସ୍ୱତନ୍ତ୍ର ତିଥି ଓ ବାର ଅନୁସାରେ ପୂଜା ପୀଠ 'ବଂଗାଥାନ୍' ତିଆରି କରାଯାଏ । ସାନ୍ତାଳି ଗାଁର ମୁଖିଆ, ନାୟ୍‌କେ, ପାରନିକ୍, ଗଡେତ୍, ଜଗ ଓ ଗ୍ରାମର ମାନଗଣ୍ୟ ଓ ପୁରୁଖା ଲୋକ 'ଗାଖୁଲ୍ ଗମ୍‌କେ' ମାନଙ୍କ ନକ୍ଷତ୍ରିକ୍ରମେ ସମସ୍ତ କାର୍ଯ୍ୟ କରାଯାଇ ଥାଏ । ଏହି ବଂଗାଥାନକୁ ତିଆରି କଲାବେଳେ ପୂଜା ବିଧିରେ ଥିବା ପୂଜାରୀ ଓ ଭକ୍ତମାନେ 'ନିର୍‌ବାର୍' ତଥା ବାରଣ ନୀତି ଅବଲମ୍ବନ କରିବା ସହିତ ଉପବାସ ରଖିଥାନ୍ତି ।

ଜାହେର ଗାଲ୍‌ର ମଝିରେ ଏକ ଭଲ ହୃଷ୍ଟପୁଷ୍ଟ ଶାଳ ଗଛ ଦେଖି 'ବଙ୍ଗାଥାନ' ପାଇଁ ସୀମା ଆବଦ୍ଧ କରାଯାଏ । ସୀମା ଆବଦ୍ଧ କଲାବେଳେ ଏକ ମନ୍ତ୍ର ବୋଲାଯାଏ । ଏହି ପୂଜା ପୀଠର ସୀମା ନିରୂପଣ କଲାପରେ ଶାଳ ଗଛର ପୂର୍ବ ଦିଗକୁ ଖୋଲା ରଖି କେବଳ ପଶ୍ଚିମ ଦିଗରେ ଖୁଣ୍ଟପୋତି ଗୋଟିଏ ପାଖ ଛାଉଣି କରିବାର ଆଦି କାଳରୁ ପରମ୍ପରା ରହିଛି । ଏହାକୁ 'ଜାହେର୍ ଅଳାଃ ଦାଲବ୍' ଅର୍ଥାତ୍ ଜାହେର୍ ଘର ଛାଉଣି କୁହାଯାଏ । ଜାହେର୍ ଗାଲ୍ ପୂଜା ପୀଠର ନିର୍ମାଣ ସମାପ୍ତ ହେଲାପରେ ଦେବା ଦେବୀଙ୍କୁ 'ବଙ୍ଗାଉମ୍' ତଥା ଦେବସ୍ନାନ ଓ 'ବଙ୍ଗା ରୁମ୍' ତଥା ଝୁମିବା କାର୍ଯ୍ୟ ସାରି ସେମାନଙ୍କୁ ସିଦ୍ଧିସ୍ଥାପନ କରାଯାଇଥାଏ । ଦେବୀ ମା' 'ଜାହେର ଆୟ' ହେଉଛନ୍ତି ଜାହେର ଗାଲ୍‌ର ମୁଖ୍ୟ ଇଷ୍ଟଦେବୀ, ତାଙ୍କୁ ଏଠାରେ ବିଶେଷ ଭାବରେ ପୂଜାର୍ଚ୍ଚନା କରାଯାଇଥାଏ । ଜାହେର୍ ଆୟଙ୍କ ସାଥୀରେ ଏଠାରେ ମାରାଂବୁରୁ ଓ ଲିଟା ଗୋସାଇଁ ପୂଜା ପାଉଥିବା ବେଳେ ଏହାର ଡାହାଣ ପାଖରେ ମଣେକ ଓ ତୁରୁୟ୍‌କ ପୂଜା ପାଆନ୍ତି ଏବଂ ଏହାର ଅଳ୍ପ ଦୂରରେ 'ସେନ୍ଦ୍ରାବଂଗା' ପୂଜା ପାଆନ୍ତି । ଏମାନଙ୍କର ଦର୍ଶନରେ

ସାନ୍ତାଳି ଲୋକମାନଙ୍କର ସର୍ବମଙ୍ଗଳ ହୋଇଥାଏ ବୋଲି ସମ୍ପ୍ରଦାୟରେ ଅନେକ ବିଶ୍ୱାସ ରହିଛି । ଅନ୍ୟ ସମ୍ପ୍ରଦାୟର ଲୋକମାନଙ୍କ ପରି ସାନ୍ତାଳି ସମ୍ପ୍ରଦାୟରେ ମଧ୍ୟ ବାର, ତିଥି, ମାସ, ଋତୁ ଓ ବର୍ଷଗୁଡିକ ପୃଥକ୍ ଭାବରେ ଗଣନା କରାଯାଏ ଓ ବିଭିନ୍ନ ପର୍ବପର୍ବାଣି, ପୂଜାପାଠ, ପ୍ରଥା ପରମ୍ପରାଗୁଡିକ ଆଡମ୍ବର ସହକାରେ ପାଳନ କରାଯାଏ । ଗାଁ ଆଖଡାଠାରେ ପାଂଚ ଲୋକ ଆସି ବସିଲା ପରେ ସେମାନେ ଜାହେର୍ ଗାଲ୍ ପୂଜା ତିଥି ନିର୍ଣ୍ଣୟ କରିଥାନ୍ତି ଓ ସମସ୍ତ ଗ୍ରାମବାସୀ ଏହାକୁ ମାନି ନିୟମାନୁସାରେ ପାଳନ କରିଥାନ୍ତି ।

ଜାହେର ଗାଲ୍‌ରେ ପୂଜା ଦିନ ଧାର୍ଯ୍ୟ ହୋଇଗଲେ ସମସ୍ତ ଗ୍ରାମବାସୀଙ୍କ ମନରେ ଖୁସିର ଲହରୀ ଖେଳିଯାଏ । ସମସ୍ତଙ୍କ ମନରେ ଆଶା ଥାଏ 'ଗାଁରେ ଏଥର ଯେପରି ବେଶ୍ ମୌଜମସ୍ତି ଓ ନାଚଗୀତ କରି ଭଲରେ ପର୍ବ ମାନିବେ', ସେଥିପାଇଁ ସମ୍ପୃକ୍ତ ଗାଁରେ ପୁଅପିଲାମାନଙ୍କ ଦ୍ୱାରା ସ୍ୱଚ୍ଛ ଅଭିଯାନ ଆରମ୍ଭ ହୋଇଯାଏ । ଗାଁର ରାସ୍ତାଘାଟ, ନାଳ ନର୍ଦ୍ଦମା, ଅନାବନା ଗଛଲତା ସଫାସୁତୁରା କରିବା ପାଇଁ ବିନା ମଜୁରିରେ ପରିବାରର ପ୍ରତି ଜଣେ ଲୋକ ବାହାରି ଆସି କାମରେ ଲାଗି ପଡନ୍ତି । ସମସ୍ତ ବିଲବାଡି କାମକୁ ବାଦ୍ କରି ମନ ଦେଇ ମିଳିମିଶି ସଫାକାମରେ ଲାଗି ପଡିଥାନ୍ତି, ଫଳରେ ଗାଁରେ ସଫାସୁତୁରା କରିବା ପାଇଁ ଏକ ସ୍ୱଚ୍ଛ ଅଭିଯାନ ଆରମ୍ଭ ହୋଇଯାଏ । ଗାଁର ସମସ୍ତ ପ୍ରକାର ସଫା ସୁତୁରା ରଖିବା ସହିତ ଜାହେର୍ ଗାଲ୍‌ର ମଧ୍ୟ ପରିଷ୍କାର ପରିଚ୍ଛନ୍ନ ରଖିଥାନ୍ତି । ମୁଖିଆଙ୍କ ନିର୍ଦ୍ଦେଶକ୍ରମେ ଗାଁର ଦୁଇ ଜଣ ଲୋକ 'ଜଗ' ଓ 'ଗଡେତ୍' ପୂଜା ହେବା ପୂର୍ବ ଦିନ ଏହି କାମକୁ ତ୍ୱରାନ୍ୱିତ କରିଥାନ୍ତି । ଏଥି ସହିତ ଗାଁର ସାନ୍ତାଳି ଝିଅମାନେ ନିଜନିଜର ଘର କାନ୍ଥକୁ ସଜେଇବା ପାଇଁ ବିଭିନ୍ନ ମାଟି ରଙ୍ଗ ଲିପା କାମ ଆରମ୍ଭ କରିବା ସହିତ ଦାଣ୍ଡ କାନ୍ଥଗୁଡିକରେ ଅତି ମନଲୋଭା ଚାରୁ କଳାମାନ ଆଙ୍କିଥାନ୍ତି । ଏହାକୁ ସାନ୍ତାଳି ଭାଷାରେ 'ଜେରେଲ୍ ପତାଓ' କୁହାଯାଏ । ମାଟି ରଙ୍ଗକୁ ବ୍ୟବହାର କରି ସାନ୍ତାଳି ଝିଅ, ବୋହୂ ଓ ମହିଳାମାନେ ନିଜ ନିଜର କାନ୍ଥରେ ଗଛ, ଲତା, ଫୁଲ, ପତ୍ର, ଡାଳ, ଧଡି, ମୟୂର, ପାରା, କପତ, ବଣୀ, ଶୂଆ, ସାରୀ, ବଗ, ଝରଣା, ସୂର୍ଯ୍ୟ, ଉଡାଜାହାଜ, ରକେଟ୍, ବାଦ୍ୟଯନ୍ତ୍ର ଓ ନୃତ୍ୟ ଆଦି ଚିତ୍ର ମାଧ୍ୟମରେ ନିଜର ଅନ୍ତର୍ନିହିତ କଳା କୌଶଳକୁ ପ୍ରଦର୍ଶନ କରିବା ସହିତ କାନ୍ଥ ବାଡରେ ବହୁତ ସୁନ୍ଦର ମନଲୋଭା ଦୃଶ୍ୟ ସେମାନେ ଆଙ୍କି ଥାଆନ୍ତି । କୌଣସି ବ୍ୟକ୍ତି ରାସ୍ତାରେ ଯାତାୟାତ କଲାବେଳେ ଏହିସବୁ ମନୋମୁଗ୍ଧକର ଚିତ୍ର ଓ ଦୃଶ୍ୟକୁ ଦେଖିବା ମାତ୍ରକେ ଅନେକ ପ୍ରଶଂସା କରିଥାଆନ୍ତି । ବାସ୍ତବରେ, ଆଜି ମଧ୍ୟ ଏହି ସାନ୍ତାଳ ଆଦିବାସୀମାନେ ତାଙ୍କର ବିଗତ ଦିନର କଳା, ସଂସ୍କୃତି ଓ ଐତିହ୍ୟକୁ ପ୍ରକୃତି ସହତି ସଂଯୋଗ କରି ସଂରକ୍ଷିତ କରି ରଖିଛନ୍ତି ।

ଭୂମିରେ ଲାଗି ରହିଥିବା କୌଣସି ପଦାର୍ଥକୁ ରାମ୍ପି ସଫା କରି ଗୋବର ଲିପା କାମକୁ 'ଗେଜ୍ ଗୁରିଜ୍' କୁହାଯାଏ । ସମସ୍ତ ପ୍ରକାର ପୂଜା ପ୍ରସ୍ତୁତି ସରିଲା ପରେ 'ଜାହେର ବଙ୍ଗା' ଦିନ ପ୍ରଭାତରୁ ଉଠି ସାନ୍ତାଳ ଘରର ମହିଳାମାନେ ଗୋବର ଲିପା କାମ କରିଥାନ୍ତି । ଏହି ଗୋବର ଲିପା କାମ କଲାପରେ ଆଉ କୌଣସି ସ୍ୱଚ୍ଛ କାମ କରନ୍ତି ନାହିଁ, ତେଣୁ ସମସ୍ତ ଘର କାମକୁ ପୂଜା ପୂର୍ବ ଦିନ ସମାପନ କରି କେବଳ ପର୍ବ ପାଳନ କରିବା ପାଇଁ ହିଁ ସେମାନେ ସଜବାଜ ହୁଅନ୍ତି ।

### ପୂଜାରୀ ଓ ପୂଜା ପ୍ରକାର

ଜାହେର ଗାଳର ପୂଜାରୀକୁ ସାନ୍ତାଳି ଭାଷାରେ 'ନାୟ୍‌କେ' କୁହାଯାଏ । ପ୍ରତ୍ୟେକ ସାନ୍ତାଳି ଗାଁରେ ଦୁଇ ଜଣ ନାୟ୍‌କେ ପଦବୀରେ ରହିଥାନ୍ତି । ଜଣେ ନାୟ୍‌କେ ଓ ଅନ୍ୟଜଣେ କୁଡାମ୍ ନାୟ୍‌କେ । ଜାହେର ଗାଳର ସମସ୍ତ ପ୍ରକାର ପୂଜା ପଦ୍ଧତି ନାୟକେଙ୍କ ହାତରେ ହୋଇଥିବା ବେଳେ କେତେକ ସ୍ୱତନ୍ତ୍ର ପୂଜା 'କୁଡାମ୍ ନାୟ୍‌କେ' କରିଥାନ୍ତି । କୁଡାମ ନାୟକେ 'ବୁଲ୍ ମାୟାମ୍' ପୂଜା କରନ୍ତି । ଧନୁତୀର ଧରି ବଣ ଜଙ୍ଗଲକୁ ଶିକାର କରିବାକୁ ଗଲାବେଳେ ଏହି 'କୁଡାମ ନାୟକେ' ମାନସିକ କରିଥାଏ । କୌଣସି ପ୍ରତିଯୋଗିତାରେ ବିଜୟ ଓ ସଫଳ ଲକ୍ଷ୍ୟ ହାସଲ କରିବାକୁ ହେଲେ ଗାଁବାସୀଙ୍କ ପାଇଁ କୁଡାମ୍ ନାୟକେ ହିଁ ମାନସିକ

କରିଥାଏ ଏବଂ ସେଥିରେ କୃତକାର୍ଯ୍ୟ ହେଲେ, ମାନସିକ ପୂଜା ଠିକ୍ ସମୟ ସୀମା ଭିତରେ ହିଁ ଦିଆଯାଏ । ମାନସିକ କାର୍ଯ୍ୟ ଅସାଧ୍ୟ ହୋଇଥିବାରୁ ପ୍ରାୟତଃ କୁଡାମ୍ ନାୟକେ ପଦବୀରେ କେବଳ ଗ୍ରାମର ପୁରୁଖା ବୃଦ୍ଧ ଲୋକଙ୍କୁ ହିଁ କରାଯାଏ । ସାନ୍ତାଳି ପରମ୍ପରା ଅନୁସାରେ ଜଣେ ସାନ୍ତାଳ ଗାଁର ନାୟ୍କେ ପୂଜା ବିଧିରେ ଯେତେ ପାରଙ୍ଗମ ଥିଲେ ମଧ୍ୟ ନିଜ ଗ୍ରାମ ବ୍ୟତୀତ ଅନ୍ୟ ଯେକୌଣସି ଗ୍ରାମର ଜାହେର୍ ଗାଲ୍‌ରେ ପୂଜା କରିପାରନ୍ତି ନାହିଁ ।

**ଜାହେର୍ ଗାଲ୍ ପୂଜା ବିଧି –** ସାନ୍ତାଳ ସମାଜ ଅନୁସାରେ ଜାହେର୍ ଗାଲରେ ପୂଜା ପଦ୍ଧତି ତଥା ବଙ୍ଗାବୁରୁ କରିବାରେ ଅନେକ ନୀତି ନିୟମ ସହିତ ବାରଣ ମଧ୍ୟ ରହିଛି । ଉପାସ ରଖି ପୂଜା ବିଧି ପାଳନକୁ ସାନ୍ତାଳି ଭାଷାରେ 'ନିର୍‌ବାର୍' କୁହାଯାଏ । 'ନିର୍‌ବାର୍' ବ୍ୟତୀତ ପୂଜାରେ ଯୋଗଦେବାକୁ ଥିବା ସମ୍ପୃକ୍ତ ନାୟ୍କେ, ମାଝି, ପାର୍‌ନିକ୍, ଗଡେତ୍, ଜଗ ଓ ଇଚ୍ଛୁକ ଗାଁ ଲୋକମାନେ ପୂଜା ପୂର୍ବ ରାତି କୌଣସି ଅସାମାଜିକ କାର୍ଯ୍ୟ କରନ୍ତି ନାହିଁ । ସେମାନେ ସକାଳ ହେବା ମାତ୍ରକେ ସମସ୍ତ ନିତ୍ୟକର୍ମ ସାରି କୌଣସି ଖାଦ୍ୟ ପଦାର୍ଥ ନଖାଇ, ନୂଆ କିମ୍ବା ଧୂଆ 'ଫୁଟା କାଚା' ବସ୍ତ୍ର ପରିଧାନ କରି କାନ୍ଧରେ ଏକ ଗାମୁଛା ପକାଇ ସଅଳ ପୂଜାରେ ଯୋଗଦେବା ପାଇଁ ବାହାରି ଯାହାନ୍ତି । ସେମାନେ ଜାହେର୍ ଗାଲ୍ ସୀମା ବାହାରେ ଜୋତା ଓ ଅନ୍ୟାନ୍ୟ ଅଦରକାରୀ ଜିନିଷ ରଖି ମୁଣ୍ଡିଆ ମାରି ସୀମା ଭିତରକୁ ପ୍ରବେଶ କରନ୍ତି । ସମସ୍ତ ଗାଁର ପୁରୁଷମାନେ ପୂଜାରୀ ଓ ମୁଖିଆଙ୍କ ପାଖରେ ଯାଇ ବସନ୍ତି ଓ ଦେବାଦେବୀଙ୍କୁ ପ୍ରଣାମ କରି ତାଙ୍କରି କଥାରେ ସହମତ ହୋଇ ସାନ୍ତାଳି ସମ୍ପ୍ରଦାୟର ନୀତିନିୟମ ଓ ପରମ୍ପରାକୁ ସମ୍ମାନ ଦେଇଥାନ୍ତି ।

ଜାହେର୍ ଗାଲ୍‌ରେ ପୂଜା ଅର୍ଚ୍ଚନା କରିବା ଆଗରୁ ଦେବସ୍ନାନ ପରମ୍ପରା ରହିଛି, ଯାହାକୁ 'ବଙ୍ଗା ଉମ୍' କୁହାଯାଏ 'ବଙ୍ଗା ଉମ୍' ପରେ 'ବଙ୍ଗା ପେରେଜ୍' କରାଯାଏ । ଜାହେର ଗାଲ୍‌ରେ ଗୋବର ଲିପା ସାଙ୍ଗକୁ ଧୂପ, ଦୀପ, ଝୁଣାଧୂପ, ସୁନୁମ ସିନ୍ଦୂର ତଥା ତେଲ ଓ ସିନ୍ଦୂର ମଖା, ଚୁମାଣା ତଥା ଆଳତୀ ବନ୍ଦନା, ଆୟନମ୍ କାଜଲ୍ ଓ ହରଃ ବାନ୍ଦେ ଆଦି ପୂଜା ଅର୍ଚ୍ଚନା ପୂର୍ବ ପ୍ରସ୍ତୁତି କାମକୁ 'ବଙ୍ଗା ପେରେଜ୍' କୁହାଯାଏ । 'ବଙ୍ଗା ପେରେଜ୍' ପରେ ଖଣ୍ଡ୍ ବେନାଓ ତଥା ମୁରୁଜ ତିଆରି କଲା ପରେ ବାଖେଣ ବିନ୍ତି ତଥା ମନ୍ତ୍ର ଜପିବା କାର୍ଯ୍ୟ ଆରମ୍ଭ ହୁଏ । ଏ ସମସ୍ତ ପୂଜାକାର୍ଯ୍ୟ ସମାପନ ହେଲା ପରେ ଭକ୍ତମାନଙ୍କୁ ଦେବାଦେବୀ ପ୍ରଣାମ ପାଇଁ ଛଡା ଯାଇଥାଏ । ଜାହେର୍ ଗାଲ୍‌ଠାରେ 'ନାୟ୍କେ' ବ୍ୟତୀତ କେହି ଏଠାରେ ପୂଜା କରିପାରନ୍ତି ନାହିଁ ।

**ଜାହେର ଗାଲ୍‌ରେ ବ୍ୟବହୃତ ବେଶଭୂଷା ଓ ବାଦ୍ୟଯନ୍ତ୍ର–** ଜାହେର୍ ଗାଲ୍‌ର ନିୟମ ଅନୁସାରେ ଗ୍ରାମର ସମସ୍ତ ସାନ୍ତାଳି ଲୋକ ଏଠାକୁ ପ୍ରବେଶ କରିଥାନ୍ତି କିନ୍ତୁ ମା' କୋଳରେ କ୍ଷୀର ଖାଉଥିବା ଛୁଆ, ମହିଳାମାନେ (ବାହାପର୍ବ ବ୍ୟତୀତ) ଓ ସମାଜ ବାରଣ ବାଛନ୍ଦ କରିଥିବା ଅସାମାଜିକ ଲୋକମାନଙ୍କୁ ଜାହେର୍ ଗାଲ୍ ପ୍ରବେଶ ପାଇଁ ନିଷେଧ ରହିଛି ।

**ପୁରୁଷ–** ସାନ୍ତାଳି ପୁଅ ଓ ପୁରୁଷ ଲୋକମାନେ ନିଜ ସମ୍ପ୍ରଦାୟରେ ପ୍ରଚଳିତ ଥିବା 'କାଚା' କିମ୍ବା 'ଫୁଟା କାଚା' ସହିତ ଗାମୁଛା, ଗଞ୍ଜି କିମ୍ବା ସାର୍ଟ ପରିଧାନ କରନ୍ତି । ଜାହେର୍ ଗାଲ୍‌କୁ ଯିବା ପାଇଁ ବିଭିନ୍ନ ଯାନବାହାନ ବ୍ୟହହାର କରିଥାନ୍ତି କିନ୍ତୁ ଏସବୁ ଜାହେର୍ ଗାଲ୍ ସୀମା ଭିତରକୁ କେହି ନିଅନ୍ତି ନାହିଁ । ଜାହେର୍ ଗାଲ୍ ଭିତରକୁ ଚପଲ କିମ୍ବା ଜୋତା ପ୍ରବେଶ କରିବା ନିଷେଧ ରହିଛି । ପ୍ରତ୍ୟେକ ସାନ୍ତାଳି ଲୋକ ଜାହେର୍ ଗାଲ୍ ଯିବା ପୂର୍ବରୁ ସମସ୍ତ ଶୌଚକାମ ସାରି ସ୍ନାନ କରିଥାନ୍ତି ଏବଂ ପ୍ରବେଶ କରିଲା ବେଳେ ମୁଣ୍ଡିଆ ମାରି ଭିତରକୁ ପ୍ରବେଶ କରନ୍ତି ।

**ମହିଳା –** ଝିଅ ପିଲା, ମହିଳା ଓ ସ୍ତ୍ରୀ ଲୋକମାନେ ସାମ୍ପ୍ରଦାୟିକ 'ଝାଲାଃ' ଶାଢୀ ସହିତ ରୁପା ନିର୍ମିତ ବାଲୁ, ଶୁପୁ, ପାନକାଠା, ପାଞ୍ଜିକ୍, ସୀଲ୍‌ହା ଓ ହାର ଆଦି ବ୍ୟବହାର କରିଥାନ୍ତି । ସାନ୍ତାଳ ସମ୍ପ୍ରଦାୟର ନୀତି ନିୟମ ଅନୁସାରେ ଏମାନେ ସବୁ ସମୟରେ ଜାହେର୍ ଗାଲ୍ ଭିତରକୁ ପ୍ରବେଶ କରିବା ପାଇଁ ନିଷେଧ ରହିଛି ମାତ୍ର, 'ବାହାବଂଗା' ପର୍ବ ଦିନ ସମସ୍ତେ ପ୍ରବେଶ କରି ବେଶ୍ ନାଚ ଗୀତ କରିଥାନ୍ତି ।

**ବାଦ୍ୟ ଯନ୍ତ୍ର–** ସାନ୍ତାଳି ସମାଜରେ ଆଦିକାଳରୁ ନିଜ ଆଦିବାସୀ ସମାଜ ଓ ସଂସ୍କୃତି ଅନୁଯାୟୀ ପାରମ୍ପରିକ ବାଦ୍ୟ ଯନ୍ତ୍ର ତଥା– ତୁମ୍‌ଦାଃ ତଥା ମାଦଳ, ଟାମାକ୍ ତଥା ନାଗରା, ଚଳଚୁଳି ତଥା ଡ୍ରମ୍, ବାନାମ୍ ତଥା କେନ୍‌ରା, ତିର୍‌ୟାଉ ତଥା ବଇଁଶୀ, କରତାଳ ତଥା ଖଞ୍ଜଣି, ଶାକ୍‌ଓା ତଥା ଶିଙ୍ଘ ତୂରୀ, ଘୁଳି ତଥା ଘଂଟ ଆଦି ବାଦ୍ୟ ଯନ୍ତ୍ର ବ୍ୟବହାର କରାଯାଏ ।

**ବିଭିନ୍ନ ପର୍ବ ଓ ପର୍ବାଣିରେ ଜାହେର୍ ଗାଲ୍ ପୂଜା**

ଜାହେର୍ ଗାଲ୍‌ରେ ପୂଜା ପଦ୍ଧତି 'ସାର୍ନା ଧର୍ମ' ଅନୁସାରେ ହୋଇଥାଏ । ଏଠାରେ ସବୁ ଦିନ ପୂଜାର୍ଚ୍ଚନା କରାଯାଏ ନାହିଁ ମାତ୍ର ସାନ୍ତାଳି ସମାଜର ସଂସ୍କୃତି, ପ୍ରଥା ଓ ପରମ୍ପରା ଅନୁସାରେ କେବଳ ପର୍ବ ପର୍ବାଣିମାନଙ୍କରେ ହିଁ ପୂଜା କରାଯାଇଥାଏ । ଏହା ବ୍ୟତୀତ ଗାଁର ସାମୂହିକ ସ୍ୱାର୍ଥ ପାଇଁ ପାଂଚ ପଞ୍ଚାୟତ ନିଷ୍ପତ୍ତିକ୍ରମେ ହିଁ ପୂଜା କରାଯାଇଥାଏ । ଯଦି କେହିଁ ଚାହିଁଲେ ପୂଜାରୀ ଓ ମୁଖିଆଙ୍କର ପରାମର୍ଶକ୍ରମେ ମାନସିକ ରଖିପାରେ କିନ୍ତୁ ସେ ମନସ୍କାମନା ପୂର୍ଣ୍ଣ ହେଲେ କେବଳ ପର୍ବପର୍ବାଣି ପୂଜା ସମୟରେ ହିଁ ତା'ର ମାନସିକ ଦେଇଥାଏ । ବିଭିନ୍ନ ପର୍ବପର୍ବାଣି ସମୟରେ ଜାହେର୍ ଗାଲ୍‌ଠାରେ ପୂଜାଗୁଡିକ ହେଲା ମାଗ୍ ବଙ୍ଗା, ବାହାବଂଗା, ସହରାୟ ଗଟ୍ ବଂଗା ଏବଂ ମାଃ ମଣେ ଇତ୍ୟାଦି ।

(୧) ପୁଜା ସାମଗ୍ରୀ– ପୂଜା ବିଧି ଖର୍ଚ୍ଚ ପାଇଁ ଗ୍ରାମରେ ପରିବାର ପ୍ରତି ଏକ ସମତୁଲ ଚାନ୍ଦା ଆଦାୟ କରାଯାଇଥାଏ । ଜାହେର୍ ଗାଳରେ ପୂଜାର୍ଚ୍ଚନା ପାଇଁ ପୂଜକମାନେ ଗାଁ ହାଟ କିମ୍ବା ନିକଟ ସହର ବଜାରରୁ ସଉଦାପତ୍ର କିଣିଥାନ୍ତି । ନିଜ ସମ୍ପ୍ରଦାୟର ପରମ୍ପରା ଓ ରୀତିନୀତି ଅନୁଯାୟୀ ପ୍ରତ୍ୟେକ ଥର ପୂଜାପାଇଁ ଏକ ସ୍ୱତନ୍ତ୍ର ମାଠିଆ, ହାଣ୍ଡି, ପାଛିଆ ଓ କୁଲା ଆଦି ହାଟରୁ କିଣାଯାଏ । ଏ ସମସ୍ତ ପୂଜା ସାମଗ୍ରୀକୁ ରାତିରେ ପୂଜାରୀ ଘରେ ରଖାଯାଏ ଓ ପୂଜା ଦିନ ଏସବୁ ଜାହେର୍ ଗାଲ୍‌କୁ ନିଆଯାଇ ପୂଜାର୍ଚ୍ଚନା କାମରେ ଲାଗିଥାଏ । ଅନ୍ୟାନ୍ୟ ଦରକାରୀ ପୂଜା ସମଗ୍ରୀ ଯଥା– ତେଲ, ଗୋବର, ଦୁବଘାସ, ଧୂପ, ଅରୁଆ ଚାଉଳ, ସଳିତା, ମେଥି, ଘିଅ ଓ ସିନ୍ଦୂର ଆଦିକୁ ଶାଳ ପତ୍ରରେ ରଖି ଏଗୁଡିକୁ ଏକ ନୂଆ ପାଛିଆ ଭିତରେ ସଜାଡି ରଖାଯାଏ । ଏହି ପାଛିଆକୁ 'ଟୁକି' କୁହାଯାଏ । ସାର୍ନାଧର୍ମର ଲୋକମାନେ ପୂଜିଥିବା ଭୋଗକୁ ପ୍ରାୟ ଶାଳପତ୍ରରେ ଭୋଜନ କରାଯାଇଥାଏ ।

(୨) ଗଡ୍ ଜହାର ବିଶେଷତ୍ୱ – ଜାହେର ଗାଲ୍‌ରେ ପୂଜା ପାଉଥିବା ଇଷ୍ଟଦେବୀ 'ଜାହେର୍ ଆୟ' ଓ ଅନ୍ୟ ଦେବତାମାନଙ୍କୁ ପ୍ରଣାମ କରିବାକୁ ସାନ୍ତାଳି ଭାଷାରେ 'ଗଡ ଜହାର' କୁହାଯାଏ । ମନ୍ଦିର ଭିତରେ କି ବାହାରେ ଇଷ୍ଟ ଦେବାଦେବୀଙ୍କୁ ଆଣ୍ଠେଇ ପ୍ରଣାମ କରିବାକୁ ସାନ୍ତାଳି ଭାଷାରେ 'ଗଡ୍' କୁହାଯାଏ । ସାନ୍ତାଳ ସମ୍ପ୍ରଦାୟ ଭାଷାର ଏହି 'ଗଡ୍' ଶବ୍ଦଟି ପାଶ୍ଚାତ୍ୟ ଦେଶର ଇଂରାଜୀ ଭାଷାର God (ଦେବତା) ଶବ୍ଦ ସହିତ ସାମଞ୍ଜସ୍ୟ ରହିଛି ବୋଲି ଶିକ୍ଷିତ ସମାଜରେ ଅନେକେ ଅନୁମାନ କରନ୍ତି । କଥାରେ ଅଛି, 'ଅତିଥି ଦେବୋ ଭବଃ' । ଏହାକୁ ମଧ୍ୟ ସାନ୍ତାଳି ଭାଷାରେ 'ପେଳା ପ୍ରଭୁ' ବୋଲି ବୋଲା ଯାଇଥାଏ । ତେଣୁ, ଅତିଥି ସଂସ୍କାର କଲା ବେଳେ ପ୍ରଭୁଙ୍କୁ ପ୍ରଣାମ କଲା ପରି 'ଗଡ୍'କୁ ଜହା ଅବା ପ୍ରଭୁଙ୍କୁ ପ୍ରଣାମ କରାଯାଇଥାଏ ।

ଆଦିବାସୀ ସାନ୍ତାଳ ସମ୍ପ୍ରଦାୟର ଏହି 'ଜାହେର୍' ଶବ୍ଦର ଅନେକ ତାତ୍ପର୍ଯ୍ୟ ରହିଛି, ଯାହାକୁ ବିଶ୍ଳେଷଣ କଲେ ଜଣାଯାଏ । ଜାହେର ଶବ୍ଦଟି ତିନୋଟି ଅକ୍ଷର 'ଜା', 'ହେ' ଏବଂ 'ର' ସମଷ୍ଟିରେ ଗଢ଼ା ।

୧) 'ଯା' ହେଉଛି ଦେବୀ ବନ୍ଦନାର ମୂଳମନ୍ତ୍ର ଯେପରି–

'ଯା ଦେବୀ ସର୍ବେ ଭୂତେଷୁ ଶକ୍ତି ରୂପେଣଂ ସଂସ୍ଥିତା,
ଯା ଦେବୀ ସର୍ବେ ଭୂତେଷୁ ମାତୃ ରୂପେଣଂ ସଂସ୍ଥିତା,
ଯା ଦେବୀ ସର୍ବେ ଭୂତେଷୁ ଶାନ୍ତି ରୂପେଣଂ ସଂସ୍ଥିତା
ନମଃ ତେସ୍ୟ ନମଃ ତେସ୍ୟ ନମଃ ତେସ୍ୟ
ନମଃ ନମାହଃ' ।

୨) 'ହେ' ଭକ୍ତର ଏକ କରୁଣା ଡାକ ଶବ୍ଦ । ଉକ୍ତ 'ହେ' ଶବ୍ଦ ମାଧ୍ୟମରେ ନିଜକୁ ପ୍ରଭୁଙ୍କ ପାଖରେ ସମର୍ପଣ

କରିଥାଏ ଏବଂ ସେ ଭକ୍ତିପ୍ରଣତିରେ ନିଜ ଇଷ୍ଟ ଦେବାଦେବୀଙ୍କୁ 'ହେ' ସମ୍ବୋଧନ କରି ଗୁହାରି କରିଥାଏ, ଯେପରି – ହେ ଭଗବାନ, ହେ ପ୍ରଭୁ, ହେ ମା' କରୁଣାମୟୀ, ହେ ଦୁଃଖ ହାରିଣୀ ମା' ଇତ୍ୟାଦି ।

୩) 'ର' ଅକ୍ଷରଟି ରକ୍ଷା କରିବାର ଏକ ପ୍ରତୀକ ଶବ୍ଦ । ଆମେ ବିପଦ ଆପଦ ପଡିଲେ ପ୍ରାୟ ଭଗବାନଙ୍କୁ ରକ୍ଷା କରିବା ପାଇଁ ଡାକିଥାଉ ।

ଏହିପରି ଭାବେ ସାନ୍ତାଳି ଆଦିବାସୀ ସମାଜର 'ଜାହେର' ଶବ୍ଦଟି ଇଷ୍ଟ ଦେବାଦେବୀଙ୍କୁ ଆରାଧନା କରିବାର ଏକ ଆଧାତ୍ମିକ ଶବ୍ଦ ଅଟେ ଏବଂ 'ଜାହେର୍ ଗାଲ୍' ଏକ ଦୈବଶକ୍ତି ପୀଠ, ଯେଉଁଠାରେ ଗାଁର ସର୍ବମଙ୍ଗଳ ପାଇଁ ନାୟ୍କେ ବିଭିନ୍ନ ସମୟରେ ପ୍ରକୃତିର ପୂଜା କରିଥାଏ । ସାନ୍ତାଳି ଲୋକଙ୍କ ବିଶ୍ୱାସରେ ଜାହେର ଗାଲ୍ ଦେବୀ 'ଜାହେର ଆୟ' ହେଉଛନ୍ତି ଆମର ମାଟି ମା', ଯାହାଙ୍କ କରୁଣାରେ ଆମ୍ଭେମାନେ ଖାଦ୍ୟ, ଶସ୍ୟ, ପେୟ, ଫଳମୂଳ, ପନିପରିବା ଓ ଖଣିଜ ସମ୍ପତ୍ତି ଆଦି ଉତ୍ପତ୍ତି ହୋଇଛି । ଏସବୁ କେବଳ ଦେବୀ ମା' ଜାହେର ଆୟଙ୍କ କରୁଣାରୁ ଉତ୍ପତ୍ତି ହୋଇଛି ବୋଲି ସାନ୍ତାଳି ସମାଜରେ ଆଦିକାଳରୁ ବିଶ୍ୱାସ ରହିଆସିଅଛି । ସାନ୍ତାଳ ଜନଜାତିଙ୍କ ମତରେ ଏ ଧରାପୃଷ୍ଠର କରୁଣା ବିନା ଜୀବଜଗତ ବଂଚି ରହିବା ଅସମ୍ଭବ । ଏହିପରି ଭାବରେ 'ଜାହେର' ଶବ୍ଦଟି ହେଉଛି ପ୍ରାର୍ଥନା, ପୂଜାର୍ଚ୍ଚନା, ବନ୍ଦନା, ମନ୍ତ୍ର, ତନ୍ତ୍ର ଓ ତପସ୍ୟା କରିବାର ଏକ ପବିତ୍ର ଓ ଧାର୍ମିକ ଶବ୍ଦର ସମାହାର, ଯାହାର ଉଚ୍ଚାରଣରେ ଦେବାଦେବୀଙ୍କ ସହିତ ସୁସମ୍ପର୍କ ସ୍ଥାପନ କରିହୁଏ ବୋଲି ସାନ୍ତାଳି ସମ୍ପ୍ରଦାୟରେ ଦୃଢ ବିଶ୍ୱାସ ରହିଛି ।

ଅତୀତର ସେହି 'ସାନ୍ତ୍ ଦିଶମ୍' ବର୍ତ୍ତମାନର ଲୁଗୁବୁରୁ ଅଂଚଳ ବୋଲି ଅନୁମାନ କରାଯାଏ । ଏହା ଝାଡଖଣ୍ଡ ରାଜ୍ୟର ବକାରୋ ଜିଲ୍ଲା ଅନ୍ତର୍ଗତ ଗୋମିଆ ବ୍ଲକ୍ ଅଧୀନସ୍ଥ ଲାଲପାନିଆ ସହର ନିକଟରେ ଅବସ୍ଥିତ । ଏଠାରେ ସାନ୍ତ୍ ଦେଶର ସାନ୍ତାଳ ସଭ୍ୟତାର ଲୋକମାନେ ବାରବର୍ଷ କାଳ 'ଆଚାର ବିଚାର' କରିଥିବାର ଐତିହାସିକ ପ୍ରମାଣ ଆଜି ମଧ୍ୟ ଦେଖିବାକୁ ମିଳେ । ଏଠାରେ ରହିଥିବା ଲୁଗୁବୁରୁ ଓ ଘାଂଟା ବାଳେ ବୁରୁ, ସିତାନାଲା ନଈ, ଦର୍ବାର୍ ଚାଟାନି, ରାଜ୍‌ରାପାଃ, ପେଟେର୍ ବାଳେ ଇତ୍ୟାଦି ଏବେ ସାନ୍ତାଳି ଲୋକମାନଙ୍କର ବିରାଟ ଦର୍ଶନୀୟ ସ୍ଥାନ ପାଲଟିଛି । ଏଠାରେ ପ୍ରତ୍ୟେକ ବର୍ଷ କାର୍ତ୍ତିକ ପୂର୍ଣ୍ଣମୀ ଦିନ ଦେଶବିଦେଶରୁ ଲକ୍ଷଲକ୍ଷ ସଂଖ୍ୟାରେ ପର୍ଯ୍ୟଟକ ଆସି ସାନ୍ତାଳି ଇଷ୍ଟ ଦେବାଦେବୀଙ୍କୁ ଏବଂ ପୂର୍ବପୁରୁଷ 'ଆଗିଲ୍ ମାନଓ୍ୱାମାନଙ୍କୁ ସ୍ମରଣ କରି ଭକ୍ତମାନେ ବିଭିନ୍ନ ଦର୍ଶନୀୟ ସ୍ଥାନଗୁଡିକ ଭ୍ରମଣକରି ଦର୍ଶନ କରିଥାନ୍ତି ।

ପର୍ଯ୍ୟାବରଣ, ପ୍ରକୃତି ଓ ପରିବେଷ ସୁରକ୍ଷା ଦିଗରେ ଜାହେର ଗାଲ୍– ଦେଶରେ ଯେତେଗୁଡିଏ ସାନ୍ତାଳି ଗାଁ ରହିଛି ପ୍ରତ୍ୟେକ ଗ୍ରାମରେ ଗୋଟିଏ ଲେଖାଏଁ 'ଜାହେର୍ ଗାଲ୍' ରହିଛି । ଫଳରେ ପ୍ରକୃତିର ସୌନ୍ଦର୍ଯ୍ୟକୁ ଉପଭୋଗ କରିବା ସହିତ ଭଲ ପରିବେଶ ସୃଷ୍ଟି ଓ ସୁରକ୍ଷା ହୋଇପାରୁଛି । ଏହାର ପ୍ରଭାବ ସମସ୍ତ ମାନବ ସମାଜ ଓ ସଂସ୍କୃତି ଉପରେ ପଡିଲେ ଦିନେ ଆମେ ପର୍ଯ୍ୟାବରଣକୁ ସୁରକ୍ଷା ଦେଇପାରିବା, ଏଥିସହିତ ଏକ ସୁସ୍ଥ ବାତାବରଣ ଓ ପରିବେଶ ମଧ୍ୟରେ ସମସ୍ତେ ଏକ ନୀରୋଗ ଜୀବନ ଯାପନ କରିପାରିବା । ଆଦି କାଳରୁ ଯୁଗଯୁଗ ଧରି ସାନ୍ତାଳି ସମାଜ ଓ ଶାଳ ଗଛ ଦୁହେଁ ଅଭିଚ୍ଛେଦ୍ୟ ଅଙ୍ଗ ଭାବରେ ଜୀବନଯାପନ କରି ଆସୁଛନ୍ତି । 'ଜାହେର୍ ଗାଲ୍' ବିନା ସାନ୍ତାଳି ଗାଁର ଅସ୍ତିତ୍ୱ ଅସମ୍ଭବ । ଏଥିରୁ ଜଣାଯାଏ ଯେ ସାନ୍ତାଳି ଲୋକମାନଙ୍କର ପରିବେଷ ସୁରକ୍ଷା ଦିଗରେ ଆଦିକାଳରୁ ସାମୂହିକ ଉଦ୍ୟମ ଜାରି ରହିଛି । ଜାହେର୍ ଗାଲ୍‌ରେ ରହିଥିବା ଏହି ଶାଳଗଛଗୁଡିକ ସୁରକ୍ଷାରେ ଦେବାପାଇଁ ଅନେକ କଟକଣାମାନ ମଧ୍ୟ ଜାରି କରାଯାଇ ଥାଏ । କେହି ଜାହେର ଗାଲ୍‌ର କୌଣସି ବୃକ୍ଷ କାଟିଲେ ତାଙ୍କୁ ଜୋରିମାନା ଦେବାକୁ ହୁଏ ଏବଂ ପାଂଚ ପଂଚାୟତ ନିଷ୍ପତ୍ତିକ୍ରମେ ତାଙ୍କୁ ସମାଜରୁ ବାରଣ ଓ ବାଛନ୍ଦ ମଧ୍ୟ କରାଯାଇଥାଏ । ଏହାରି ଭୟରେ କେହି ଜାହେର୍ ଗାଲ୍ ଶାଳ ଗଛ କାଟନ୍ତି ନାହିଁ, ଗାଁରେ ସମସ୍ତେ ମିଳିମିଶି ଜୀବନ ଯାପନ କରିବା ସହିତ ନିଜ ସମ୍ପ୍ରଦାୟରେ ଐକ୍ୟ ଓ ସଦ୍‌ଭାବ ମଧ୍ୟ ସୃଷ୍ଟି ହୋଇଥାଏ ।

ଭାରତ ମହାଦେଶର ସାନ୍ତାଳ ଅଧ୍ୟୁଷିତ ରାଜ୍ୟ ଯଥା– ଓଡ଼ିଶା ପ୍ରଦେଶ, ଝାଡ଼ଖଣ୍ଡ, ବିହାର, ପଶ୍ଚିମ ବଙ୍ଗ,

ଛତିଶଗଡ, ଆସାମରେ 'ଜାହେର୍ ଗାଲ୍' ଅବସ୍ଥିତ ରହିଛି । ଏହିସବୁ ରାଜ୍ୟମାନଙ୍କରେ ଜାହେର୍ ଗାଲ୍ ରକ୍ଷଣାବେକ୍ଷଣ ପାଇଁ ଆଜିକାଲି ସାନ୍ତାଳି ସମାଜର ଲୋକମାନେ ବିଭିନ୍ନ ସଂଘ, ମହାସଂଘ ଗଠନ କରି ଜାହେର୍ ଗାଲ୍‌ର ଯଥାବିଧି ସୁରକ୍ଷା ଓ ଉନ୍ନତି ପାଇଁ ସରକାରଙ୍କ ପାଖରେ ଅନେକ ଦାବି କରିଆସୁଛନ୍ତି । ଆମ ଦେଶ ବାହାରେ ଯେଉଁ ଅଂଚଳମାନଙ୍କରେ ଜାହେର୍ ଗାଲ୍ ଅବସ୍ଥିତ ରହିଛି, ସେଗୁଡିକ ହେଲା–ନେପାଳ, ବଙ୍ଗଳା ଦେଶ, ଭୁଟାନ ଓ ମ୍ୟାନ୍‌ମାର୍ । ଏହିସବୁ ଦେଶ ଓ ସୀମା ଅଂଚଳରେ ବସବାସ କରୁଥିବା ସାନ୍ତାଳି ଗାଁରେ ଏକ ସ୍ୱତନ୍ତ୍ର ଭାବରେ ଜାହେର୍ ଗାଲ୍ ଅବସ୍ଥିତ ରହିଛି । ଜଣେ ଅଚିହ୍ନା, ଅପରିଚିତ ସାନ୍ତାଳ ଲୋକ ବିଦେଶ ଗସ୍ତରେ ଗଲେ, ଏହି ଜାହର୍ ଗାଲ୍ ଦେଖି ଜାଣିପାରେ ତା'ର ନିଜସ୍ୱ ଜାତି ଭାଇ, ସମାଜ ଓ ସଂସ୍କୃତିର ଲୋକମାନେ ସେହି ଗାଁରେ ରହିଛନ୍ତି । ଏହି ପବିତ୍ର ତଥା ଧର୍ମର ଧାମ ଜାହେର୍ ଗାଲ୍‌କୁ ଦେଖିବା ମାତ୍ରକେ ତା'ର ଦୁଃଖ, କଷ୍ଟ, ଭୋକ ଓ ଶୋଷ ସବୁ ଭୁଲି ଯାଇଥାଏ । ତାକୁ ନିର୍ଭୟ ଲାଗେ ଓ ନିଜସ୍ୱ ଜାତିର ଅସଲ ପରିଚୟ ମିଳିଗଲା ପରି ତାକୁ ଅନୁଭୁତ ହୋଇଥାଏ । ଏପରିସ୍ଥଳେ ସେ ବିଦେଶୀ ବୋଲି ପରିଚୟ ଦେଲେ ତାଙ୍କୁ ସମ୍ପୃକ୍ତ ଗାଁର ମୁଖିଆ ଘରକୁ ପାଛୋଟି ନିଆଯାଏ ଏବଂ ତାଙ୍କୁ ସାନ୍ତାଳି ସଂସ୍କୃତି ଅନୁସାରେ 'ଦାରାମ୍ ଦାଃ' କଲାପରେ ଖାଦ୍ୟପେୟ ସେବା କରାଯାଏ ।

ଆଜି 'ଜାହେର୍ ଗାଲ୍ ଶାଳ ଗଛ' ସାନ୍ତାଳି ସମାଜରେ ଦାରୁବ୍ରହ୍ମ ରୂପରେ ପୂଜା ପାଉଛି । 'ଜାହେର୍ ଗାଲ୍' ଦ୍ୱାରା ସାନ୍ତାଳ ସମାଜର ପ୍ରଥା, ପରମ୍ପରା, ନାଚ, ଗୀତ, ଚଳଣି, ପ୍ରଣାଳୀ, ଅଲ୍‌ଚିକି ଲିପି ଶିକ୍ଷା ଓ ସଂସ୍କାର ଆଦିର ଉନ୍ନତି ଘଟାଇ ପ୍ରଗତି ପଥେ ଟାଣିନେଉଛି ଏବଂ ଏହା ସହିତ ଆଦିବାସୀ କଳା, ସଂସ୍କୃତି, ସାହିତ୍ୟ, ଭାଷା ଓ ନୀତି ନିୟମ ଆଦିକୁ ବେଶ ସୁରକ୍ଷା ଦେଇପାରୁଛି । ଏହା ଆମ ପର୍ଯ୍ୟାବରଣକୁ ପ୍ରଦୂଷଣ ମୁକ୍ତ କରି ଏକ ସୁସ୍ଥ ବାତାବରଣ ସୃଷ୍ଟି କରିବାର ମଧ୍ୟ ସାମର୍ଥ୍ୟ ହୋଇପାରୁଛି । ପର୍ଯ୍ୟାବରଣ ଠିକ୍ ହେଲେ ପୃଥିବୀରେ ଜଳ, ବାୟୁ ଓ ବୃଷ୍ଟିପାତ ସଠିକ୍ ରହିବ ଏବଂ ଜୀବଜଗତ, ଉଦ୍ଭିଦ ଗଛଲତା ସହିତ ମାନବ ଜୀବନ ପ୍ରକ୍ରିୟାରେ କୌଣସି ଅସୁବିଧା ହେବ ନାହିଁ ।

ବାସ୍ତବରେ ଜାହେର ଗାଲ୍ 'ସାନ୍ତାଳି ସମାଜ ସଂସ୍କୃତିର ଏକ ଅବିଚ୍ଛେଦ୍ୟ ଅଙ୍ଗ', ଯାହା ଆମ ପର୍ଯ୍ୟାବରଣ ରକ୍ଷଣା ବେକ୍ଷଣରେ ସାହାଯ୍ୟକାରୀ ଅଟେ । ଏକ ପ୍ରଦୂଷଣ ମୁକ୍ତ ପରିବେଶ ସୃଷ୍ଟି କରିବାରେ ଏହାର ଭୂମିକା ଯଥେଷ୍ଟ ବେଶି ଓ ଇତିହାସ ପୃଷ୍ଠାରେ ଏହା ଏକ ବିରଳ ସଂସ୍କୃତିର ଜୀବନ୍ତ ଦୃଷ୍ଟାନ୍ତ ।

ବରିଷ୍ଠ ଅର୍ଥନୈତିକ ଅନୁସନ୍ଧାନକାରୀ
ଯୋଜନା ଓ ସଂଯୋଜନ ବିଭାଗ, ଲୋକସେବା ଭବନ
ଭୁବନେଶ୍ୱର



# ତମାଲକ୍ଷେତ୍ରମ୍

ସୁରେଶ କୁମାର ମହାପାତ୍ର

**ଚଉଦକୁଲାଟର ଦଧିବାମନ ଜୀଉ**

ଶ୍ରୀଜଗନ୍ନାଥ କେବଳ ଠାକୁର ନୁହଁନ୍ତି, ସେ ହେଉଛନ୍ତି ପ୍ରତ୍ୟେକ ଓଡିଆ ଘରର ମୁରବୀ । ଶ୍ରୀମନ୍ଦିରରେ ପୂଜା




ପାଉଥିବା ଚତୁର୍ଦ୍ଧାମୂରତି ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ମା' ସୁଭଦ୍ରା ଓ ଶ୍ରୀସୁଦର୍ଶନ । ପୁରୀ ବ୍ୟତୀତ ଓଡିଶାରେ ଜଗନ୍ନାଥ ମନ୍ଦିର ଦେଖାଯାଏ । ତେବେ ଓଡିଶାରେ ଏମିତି ଅନେକ ଜଗନ୍ନାଥ ମନ୍ଦିର ରହିଛି, ଯେଉଁଠି କେବଳ ଶ୍ରୀଜଗନ୍ନାଥ ପୂଜା ପାଇଥାନ୍ତି । ଏସବୁ ମନ୍ଦିରରେ ତାଙ୍କୁ ଦଧିବାମନ କୁହାଯାଏ । କେନ୍ଦ୍ରାପଡା ଜିଲ୍ଲାର ଚଉଦକୁଲାଟଠାରେ ରହିଛି ଶ୍ରୀଦଧିବାମନଙ୍କର ମନ୍ଦିର । ମନ୍ଦିରଟି ଯେତିକି ପ୍ରାଚୀନ, ପ୍ରଭୁଙ୍କ ମହିମା ମଧ୍ୟ ସେମିତି ଅଲୌକିକ ।

କେନ୍ଦ୍ରାପଡା ଜିଲ୍ଲାର କେନ୍ଦ୍ରାପଡା ବ୍ଲକ ଅନ୍ତର୍ଗତ ଚଉଦକୁଲାଟର ତମାଳକ୍ଷେତ୍ରରେ ରହିଛି ମହାପ୍ରଭୁ ଦଧିବାମନଜୀଉଙ୍କ ସୁନ୍ଦର ମନ୍ଦିର । ଏହାର ଦୂରତା କେନ୍ଦ୍ରାପଡାଠାରୁ ଭାୟା ପଚ୍ଚାମୁଣ୍ଡାଇ ୨୬ କି.ମି. ଅଟେ । ଶସ୍ୟଶ୍ୟାମଳ। ସୁନ୍ଦର ଗ୍ରାମୀଣ ପରିବେଶରେ ଶୋଭାପାଉଛି ମନ୍ଦିରଟି । ଏହି ମନ୍ଦିର ତଥା କ୍ଷେତ୍ରର ଉତ୍ପତ୍ତି ସମ୍ବନ୍ଧରେ ସଠିକ୍ ଇତିହାସ ନଥିଲେ ମଧ୍ୟ ଏହା ଯେ ଏକ ପ୍ରାଚୀନ କ୍ଷେତ୍ର, ତାହା ଜନଶ୍ରୁତିରୁ ଜଣାଯାଏ । ପ୍ରଭୁଙ୍କ ମନ୍ଦିରଟି ନିର୍ମାଣ ଦୁଇଶହ ବର୍ଷରୁ ଊର୍ଦ୍ଧ୍ୱ ହେବ ବୋଲି ପୁରୁଖା ଲୋକମାନେ କହନ୍ତି ଏବଂ ଚଉଦକୁଲାଟରେ ପ୍ରାୟ ତିନିମାଇଲ ପଶ୍ଚିମକୁ ଥିବା ଘାଗରା ଗ୍ରାମର ଜମିଦାର ରାଉତରାୟଙ୍କ ଦ୍ୱାରା ମନ୍ଦିର ନିର୍ମାଣ କରାଯାଇଥିବା ବିଶ୍ୱାସ କରାଯାଏ । ତେବେ ଶ୍ରୀଜୀଉଙ୍କ କ୍ଷେତ୍ର ଆଗମନ ସମ୍ବନ୍ଧରେ ନାନା କାହାଣୀ ରହିଛି, ତନ୍ମଧ୍ୟରୁ ସବୁଠାରୁ ଗ୍ରହଣଯୋଗ୍ୟ କିମ୍ବଦନ୍ତୀ ହେଲା– ବାହ୍ମୀନଦୀର କାଶୀ ମୁହାଣ ନିକଟରେ ଏକ ଧୀବର ଜାଲ ପକାଇ ପ୍ରତିଦିନ ମାଛ ଧରେ ଓ ନିଜର ଗୁଜୁରାଣ ମେଣ୍ଟାଏ । ଦିନେ ଧୀବରର ଜାଲରେ ଏକ ବିଶାଳ କାଷ୍ଠଖଣ୍ଡ ପଡିଲା । କାଠଖଣ୍ଡଟି

ଅତି ସୁନ୍ଦର ହୋଇଥିବାରୁ ଧୀବର ତାକୁ ଆଣି ଘରେ ଶୁଖାଇ ରଖିଲା । କିଛିଦିନ ଗଲାପରେ ଧୀବରର ପତ୍ନୀ ପ୍ରସବ କରିବା ସମୟରେ ଏନ୍ତୁଡି ଶାଳ ନିମନ୍ତେ କାଷ୍ଠର ଆବଶ୍ୟକତା ହେବାରୁ ଧୀବର ସାଇତିଥିବା କାଠଖଣ୍ଡଟିକୁ ଆଣି ତହିଁରେ ଯେମିତି କୁରାଢି ବସାଇଛି ଉକ୍ତ କାଠରୁ ରୁଧିର ନିର୍ଗତ ହେବାକୁ ଲାଗିଲା । ଧୀବର କ'ଣ କରିବ ଭାବି ଭାବି ସେଦିନଟି ବିତାଇ ଦେଲା । ଉକ୍ତ ଦିନ ରାତ୍ରରେ ଧୀବରକୁ ସ୍ୱପ୍ନାଦେଶ ହେଲା – ଯେ ଉକ୍ତ କାଠକୁ ନେଇ ତୁ ତମାଳ କ୍ଷେତ୍ରରେ ସ୍ଥାପନ କର ଓ ଆମ୍ଭେ ସେଠାରେ ପୂଜା ପାଇବୁ । ମୋର ନାମ ଦଧିବାମନ ହେବ । ପରଦିନ ଧୀବର ସ୍ୱପ୍ନାଦେଶ ଅନୁସାରେ ତମାଳ କ୍ଷେତ୍ରକୁ ଆସି ସ୍ଥାନୀୟ ଲୋକଙ୍କୁ ସ୍ୱପ୍ନର ବୃତ୍ତାନ୍ତ କହିଲା । ସ୍ଥାନୀୟ ଗ୍ରାମବାସୀ ସେହି ସ୍ଥାନରେ ଏକ ଗୃହ ନିର୍ମାଣ କରି ଉକ୍ତ କାଷ୍ଠରେ ମହାପ୍ରଭୁଙ୍କ ବିଗ୍ରହ ନିର୍ମାଣ କରି ସ୍ଥାପନ କଲେ ଓ ପୂଜା ଅର୍ଚ୍ଚନା କରିବାକୁ ଲାଗିଲେ । କ୍ରମେ ପ୍ରଭୁଙ୍କ ମହିମା ପରିବ୍ୟାପ୍ତ ହେବାକୁ ଲାଗିଲା । ପରେ ଏଠାରେ ଏକ ବ୍ରାହ୍ମଣ ଆସି ବସବାସ କଲେ ଓ ବ୍ରାହ୍ମଣ ଶାସନ ଗଢି ଉଠିଲା ।

କୁହାଯାଏ ମନ୍ଦିର ଯେତେବେଳେ ନିର୍ମିତ ହେଲା ଏ ସ୍ଥାନ ନିକଟରେ କୁଆଡେ ସମୁଦ୍ର ରହିଥିଲା । ଏ ସମ୍ବନ୍ଧରେ ମଧ୍ୟ ଏକ ଜନଶ୍ରୁତି ରହିଛି । ଏହି ଚଉଦକୁଲାଟ ଗ୍ରାମର କେତେଜଣ ଲୋକ ଗୟା ଯାଇଥିଲେ ପିଣ୍ଡଦାନ କରିବାକୁ । ସେଠାକାର ଜଣେ ସନ୍ନ୍ୟାସୀ ତାଙ୍କୁ ପ୍ରଶ୍ନ କଲେ ତୁମ୍ଭମାନଙ୍କର ଘର କେଉଁଠାରେ । ସମସ୍ତେ ଉତ୍ତର ଦେଲେ ଆମ୍ଭମାନଙ୍କ ଘର ଚଉଦକୁଲାଟରେ । ତହୁଁ ସନ୍ନ୍ୟାସୀ ପ୍ରଶ୍ନକଲେ ଦଧିବାମନଙ୍କ ପଛରେ ଯେଉଁ ସମୁଦ୍ର ଥିଲା ବର୍ତ୍ତମାନ ସେ ସମୁଦ୍ର କେଉଁଠି ? ଏମାନେ ସମସ୍ତେ ଆବାକ୍ ହୋଇଗଲେ । ପୁନର୍ବାର ସନ୍ନ୍ୟାସୀ ଜଣଙ୍କ କହିଲେ ଆମ୍ଭେମାନେ ଖିରିଖାଇ ପଛପଟରେ ସମୁଦ୍ର କୂଳରେ ପତ୍ରମାନ ପକାଇଥିଲୁ । ତା'ପରେ ଗ୍ରାମର ଲୋକେ କହିଲେ ସମୁଦ୍ର ବର୍ତ୍ତମାନ ୩୦ କି.ମି ଦୂରରେ ଅର୍ଥାତ୍ ସାତ ଭାୟାରେ ଅବସ୍ଥିତ । ତମାଳ ବୃକ୍ଷ ପରିପୂର୍ଣ୍ଣ ଏହି ସ୍ଥାନ ହୋଇଥିବାରୁ ଏହାର ନାମ ତମାଳ ଶାସନ ବା ତମାଳ କ୍ଷେତ୍ର ନାମକରଣ କରାଯାଇଛି । ଚଉଦକୁଲାଟର ନାମର ମଧ୍ୟ ଯଥାର୍ଥତା ରହିଛି । ଚଉଦ ଭୁବନରେ ଯେ ଶ୍ରେଷ୍ଠ ସେ ଚଉଦକୁଲାଟ । ଏହି ସ୍ଥାନରେ ପତି ବା ଇଷ୍ଟଦେବ ଶ୍ରୀ ଦଧିବାମନ ଅଟନ୍ତି । କେତେ ରୋଗୀ, କେତେ ଅଭିଳାଷୀ ଏଠାରେ ନିଜର ମନୋବାଞ୍ଛା ପୂରଣ ନିମିତ୍ତ ଠାକୁରଙ୍କ ଶରଣ ପଶିଛନ୍ତି । ଦଧିବାମନ ନାମ ସମ୍ବନ୍ଧରେ କୌଣସି ପୁରାଣରେ ସତ୍ୟ କିମ୍ବା ତ୍ରେତୟା ଯୁଗରେ କୌଣସି ପ୍ରମାଣ ମିଳେ ନାହିଁ । କେବଳ ଶାରଳା ଦାଶଙ୍କ ସାରଳା ମହାଭାରତରେ ଦଧିବାମନ ଶବ୍ଦ ପ୍ରୟୋଗ କରାଯାଇଛି । ଅଭିମନ୍ୟୁ ସାମନ୍ତ ସିଂହାର ମଧ୍ୟ ତାଙ୍କ ବିଦଗ୍ଧ ଚିନ୍ତାମଣିରେ ଦଧିବାମନ ଶବ୍ଦ ପ୍ରୟୋଗ କରି ଅଛନ୍ତି । ଏଣୁ ଦଧିବାମନ ହେଉଛନ୍ତି ଅନୁକୂଳର ପ୍ରତୀକ ମଙ୍ଗଳ କାର୍ଯ୍ୟରେ ଠାକୁରଙ୍କ ନାମ ଗ୍ରହଣକଲେ ସମସ୍ତ କାର୍ଯ୍ୟ ସୁରୁଖୁରୁରେ ହୋଇଥାଏ ।

ତମାଳ କ୍ଷେତ୍ରର ପ୍ରଭୁ ଦଧିବାମନଙ୍କ କମନୀୟ ମୂର୍ତ୍ତି ଦେଖିଲେ ଯେକେହି ବିମୁଗ୍ଧ ହୋଇଯିବ । ପ୍ରଭୁଙ୍କ ବାମ ପାର୍ଶ୍ୱରେ ମା' ଲକ୍ଷ୍ମୀ ଓ ସରସ୍ୱତୀ ଶୋଭା ପାଉଛନ୍ତି । ମନ୍ଦିର ପରିସରରେ ପ୍ରଭୁଙ୍କ ମନ୍ଦିର ସାମ୍ନାରେ ରହିଛି ଶିବଙ୍କ ମନ୍ଦିର । ଏହା ବ୍ୟତୀତ ମାତା ବିମଳାଙ୍କ ମନ୍ଦିର, ବୃନ୍ଦାବତୀ ଓ ଗରୁଡ ମଧ୍ୟ ମନ୍ଦିର ପରିସରରେ ପୂଜା ପାଉଛନ୍ତି । ଚଳନ୍ତି ପ୍ରତିମା ରୂପେ ଗୋପିନାଥ ବିଅଁ ଅଟନ୍ତି । ମନ୍ଦିରକୁ ଲାଗି ରହିଛି ଏକ କମନୀୟ ସରୋବର ।

**ଦୈନନ୍ଦିନ ନୀତି :** ପ୍ରତିଦିନ ପ୍ରାତଃ ୫.୩୦ ମି ସମୟରେ ମଙ୍ଗଳ ଆରତୀ, ତା'ପରେ ସ୍ନାନ ବାଲ୍ୟଭୋଗ (ଉଖୁଡା କେବଳ) ଦିବା ୧୧ ଘ. ସମୟରେ ପ୍ରଥମ ପ୍ରହର, ରାଜଭୋଗ, ଦିବା ୧ ଘ. ସମୟରେ ଦ୍ୱିତୀୟ ପ୍ରହର ପହୁଡ ଭୋଗ, ଅପରାହ୍ନ ୪ ଟାରେ ପହୁଡ ଖୋଲାଯାଏ ଓ କ୍ଷୀରି ଭୋଗ ବା ପଲଙ୍କ ଉଠା କ୍ଷୀରି ଭୋଗ କରାଯାଏ । ସନ୍ଧ୍ୟା ୬ଟାରେ ସନ୍ଧ୍ୟା ଆରତୀ, ରାତ୍ର ୮ଟାରେ ସନ୍ଧ୍ୟା ଧୂପ, ୧୧ଟା ସମୟରେ ବଡ ସିଂହାର ବେଶ ପରେ ପହଡ ଲାଗି କରାଯାଏ ।

ପ୍ରତି ପୂର୍ଣ୍ଣିମାରେ ନୂତନ ଯଜ୍ଞୋପବିତ ବିଅଁଙ୍କ ଲାଗି ହୁଏ । ପ୍ରତି ମାସ ଏକାଦଶୀ ଦିନ ସନ୍ଧ୍ୟା ଧୂପ ପରେ

ଏକାଦଶୀ ଧୂପରେ ପଣା ଓ ଫଳ ଭୋଗ ହୁଏ । ତେବେ ଏ ସମସ୍ତ ଭିତରେ ପ୍ରଭୁଙ୍କର ପ୍ରିୟ ଭୋଗ ହେଲା କ୍ଷୀରି ଭୋଗ । ଲୋକେ ନିଜର ମାନସିକ ପୂରଣ ନିମିତ୍ତ କ୍ଷୀରି ଭୋଗ ଲଗାଇଥାନ୍ତି ।

**ପର୍ବପର୍ବାଣି :** ମନ୍ଦିରରେ ପଣା ସଂକ୍ରାନ୍ତି, ଦେବସ୍ନାନ ପୂର୍ଣ୍ଣିମା, ରଥଯାତ୍ରା, ନୃସିଂହ ଜନ୍ମ, ଗହ୍ମା ପୂର୍ଣ୍ଣମୀ, ଜନ୍ମାଷ୍ଟମୀ, ସପ୍ତପୁରୀ ଅମାବାସ୍ୟା, ରାଧା ଅଷ୍ଟମୀ, ବାମନ ଜନ୍ମ, ଧନୁ ସଂକ୍ରାନ୍ତି, ଶ୍ରୀପଂଚମୀ, ଦୋଳ ଉତ୍ସବ ପ୍ରଭୃତି ସମସ୍ତ ପର୍ବପର୍ବାଣି ମହା ସମାରୋହରେ ପାଳିତ ହୋଇଥାଏ । ତେବେ ପ୍ରଭୁଙ୍କର ମୁଖ୍ୟ ଯାତ୍ରା ହେଲା ଦେବସ୍ନାନ ପୂର୍ଣ୍ଣିମା ଓ ରଥଯାତ୍ରା । ଦେବସ୍ନାନ ପରଠାରୁ ପ୍ରଭୁ ୧୫ ଦିନ ପର୍ଯ୍ୟନ୍ତ ଅଣସରରେ ରୁହନ୍ତି । ତତ୍‌ପରେ ନେତ୍ର ଉତ୍ସବ ପାଳନ କରାଯାଏ ଓ ନବ ଯୌବନ ଦର୍ଶନ ହୁଏ । ଆଷାଢ ମାସର ଶୁକ୍ଳପକ୍ଷ ଦ୍ୱିତୀୟଠାରୁ ଆରମ୍ଭ ହୁଏ ରଥଯାତ୍ରା । ପ୍ରଭୁ ରଥାରୂଢ ହୋଇ ଗୁଣ୍ଡିଚା ମନ୍ଦିରକୁ ଯାଆନ୍ତି । ରଥଯାତ୍ରାରେ ଏହି କ୍ଷେତ୍ରରେ ପ୍ରବଳ ଜନସମାଗମ ହୋଇଥାଏ । ଚୈତ୍ର ମାସରେ ପ୍ରଭୁ ଶ୍ରୀରାମଙ୍କ ରାମନବମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପ୍ରଭୁ ଶ୍ରୀରାମଙ୍କ ଲୀଳାମାନ ଅନୁଷ୍ଠିତ ହୋଇଥାଏ । ଏଥିରେ ବହୁ ଜନ ସମାଗମ ହୁଏ । ତେବେ ଆଗରୁ ହେଉଥିବା ଚନ୍ଦନ ଯାତ୍ରା ଓ ଝୁଲଣ ଯାତ୍ରା ପର୍ବ ଦୁଇଟି ଏବେ ଆର୍ଥିକ ସମ୍ବଳ ଅଭାବରୁ କରାଯାଇ ପାରୁ ନାହିଁ । ଚନ୍ଦନ ଯାତ୍ରାରେ ଗୋପିନାଥ ଦିଅଁ ପୋଖରୀରେ ଚାପରେ ବସି ଚନ୍ଦନଯାତ୍ରା ଉପଭୋଗ କରୁଥିଲେ ।

ମନ୍ଦିରର ଆୟ କହିଲେ ୭୮ ଏକର ଜମିରୁ ହେଉଥିବା ଧାନ । ଏହା ବ୍ୟତୀତ ମନ୍ଦିରର ହାଟ, ପୋଖରୀ ତଥା ଘର ଭଡାରୁ କିଛି ଅର୍ଥ ସଂଗୃହୀତ ହୋଇଥାଏ । ମନ୍ଦିରଟିକୁ ଏବେ ନିକଟରେ ଓଡିଶା ସରକାରଙ୍କ ପର୍ଯ୍ୟଟନ ବିଭାଗ ଏକ ପର୍ଯ୍ୟଟନ ସ୍ଥଳୀ ଭାବେ ଘୋଷଣା କରିଛନ୍ତି । ମନ୍ଦିର ପରିସରରେ ବହୁ କାର୍ଯ୍ୟ ହେବାକୁ ରହିଛି । ବିଶେଷ କରି ମନ୍ଦିର ପରିସରରେ ଉଦ୍ୟାନ, ପାନୀୟ ଜଳ, ଭୋଗମଣ୍ଡପ ଓ ଭକ୍ତମାନଙ୍କ ନିମନ୍ତେ ଏକ ପାନ୍ଥଶାଳାର ଆବଶ୍ୟକତା ରହିଛି ।

ପ୍ଲଟ୍ ନଂ– ଏଚ୍.ଆଇ.ଜି.–୧୬/୪
ପଞ୍ଚସଖାନଗର, ଡୁମୁଡୁମା, ଭୁବନେଶ୍ୱର–୧୯



# ପାରାଦ୍ୱୀପ ଇତିହାସରେ ବୋଇତ ବନ୍ଦାଣ ଓ ବାଲିଯାତ୍ରା

ବସନ୍ତ କୁମାର ନାୟକ

ପାରାଦ୍ୱୀପ ଓଡିଶାର ବନ୍ଦର ନଗରୀ ଭାବେ ପରିଚିତ । ଦେଶର ବୃହତ୍ ବନ୍ଦରଗୁଡିକ ସହରଭିତ୍ତିକ ହୋଇଥିବା ବେଳେ ପାରାଦ୍ୱୀପ ସହର ହେଉଛି ବନ୍ଦରଭିତ୍ତିକ । ବିଗତ ଶତାବ୍ଦୀର ଷାଠିଏ ଦଶକର ପ୍ରଥମାର୍ଦ୍ଧରେ ଲୁଣା ଝାଡ ଜଙ୍ଗଲରେ ଅପ୍ରତ୍ୟାଶିତ ଭାବେ ଆତ୍ମପ୍ରକାଶ କରି ସଂପ୍ରତି ଅନ୍ତର୍ଜାତୀୟ ଶିଳ୍ପ ବାଣିଜ୍ୟ ସହର ଭାବେ ସମଗ୍ର ଦେଶରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ପାରାଦ୍ୱୀପ ଦୀର୍ଘ ଦୁଇ ଦଶନ୍ଧି ଧରି କେବଳ ଲୁହାପଥର ରପ୍ତାନିକାରୀ ବନ୍ଦର ଭାବେ ଏକକ ପ୍ରତିଷ୍ଠାନ ଥିଲା । ଏହାକୁ ଭିତ୍ତିକରି ଏଠାରେ ଥିବା ବିସ୍ତୀର୍ଣ୍ଣ ବାଲିବନ୍ତ ଉପରେ ବଡପଡିଆ, ସାନ ପଡିଆ, ଟ୍ରଲିଲାଇନ, ପତ୍ରିକା ମହଲ, ଘନଗଳିଆ, ନେହେରୁ ବଙ୍ଗଳା ପ୍ରଭୃତି ସ୍ଥାନରେ ପ୍ରଥମେ ଦୋକାନ ବଜାର ଓ ଜନବସତି ଗଢି ଉଠିଥିଲା । ମୁଖ୍ୟତଃ ବନ୍ଦର କର୍ମଚାରୀ, ଆନୁଷଙ୍ଗିକ ସେବାପ୍ରଦାନକାରୀ ତଥା ମାଛ ଧରାଳୀମାନଙ୍କର ସହର ଭାବେ ସୀମିତ ଥିଲା । ତଥା କଥିତ ସହରାଞ୍ଚଳରେ ଗହଳ ଚହଳ, ବ୍ୟବସାୟ ବାଣିଜ୍ୟ ତଥା ସାହିତ୍ୟ ସଂସ୍କୃତି କେବଳ ବନ୍ଦର କର୍ମଚାରୀମାନଙ୍କୁ ନେଇ ଗତିଶୀଳ ଥିଲା । ଦିନବେଳା କର୍ମଚାରୀମାନେ ବନ୍ଦରରେ କାର୍ଯ୍ୟରତ ଥିବାରୁ ସଂଧ୍ୟାରେ ଦୋକାନ ବଜାରରେ ଖଟି/ଭିଡ ଜମୁଥିଲା । ସେହି ଚିହ୍ନାମୁହଁ ଓ ଚିହ୍ନା ବେପାରୀ । ବର୍ଷ ବର୍ଷ ଧରି କିଛି ପରିବର୍ତ୍ତନ ନଥିଲା ।

୧୯୮୧ ମସିହାରେ ଭାରତ ସରକାର ଓ ନାଉର ସରକାରଙ୍କ ଯୌଥ ଉଦ୍ୟୋଗ ଭାବରେ ପାରାଦ୍ୱୀପ ସାର କାରଖାନ ପ୍ରତିଷ୍ଠା ହେଲା । ପରବର୍ତ୍ତୀ ସମୟରେ ଏଠାରେ ଭାରତୀୟ ତୈଳ ନିଗମର ୧୧ତମ ସର୍ବ ବୃହତ୍ ଓ ସର୍ବାଧୁନିକ ବିଶୋଧନାଗାର ପ୍ରକଳ୍ପ ସହିତ ୩ଟି ଭାରୀ ଶିଳ୍ପ ଓ ୬୦ଟି ମଧ୍ୟମ ଧରଣର ଶିଳ୍ପ ପ୍ରତିଷ୍ଠା ହୋଇଛି । ଏହାବ୍ୟତୀତ ଏଠାରେ ଭାରତୀୟ ତଟରକ୍ଷୀ ବାହିନୀର ୭ମ ମୁଖ୍ୟାଳୟ, କେନ୍ଦ୍ରୀୟ ଉତ୍ପାଦ ଓ ସୀମା ଶୁଳ୍କ କାର୍ଯ୍ୟାଳୟ, ପ୍ରତିରକ୍ଷା ଓ ପାଣିପାଗ ସମ୍ପର୍କିତ ରାଜ୍ୟର ପ୍ରମୁଖ ରାଡାର କେନ୍ଦ୍ର, ୧୬ଟି ବ୍ୟାଙ୍କ ସହିତ ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ବିଭିନ୍ନ କାର୍ଯ୍ୟାଳୟ ପ୍ରତିଷ୍ଠା କରାଯାଇଛି ।

ବନ୍ଦର ନଗରୀର ଜନସଂଖ୍ୟା ୧୯୭୧ ଜନଗଣନା ଅନୁଯାୟୀ ମାତ୍ର ୬,୭୦୫ ଥିଲା । ଏହି ସଂଖ୍ୟାରେ ବୃଦ୍ଧି ଘଟି ୨୦୦୧ ଜନଗଣନା ସୁଦ୍ଧା ୭୩,୬୩୩ ହୋଇଥିଲା । ବର୍ତ୍ତମାନ ପାରାଦ୍ୱୀପର ଜନସଂଖ୍ୟା ପ୍ରାୟ ଏକଲକ୍ଷ ଟପି ଗଲାଣି । ଜନସଂଖ୍ୟାକୁ ଦୃଷ୍ଟିରେ ରଖି ରାଜ୍ୟ ସରକାର ମ୍ୟୁନିସ୍‌ପାଲଟି ଆଇନ୍ ବଳରେ ୧୯୭୯ ମସିହା ସେପ୍ଟେମ୍ବର ମାସରେ ଏହି ସହରକୁ ବିଜ୍ଞାପିତ ଅଂଚଳ ଭାବେ ଘୋଷଣା କରିଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ୨୦୦୨ ମସିହା ଡିସେମ୍ବର ମାସରେ ୩୨.୪୦ ସ୍କୋୟାର ବର୍ଗ ମାଇଲ ପରିବ୍ୟାପ୍ତ ଅଂଚଳକୁ ୧୯ଟି ୱାର୍ଡରେ ବିଭକ୍ତ କରି ପୌର ପରିଷଦରେ ପରିଣତ କରିଛନ୍ତି ।

ପାରାଦ୍ୱୀପ ସହରର ସାଂସ୍କୃତିକ ପ୍ରବହମାନ ଧାରାରେ ପାଳିତ ହେଉଥିବା ପ୍ରମୁଖ ଉତ୍ସବ ମଧ୍ୟରୁ ବୋଇତ ବନ୍ଦାଣ ଓ ବାଲିଯାତ୍ରା ଉତ୍ସବ ଅନ୍ୟତମ । ପ୍ରାଚୀନ ଓଡିଶାର

ନୌବାଣିଜ୍ୟିକ ସ୍ମାରକୀ ଉତ୍ସବ ଭାବେ ବୋଇତ ବନ୍ଦାଣ ବା ଡଙ୍ଗାଭସା ଉତ୍ସବ ପୁରପଲ୍ଲୀରେ କାର୍ତ୍ତିକ ପୂର୍ଣ୍ଣମୀ ପ୍ରତ୍ୟୁଷରେ ପାଳନ କରାଯାଏ । ଏହି ଉତ୍ସବ ଓଡିଆଙ୍କ ବ୍ୟତୀତ ଆଉ କେହି ପାଳନ କରନ୍ତି ନାହିଁ । ଅତୀତରେ ସବୁ ସଭ୍ୟତା ଊଣା ଅଧିକେ ନୌବାଣିଜ୍ୟ ସହ ଜଡିତ ଥିଲେ ମଧ୍ୟ ଏଭଳି ଏକ ପରମ୍ପରା ଅନ୍ୟ କେଉଁଠି ଦେଖିବାକୁ ମିଳେ ନାହିଁ । ଏହାହିଁ ପ୍ରମାଣିତ କରିଥାଏ ଓଡିଶା ହେଉଛି ନୌବାଣିଜ୍ୟର ଦେଶ । ଓଡିଆ ସାଧବମାନଙ୍କର ବ୍ୟକ୍ତିଗତ ପ୍ରଚେଷ୍ଟା ଓ ସାମୂହିକ ଉଦ୍ୟମ ଜରିଆରେ ସେମାନେ ଅନ୍ତଃ ଓ ବହିଃ ବାଣିଜ୍ୟ କରୁଥିଲେ । ସମୁଦ୍ର ଯାତ୍ରାରେ ସେମାନଙ୍କର ଦୁର୍ବାରଶକ୍ତି ଓ ଦୁର୍ଦ୍ଦମନୀୟ ସଂକଳ୍ପ ଯୋଗୁଁ ଓଡିଶାକୁ ସାମୁଦ୍ରିକ ବାଣିଜ୍ୟ ସମୃଦ୍ଧ, ଐଶ୍ୱର୍ଯ୍ୟ ପରିପୂର୍ଣ୍ଣ ବିଭବଶାଳୀ ରାଜ୍ୟର ମାନ୍ୟତା ପ୍ରଦାନ କରିଥିଲା । ମୋଗଲମାନଙ୍କ ଆଗମନ ପରେ ନୌବାଣିଜ୍ୟ ପରମ୍ପରାର ଅବକ୍ଷୟ ଆରମ୍ଭ ହେଲା । ଫରାସୀ, ପର୍ତ୍ତୁଗୀଜ, ଇଂରେଜ ବଣିକମାନେ ଓଡିଶା ଉପକୂଳରେ ନିଜର ଆସ୍ଥାନ ଜମାଇଲେ । ଅବଶେଷରେ ଏହା କେବଳ ବାର୍ଷିକ ପରମ୍ପରାର ନମୁନା ରୂପେ ପ୍ରଚଳିତ ହେଲା ।

ଏହି ପରିପ୍ରେକ୍ଷୀରେ ଆଧୁନିକ ନୌବାଣିଜ୍ୟ କ୍ଷେତ୍ରରେ ଆଲୋକବର୍ତ୍ତିକା ସାଜିଥିବା ପାରାଦ୍ୱୀପ ଓଡିଶାର ଏକମାତ୍ର ବୃହତ୍ ବନ୍ଦର । ଏଠାରେ କାର୍ତ୍ତିକମାସ ପୂର୍ଣ୍ଣମୀ ତିଥିରେ ବୋଇତ ବନ୍ଦାଣ ଓ ବାଲିଯାତ୍ରା ଉତ୍ସବ ପାଳନ ହେବା ଗର୍ବ ଓ ଗୌରବର ବିଷୟ । ଓଡିଶାର ଧର୍ମୀୟ ଧାରଣା ଓ ପୌରାଣିକ ପ୍ରାସଙ୍ଗିକତା ସହିତ କାର୍ତ୍ତିକ ପୂର୍ଣ୍ଣିମାର ଐତିହାସିକ ତାତ୍ପର୍ଯ୍ୟ ଓଡିଆମାନଙ୍କ ସାଂସ୍କୃତିକ ଜୀବନରେ ସୁଦୀର୍ଘ କାଳରୁ ଉପଲବ୍ଧ । କାର୍ତ୍ତିକ ମାସ ସହିତ ପାରାଦ୍ୱୀପ ବନ୍ଦର ସୃଷ୍ଟି ଓ କ୍ରମ ବିକାଶଧାରାର ଅଦ୍ଭୁତ ସାମଞ୍ଜସ୍ୟ ଥିବା ଦେଖିବାକୁ ମିଳେ । ବନ୍ଦରର ପରିକଳ୍ପନାଠାରୁ ଆରମ୍ଭ କରି କାର୍ଯ୍ୟାରମ୍ଭ, ପ୍ରଶାସନିକ ବ୍ୟବସ୍ଥା ହସ୍ତାନ୍ତର, ରପ୍ତାନିର ଶୁଭାରମ୍ଭ ଏପରିକି ଭାରତୀୟ ବୃହତ୍ ବନ୍ଦର ଆଇନ ପରିସରଭୁକ୍ତ ଏବଂ ପୋର୍ଟଟ୍ରଷ୍ଟ ଗଠନ ପର୍ଯ୍ୟନ୍ତ ସମସ୍ତ ନିଷ୍ପତ୍ତି ପବିତ୍ର କାର୍ତ୍ତିକ ମାସରେ ସଂଘଟିତ ହେଇଥିବାର ଦେଖାଯାଏ । ଓଡିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ନିର୍ଦ୍ଦେଶରେ ବନ୍ଦର ନିର୍ମାଣର ଆବଶ୍ୟକ ନକ୍ସା ସହିତ ପ୍ରକଳ୍ପର ନିର୍ଦ୍ଦିଷ୍ଟ ରୂପରେଖ ପ୍ରସ୍ତୁତ ଓ ନିର୍ମାଣ କାର୍ଯ୍ୟ ତଦାରଖ ନିମନ୍ତେ ଇଂଲଣ୍ଡର ରାଣ୍ଡର ପାଲ୍ମର ଆଣ୍ଡ୍ରିଟନ ଏକ ବୈଷୟିକ ସଂସ୍ଥା ସହିତ କାର୍ତ୍ତିକ ମାସ ୧୯୬୧ ମସିହା ନଭେମ୍ବର ୨୪ ତାରିଖ ଦିନ ଚୁକ୍ତିନାମା ସ୍ୱାକ୍ଷରିତ ହେଲା ଏବଂ ସେହି କାର୍ତ୍ତିକ ମାସ ୧୯୬୨ ମସିହା ୧୯ ତାରିଖରେ ନିର୍ମାଣ କାର୍ଯ୍ୟର ଶୁଭାରମ୍ଭ ହୋଇଥିଲା । ଏମ.ଭି.ଚିଓସ ନାମକ ଜାହାଜରେ ଲୁହାପଥର ବୋଝେଇ ହୋଇ ବନ୍ଦରରୁ ସର୍ବପ୍ରଥମେ ସେହି କାର୍ତ୍ତିକ ମାସ ୧୯୬୬ ମସିହା ନଭେମ୍ବର ୨୬ ତାରିଖରେ ଜାପାନ ଅଭିମୁଖେ ଯାତ୍ରା ଆରମ୍ଭ କରିଥିଲା । ଏପରିକି କାର୍ତ୍ତିକ ମାସରେ ହିଁ ଭାରତ ସରକାର ପାରାଦ୍ୱୀପକୁ ବୃହତ ବନ୍ଦର ଆଇନ ପରିସରଭୁକ୍ତ କରିଥିଲେ । ଦେଶର ବୃହତ୍ ବନ୍ଦରଗୁଡିକରେ ପ୍ରଚଳିତ ସାମ୍ବିଧାନିକ ପରିଚାଳନା ବ୍ୟବସ୍ଥା ଅନୁଯାୟୀ ପାରାଦ୍ୱୀପରେ ୧୯୬୩ ମସିହା ମେଜର ପୋର୍ଟ ଟ୍ରଷ୍ଟ ଆଇନ୍ ଲାଗୁ ହେଲା ଏବଂ ପ୍ରଥମ କରି ୧୯୬୭ ମସିହା ସେହି କାର୍ତ୍ତିକ ମାସ ନଭେମ୍ବର ୧ ତାରିଖରେ ବନ୍ଦର ପରିଚାଳନା ନିମନ୍ତେ ଟ୍ରଷ୍ଟ ବୋର୍ଡ ଗଠନ କରାଗଲା । ବନ୍ଦରର ପ୍ରଥମ ଚେୟାରମ୍ୟାନ ଭାବେ ଶ୍ରୀ କର୍ତ୍ତାର ସିଂହ, ଆଇ.ଏ.ଏସ୍, ଅବସ୍ଥାପିତ ହେଲେ । ବଡପଡିଆ ପେଟ୍ରୋଲ ଟାଙ୍କି ନିକଟରେ ଥିବା ସେସମୟର ଷ୍ଟୋର ଡିଭିଜନ ଅଫିସ ପାଖରେ ଏକ ଉତ୍ସବର ଆୟୋଜନ କରାଯାଇଥିଲା । ଓଡିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଏହି ଐତିହାସିକ ନିଷ୍ପତ୍ତିକୁ ପ୍ରକାଶ କରିବା ସହ ନଭେମ୍ବର ୧ ତାରିଖକୁ ବନ୍ଦର ଦିବସ ରୂପେ ଘୋଷଣା କରିଥିଲେ । ଏହି ଉତ୍ସବରେ ପାରାଦ୍ୱୀପର ହେଟାମୁଣ୍ଡିଆଠାରେ ବୋଇତ ବନ୍ଦାଣ କରି ପାରାଦ୍ୱୀପକୁ କ୍ଷୁଦ୍ର ବନ୍ଦର ଭାବେ ଘୋଷଣା କରିଥିବା ଓଡିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ ଏବଂ ବନ୍ଦରର ଆଦି ଖସଡା ପ୍ରସ୍ତୁତ କରିଥିବା ସ୍ଥାନୀୟ ଲୋକ ପ୍ରତିନିଧି ଶ୍ରୀ ନାରାୟଣ ବୀରବର ସାମନ୍ତ ଉପସ୍ଥିତ ଥିଲେ । ସେହିଦିନଠାରୁ ପ୍ରତ୍ୟେକ ବର୍ଷ ନଭେମ୍ବର

୧ ତାରିଖ ଦିନ ବନ୍ଦର ପତାକା ଉତ୍ତୋଳନ ସହ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ଆୟୋଜନ କରାଯାଇ ବନ୍ଦର ଦିବସ ପାଳନ ହୋଇ ଆସୁଥିଲା ।

୧୯୭୪ ମସିହାରେ ଏଥିରେ ପରିବର୍ତ୍ତନ ଘଟିଲା । ପାରାଦ୍ୱୀପ ବନ୍ଦରର ସୃଷ୍ଟି ଓ କ୍ରମବିକାଶ ଧାରାରେ କାର୍ତ୍ତିକ ମାସର ସଂପୃକ୍ତି ତଥା ଓଡିଶାର ସାମାଜିକ, ଧାର୍ମିକ ଓ ଜାତୀୟ ଜୀବନରେ କାର୍ତ୍ତିକ ମାସର ମହତ୍ତ୍ୱ, ପ୍ରଭାବ ଓ ଓଡିଆମାନଙ୍କ ଭାବାବେଗକୁ ଦୃଷ୍ଟିରେ ରଖି ବନ୍ଦର କର୍ତ୍ତୃପକ୍ଷ ଏହି ନିଷ୍ପତ୍ତି ନେଇଥିଲେ । ନଭେମ୍ବର ଏକ ତାରିଖ ପରିବର୍ତ୍ତେ ସେହି କାର୍ତ୍ତିକ ମାସ ପୂର୍ଣ୍ଣମୀ ତିଥିରେ ବନ୍ଦର ଦିବସ ପାଳନ ସହ ବୋଇତ ବନ୍ଦାଣ ଉତ୍ସବ ଅନୁଷ୍ଠିତ କରାଯିବାକୁ ସ୍ଥିର କରାଗଲା । ତତ୍କାଳୀନ ଚେୟାରମ୍ୟାନ ଶ୍ରୀ ପ୍ରେମାନନ୍ଦ ତ୍ରିପାଠୀ ଏ ସମ୍ପର୍କରେ ଏକ ପ୍ରସ୍ତାବ ବନ୍ଦର ଟ୍ରଷ୍ଟ ବୋର୍ଡରେ ଉପସ୍ଥାପନ କଲେ ଓ ତାହା ଅନୁମୋଦନ ଲାଭ କଲା । ଓଡିଶାର ସମ୍ଭ୍ରାନ୍ତ ସାମୁଦ୍ରିକ ବାଣିଜ୍ୟର ଇତିହାସ ଓ ସଂସ୍କୃତିର ପ୍ରତୀକ ବୋଇତ ବନ୍ଦାଣ ଉତ୍ସବରେ ରାଜ୍ୟର ମାନ୍ୟବର ମୁଖ୍ୟମନ୍ତ୍ରୀ ମୁଖ୍ୟ ଅତିଥି ଭାବେ ଯୋଗ ଦେବା ପାଇଁ ନିବେଦନ କରାଯିବ ବୋଲି ପ୍ରସ୍ତାବ ପାରିତ କରାଗଲା । ପ୍ରସ୍ତାବଟି ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ସ୍ୱୀକୃତି ଲାଭକରି ପ୍ରଥମକରି ୧୯୭୪ ମସିହାରେ କାର୍ତ୍ତିକ ପୂର୍ଣ୍ଣିମାରେ ବନ୍ଦର ଦିବସ ଓ ବୋଇତ ବନ୍ଦାଣ ଉତ୍ସବ ପାଳନ କରାଗଲା । ପ୍ରତ୍ୟୁଷରେ ତତ୍କାଳୀନ ଓଡିଶାର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଯୋଗଦେଇ ବନ୍ଦର ପତାକା ଉତ୍ତୋଳନ ସହ ବୋଇତ ବନ୍ଦାଣ ଉତ୍ସବକୁ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଥିଲେ । ସେତେବେଳେ ଏହି ଉତ୍ସବ ବନ୍ଦର ପ୍ରବେଶପଥରେ ଥିବା ରିକ୍ଲାମେସନ ବର୍ଥଠାରେ ପାଳନ କରାଯାଉଥିଲା । ଏକ ହଂସାକୃତି ସୁସଜ୍ଜିତ ବୋଇତରେ ୭ ଜଣ ସାଧବ ବେଶରେ ବନ୍ଦର କର୍ମଚାରୀ ଓ ପାର୍ଶ୍ୱରେ ୭ ଜଣ ସାଧବାଣୀ ବେଶରେ ବନ୍ଦର ହାଇସ୍କୁଲର ଝିଅମାନେ ଅର୍ଘ୍ୟଥାଳି ଧରି ଅପେକ୍ଷା କରିଥିଲେ । ଆବଶ୍ୟକ ପାରମ୍ପରିକ ପୂଜା ସମାପନ ପରେ ମୁଖ୍ୟମନ୍ତ୍ରୀ ବୋଇତକୁ ବନ୍ଦାପନା ପୂର୍ବକ କଳସ ସ୍ଥାପନ କରିଥିଲେ ଏବଂ ସମୁଦ୍ର ଯାତ୍ରାର ଶୁଭ ମନାସି ବୋଇତକୁ ବିଦାୟ ଜଣାଇଥିଲେ । ସେଠାରେ ସମବେତ ହୋଇଥିବା ପାରାଦ୍ୱୀପର ଅଗଣିତ ନରନାରୀଙ୍କର ଶଙ୍ଖ, ହୁଳହୁଳି ହରିବୋଲ ଧ୍ୱନିରେ ପରିବେଶ ଉଛୁଳି ଉଠିଥିଲା । ସେହିଦିନଠାରୁ ପରମ୍ପରାକ୍ରମେ ଏହି ଉତ୍ସବ ପ୍ରତ୍ୟେକ ବର୍ଷ କାର୍ତ୍ତିକ ପୂର୍ଣ୍ଣମୀ ପ୍ରତ୍ୟୁଷରେ ପାଳନ ହୋଇ ଆସୁଅଛି ।

ବୋଇତ ବନ୍ଦାଣ, ଶୁଭ ବିଦାୟ ସହିତ ବାଲିଯାତ୍ରାର ପାରମ୍ପରିକ ସଂପୃକ୍ତି ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ଏହି ଯାତ୍ରା ଅନ୍ତର୍ଦେଶୀୟ ଓ ବହିର୍ଦେଶୀୟ ବାଣିଜ୍ୟ ଉଦ୍ଦେଶ୍ୟରେ ଏକତ୍ରିତ ଜନସମାଗମରୁ ସୃଷ୍ଟି ହୋଇଥିବା ଜଣାଯାଏ । ଏହାକୁ ଭିତ୍ତିକରି ପାରାଦ୍ୱୀପ ବନ୍ଦରରେ ବୋଇତ ବନ୍ଦାଣ ଉତ୍ସବ ସହିତ ବାଲିଯାତ୍ରା ଆୟୋଜନ କରାଯିବାକୁ ଉଦ୍ୟମ କରାଗଲା । ୧୯୭୭ ମସିହାରେ 'ପାରାଦ୍ୱୀପ ନାଗରିକ କମିଟି' ଅନୁଷ୍ଠାନ ଗଠନ କରାଯାଇ ସେହିବର୍ଷ ବାଲିଯାତ୍ରା ଆରମ୍ଭ କରାଯିବା ପାଇଁ ବ୍ୟାପକ ପ୍ରସ୍ତୁତି ଆରମ୍ଭ ହେଲା । ବନ୍ଦର ଚେୟାରମ୍ୟାନ୍ ଶ୍ରୀ ସତ୍ୟରଞ୍ଜନ ପାଲ୍‌ଙ୍କ ସହମତିରେ ବର୍ତ୍ତମାନର ଗୋପବନ୍ଧୁ ଷ୍ଟାଡିୟମ ଓ ନୂଆବଜାରସ୍ଥ ମୁକ୍ତେଶ୍ୱର ମହାଦେବ ମନ୍ଦିର ନିକଟରେ ଖାଲିଥିବା ବିସ୍ତୀର୍ଣ୍ଣ ବାଲୁକା ପ୍ରାନ୍ତର ଉପଯୁକ୍ତ ସ୍ଥାନ ଭାବେ ବିବେଚନା କରାଗଲା । ପ୍ରଥମେ ୫ ଦିନ ବ୍ୟାପୀ ହେବାକୁ ଥିବା ଏହି ଯାତ୍ରାରେ ବେପାର କରିବା ପାଇଁ ପାରାଦ୍ୱୀପର ପୁରୁଣା ବ୍ୟବସାୟୀ ତଥା କେନ୍ଦ୍ରାପଡା, ସାଲେପୁର ଓ କୁଜଙ୍ଗ ଅଂଚଳର ବ୍ୟବସାୟୀମାନଙ୍କୁ ସମସ୍ତ ସୁବିଧା ସୁଯୋଗ ଯୋଗାଇ ଦିଆଯିବା ପାଇଁ ବନ୍ଦର କର୍ତ୍ତୃପକ୍ଷ ପ୍ରତିଶ୍ରୁତି ଦେଲେ । ସ୍ଥାନୀୟ ନିର୍ବାଚିତ ଲୋକ ପ୍ରତିନିଧି ଡାକ୍ତର ଦାମୋଦର ରାଉତଙ୍କ ନେତୃତ୍ୱରେ ନାଗରିକ କମିଟିର ସଭାପତି ଇଂ. ଶ୍ରୀ ଗଗନ ବିହାରୀ ପୃଷ୍ଟି ଓ ସମ୍ପାଦକ ନିଜେ ଲେଖକ ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କୁ ତାଙ୍କ ୫ ନମ୍ବର ଇଉନିଟ୍‌ସ୍ଥିତ ସରକାରୀ ବାସଭବନରେ ସାକ୍ଷାତ କରି ମୁଖ୍ୟ ଅତିଥିଭାବେ ଯୋଗଦେବାକୁ ନିବେଦନ କରିଥିଲେ ଓ ସଦୟ ସ୍ୱୀକୃତି ବି ମିଳିଥିଲା । ୧୯୭୭ ମସିହା ବୋଇତ ବନ୍ଦାଣ ଉତ୍ସବର ଅବ୍ୟବହିତ ପୂର୍ବରୁ ମୁଖ୍ୟମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟଙ୍କ ଦ୍ୱାରା ବାଲିଯାତ୍ରା ଉଦ୍‌ଘାଟିତ ହୋଇଥିଲା । ପ୍ରଥମ ୩ ଦିନ ଓଡିଶାର ବହୁ

ପ୍ରତିଭାଶାଳୀ ବିଦ୍ୱାନ୍, ବିଜ୍ଞ, ଗବେଷକ, ଶିକ୍ଷାବିତ୍ ଯଥା ଡ. ରାଧାନାଥ ରଥ, ଡ. ସଦାଶିବ ମିଶ୍ର, ଡ. ଶ୍ରୀରାମ ଦାଶ, ଡ. ଗୌରୀକୁମାର ବ୍ରହ୍ମା, ଡ. ହୃଦାନନ୍ଦ ରାୟ, ଶ୍ରୀମତୀ ମନୋରମା ମହାପାତ୍ର ପ୍ରମୁଖ ଜ୍ଞାନୀଗୁଣୀ ବ୍ୟକ୍ତି ଯୋଗଦେଇଥିଲେ । ଓଡିଶାର ନୌବାଣିଜ୍ୟ ଓ ତହିଁରେ ପାରାଦ୍ୱୀପର ଭୂମିକା ଓ ପ୍ରଗତି ସମ୍ପର୍କରେ ଆଲୋଚନା ଅନୁଷ୍ଠିତ ହେଉଥିଲା । ପ୍ରତ୍ୟେକ ଦିନ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ କରାଯିବା ସହିତ ଶେଷ ଦୁଇଦିନ ରାଜ୍ୟର ନାମକରା ଯାତ୍ରାପାର୍ଟି ଦ୍ୱାରା ଯାତ୍ରା ପରିବେଷଣ ହେଉଥିଲା । ଏଠାରେ ଓଡିଶାର ବହୁ ପ୍ରତିଷ୍ଠିତ ବ୍ୟବସାୟୀ ସେମାନଙ୍କର ଷ୍ଟଲ୍ ଖୋଲିଥିଲେ ଓ ପ୍ରତ୍ୟେକ ଦିନ ହଜାର ହଜାର ଲୋକଙ୍କର ସମାବେଶ ହେଉଥିଲା କିନ୍ତୁ ଏହି ଉତ୍ସବ ବେଶିଦିନ ଚାଲିପାରିଲା ନାହିଁ ମାତ୍ର ୩ବର୍ଷ ପରେ ୧୯୮୦ ମସିହା ସୁଦ୍ଧା ବନ୍ଦ ହୋଇଯାଇଥିଲା ।

ପାରାଦ୍ୱୀପ ବନ୍ଦରର ପ୍ରତିଷ୍ଠାତା ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକ ଓଡିଆ ଜାତିକୁ ତାଙ୍କ ପୂର୍ବପୁରୁଷମାନଙ୍କର ଦୁଃସାହସିକ ନୌବାଣିଜ୍ୟ ଯାତ୍ରାର ସ୍ମୃତିକୁ ସ୍ମରଣ କରାଇ ସାହସୀ ହେବା ନିମନ୍ତେ ନୌଯାତ୍ରା ଆରମ୍ଭ କରିବା ପାଇଁ ଚିନ୍ତା କଲେ । ତତ୍କାଳୀନ ଓଡିଶାର ରାଜ୍ୟପାଳ ଶ୍ରୀଯୁକ୍ତ ଭଗବତ ଦୟାଲ ଶର୍ମା ଓ ବିଶ୍ୱପ୍ରସିଦ୍ଧ ଓଡିଆ ସନ୍ତରଣକାରୀ ଶ୍ରୀ ମିହିର ସେନ୍‌ଙ୍କ ଉପସ୍ଥିତିରେ ପାରାଦ୍ୱୀପରେ ଏକ ଉତ୍ସବ ଆୟୋଜନ କରାଯାଇଥିଲା । ଏହି ଉତ୍ସବରେ ବିଜୁବାବୁ ପ୍ରଥମେ ପରୀକ୍ଷାମୂଳକ ଭାବେ ପାରାଦ୍ୱୀପରୁ 'ଚାନ୍ଦ ସୌଦାଗର' ନାମକ ଏକ ଦେଶୀ ବୋଟ୍‌କୁ ଇଣ୍ଡୋନେସିଆ ପଠାଇଥିଲେ ।

## ଦେଶୀ ବୋଟ୍ 'ଚାନ୍ଦ ସୌଦାଗର'ର ପରୀକ୍ଷାମୂଳକ ବାଲିଦ୍ୱୀପ ଯାତ୍ରା

ଏହାର ସଫଳ ପରୀକ୍ଷଣ ପରେ ୧୯୯୨ ମସିହା ନଭେମ୍ବର ୧୦ ତାରିଖ କାର୍ତ୍ତିକ ପୂର୍ଣ୍ଣିମା ଦିନ ପାରାଦ୍ୱୀପରୁ ବାଲିଦ୍ୱୀପ ଅଭିମୁଖେ ଏକ ଐତିହାସିକ ନୌଯାତ୍ରାର ଆୟୋଜନ ହୋଇଥିଲା । ଭାରତୀୟ ନୌବାହିନୀର ୧୩ ମିଟର ଲମ୍ବ ବିଶିଷ୍ଟ ଏକ ଛୋଟ ପାଲଟଣା ବୋଟ୍ 'ଆଇ.ଏନ.ଏସଭି– ସମୁଦ୍ର'ରେ ୭ ଜଣ ନୌ ଅଭିଯାତ୍ରୀଙ୍କୁ ଧରି ବାଲିଦ୍ୱୀପ ଅଭିମୁଖେ ଯାତ୍ରା ଆରମ୍ଭ କରିଥିଲା, ଯେଉଁଥିରେ ଜଣେ ଓଡିଆ ଝିଅ ନିବେଦିତା ଆଚାର୍ଯ୍ୟ ସ୍ଥାନ ପାଇଥିଲେ । ୧୯୯୨ ମସିହା ବନ୍ଦର ଦିବସ ଅବସରରେ ଏହି ଭବ୍ୟ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଉତ୍ସବରେ ଓଡିଶାର ବହୁ ମନ୍ତ୍ରୀ, ଉଚ୍ଚପଦସ୍ଥ ଅଧିକାରୀ ଓ ହଜାର ହଜାର ଲୋକ ଉପସ୍ଥିତ ଥିଲେ । ଓଡିଆ ଝିଅମାନେ ସାଧବ ବୋହୂ ବେଶରେ ବନ୍ଦାପନା କରି ମେଲାଣି ଦେଇଥିଲେ । ଏହି ଅଭିନବ ପ୍ରୟାସର ନାମ ରଖାଯାଇଥିଲା 'କଳିଙ୍ଗ ବାଲିଯାତ୍ରା – ୧୯୯୨' । ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଏହି ଐତିହାସିକ ସ୍ମରଣୀୟ ଯାତ୍ରାକୁ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଥିଲେ । ସେହିଦିନଠାରୁ ପାରାଦ୍ୱୀପରେ ପ୍ରତ୍ୟେକ ବର୍ଷ କାର୍ତ୍ତିକ ପୂର୍ଣ୍ଣିମା ଦିନ ବୋଇତ ବନ୍ଦାଣ ଉତ୍ସବ ସହିତ କଳିଙ୍ଗ ବାଲିଯାତ୍ରା ଜିଲ୍ଲାର ଜିଲ୍ଲାପାଳଙ୍କ ତତ୍ତ୍ୱାବଧାନରେ ପାଳନ ହୋଇଆସୁଅଛି । ବୋଇତ ବନ୍ଦାଣ ବନ୍ଦରର ୱେଟ୍ ବେସିନ୍‌ଠାରେ ପାଳିତ ହେଉଥିବା ବେଳେ କଳିଙ୍ଗ ବାଲିଯାତ୍ରା ସମୁଦ୍ର ବେଳାଭୂମି ସଂଲଗ୍ନ ୨୫ ଏକର ପରିମିତ ବାଲିପଡିଆରେ ପାଳିତ ହୋଇଥାଏ । ପରବର୍ତ୍ତୀ ସମୟରେ ବାଲିଯାତ୍ରା ପଡିଆକୁ 'ବିଜୁ ମଇଦାନ' ନାମରେ ନାମିତ କରାଯାଇ ଏଠାରେ 'ବିଜୁ ସ୍ମୃତି ସ୍ତମ୍ଭ' ନିର୍ମାଣ କରାଯାଇଛି । ଏହି ବିଜୁ ସ୍ମୃତି ସ୍ତମ୍ଭ ସିମେଣ୍ଟ କଂକ୍ରିଟର ଏକ ସ୍ତମ୍ଭ ମାତ୍ର ନୁହେଁ ଏହା ବିଜୁ ବାବୁଙ୍କ ସାହସ, ସଂଗ୍ରାମ ଓ ସଂକଳ୍ପର ପ୍ରତୀକ ଭାବେ ଓଡିଶାବାସୀଙ୍କୁ ପ୍ରେରଣା ଯୋଗାଇବା ସହିତ ପାରାଦ୍ୱୀପର ଧୂଳି, ମାଟି, ପାଣି, ପବନରେ ବିଜୁବାବୁଙ୍କ ଯେଉଁ ଅମଳିନ ସ୍ମୃତି ଲୁଚି ରହିଛି, ତାହାର ଐତିହାସିକ ମୂଲ୍ୟାୟନ ଓ ଅନୁଶୀଳନ କରିବା ପାଇଁ ଏକ ମାଇଲ୍ ଖୁଣ୍ଟ ଭାବେ ଦୀର୍ଘକାଳାବଧି ଦିଗ୍‌ଦର୍ଶନ ଦେଉଥିବ ।

ଅବସରପ୍ରାପ୍ତ ଯୋଗାଯୋଗ ଅଧିକାରୀ
ପାରାଦ୍ୱୀପ ବନ୍ଦର
'ଉଦୟପୁରୀ', ପ୍ଲଟ୍ ନଂ– ୨୨୩ ଏବଂ
୭୫୩/୩୪ ଏୟାର୍‌ପୋର୍ଟ ସ୍କୋୟାର୍, ୟୁନିଟ୍–୬
ଭୁବନେଶ୍ୱର–୭୫୧୦୨୦

# ଶିଶୁ ଦିବସର ମହତ୍ତ୍ୱ

ଗୋଲାପ ନନ୍ଦ

ଯେଉଁ ବ୍ୟକ୍ତି ଈଶ୍ୱରଙ୍କ ଆଶୀର୍ବାଦ ନେଇ ଜନ୍ମିଥାନ୍ତି, ସେମାନେ ନିଜର ସୁଗୁଣ ତଥା ସୁକର୍ମ ବଳରେ କାଳଜୟୀ ହୋଇଥାନ୍ତି । ତାଙ୍କର ଜନ୍ମ ଓ ମୃତ୍ୟୁ ଦିବସକୁ ସ୍ମରଣୀୟ ଦିବସ ରୂପେ ପାଳନ କରାଯାଇଥାଏ । ଯେପରି ସର୍ବପଲ୍ଲୀ ରାଧାକ୍ରିଷ୍ଣନଙ୍କ ଜନ୍ମ ଦିବସକୁ ଗୁରୁଦିବସ ରୂପେ ପାଳନ କରାଯାଏ, ସେହିପରି ପଣ୍ଡିତ ଜବାହରଲାଲ ନେହେରୁଙ୍କ ଜନ୍ମଦିବସକୁ ଶିଶୁ ଦିବସ ଭାବରେ ପାଳନ କରାଯାଏ । ପଣ୍ଡିତ ନେହେରୁ ଶିଶୁମାନଙ୍କୁ ଖୁବ୍ ଭଲ ପାଉଥିଲେ । ତାଙ୍କ ଶ୍ରଦ୍ଧାର ସ୍ମାରକୀ ସ୍ୱରୂପ ଏହି ଉତ୍ସବ ଆମ ଦେଶରେ ପାଳନ କରାଯାଇଥାଏ । ସେହିଦିନ ଶିଶୁମାନଙ୍କ ମଧ୍ୟରେ ବିଭିନ୍ନ ପ୍ରତିଯୋଗିତା କରାଯାଇ ସେମାନଙ୍କୁ ପୁରସ୍କୃତ କରାଯାଇଥାଏ । ଏହା ଜାତୀୟ ଦିବସ ରୂପେ ସରକାରୀ ଓ ବେସରକାରୀ ଶିଶୁ ଅନୁଷ୍ଠାନମାନଙ୍କରେ ପାଳନ କରାଯାଉଛି ।

ପଣ୍ଡିତ ଜବାହରଲାଲ ନେହେରୁଙ୍କ ପିତା ପଣ୍ଡିତ ମୋତିଲାଲ ନେହେରୁ ଥିଲେ ଜଣେ ପ୍ରସିଦ୍ଧ ଆଇନଜୀବୀ । ମାତା ସ୍ୱରୂପାରାଣୀ ଥିଲେ ଜଣେ ଧର୍ମପ୍ରାଣ ମହିଳା । ନେହେରୁ ଶୈଶବ ଅବସ୍ଥାରେ ପ୍ରାଥମିକ ଶିକ୍ଷା ଲାଭ କରି ଉଚ୍ଚଶିକ୍ଷା ପାଇଁ ଲଣ୍ଡନ ଯାତ୍ରା କରିଥିଲେ । ସେଠାରେ ହାରୋ ସ୍କୁଲରେ ବିଦ୍ୟାଳୟ ସ୍ତରୀୟ ଶିକ୍ଷା ସମାପ୍ତି କରି କେମ୍ବ୍ରିଜ୍‌ର ଟ୍ରିନିଟ୍ କଲେଜରେ ଉଚ୍ଚଶିକ୍ଷା ଗ୍ରହଣ କରିଥିଲେ । କଲେଜ ଶିକ୍ଷା ପରେ ଓକିଲାତି ପଢିବା ସଙ୍ଗେ ସଙ୍ଗେ ଶିକ୍ଷା ସମାପ୍ତି ପରେ ସେଠାରେ ସେ ବାରିଷ୍ଟର ହୋଇଥିଲେ । ଭାରତ ଫେରି ସେ ମହାତ୍ମା ଗାନ୍ଧୀଙ୍କ ସହ ଭାରତଛାଡ ଆନ୍ଦୋଳନରେ ସାମିଲ ହୋଇ ଏକାଧିକବାର କାରବରଣ କରିଥିଲେ । ଜବାହରଲାଲ ନେହେରୁ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ହୋଇଥିଲେ । ସେ ଏକାଧାରରେ ଜାତିପ୍ରାଣ, ଦେଶନାୟକ, ବ୍ୟବସ୍ଥାପକ, ରାଜନୀତିଜ୍ଞ, ସୁବକ୍ତା, ସଂଗଠକ, ଦେଶଭକ୍ତ ତଥା ଶିଶୁ ବତ୍ସଳ ଥିଲେ ।

ଶିଶୁମାନେ ହେଉଛନ୍ତି ଦେଶର ଶକ୍ତି ଓ ପ୍ରଗତିର ସୂତ୍ରଧର । ଆଜିର ଯିଏ ଶିଶୁ, ଭବିଷ୍ୟତରେ ସେ ଦେଶର ନାଗରିକ ଓ ଦେଶ ଗଠନର କର୍ଣ୍ଣଧାର । ଏଣୁ ଦେଶର ବିକାଶ ଶିଶୁର ବିକାଶ ଉପରେ ନିର୍ଭର କରେ । ଶିଶୁ ସୁସ୍ଥ ସବଳ ଓ ନୀରୋଗ ରହିଲେ ତା'ର ଶାରୀରିକ ମାନସିକ ବିକାଶ ହେବ । ସୁସ୍ଥ ସୁନ୍ଦର, ବଳିଷ୍ଠ ଓ ସମୃଦ୍ଧିଶାଳୀ ସମାଜ ଗଠନ ପାଇଁ ଶିଶୁମାନଙ୍କର ଉନ୍ନତି ଚିନ୍ତା ପ୍ରଥମେ ବିଚାର୍ଯ୍ୟ । ସେଥିପାଇଁ ନେହେରୁ କହିଥିଲେ – ଜାତିର ଭବିଷ୍ୟତ ଶିଶୁମାନଙ୍କ ପ୍ରତି ଅବହେଳା ପ୍ରଦର୍ଶନ ଏକ ଅକ୍ଷମଣୀୟ ଜାତୀୟ ଅପରାଧ ।

ନେହେରୁ ଶିଶୁମାନଙ୍କୁ ବନ୍ଧୁ ଭଳି ପାଉଥିଲେ । ଶିଶୁମାନଙ୍କ ଉଦ୍ଦେଶ୍ୟରେ ନିଜର ଜୀବନ କାହାଣୀ ଶୁଣାଇ ସେ କହିଥିଲେ, ତୁମମାନଙ୍କ ସହିତ ଗପ କଲେ ମୁଁ ଜୀବନର ସକଳ ଦୁଃଖକୁ ଭୁଲିଯାଏ । ମୁଁ ଭୁଲିଯାଏ ମୋର ବାର୍ଦ୍ଧକ୍ୟ । ମୁଁ ପୁଣି ଶୈଶବକୁ ଫେରିଆସେ । ସର୍ବଦା ପୋଷାକରେ ସେ ଗୋଲାପ ପୁଷ୍ପ ଧାରଣ କରୁଥିଲେ । ଶିଶୁମାନଙ୍କ ଦୁଃଖରେ ତାଙ୍କ ଅନ୍ତର ବିଳପି ଉଠୁଥିଲା । ସେ ସର୍ବଦା କହୁଥିଲେ ଶିଶୁମାନେ ହେଉଛନ୍ତି ସରଳ, କୋମଳ ଓ ନିଷ୍ପାପ

ହୃଦୟର । ସେମାନଙ୍କଠାରୁ ପ୍ରକୃତରେ ଶାନ୍ତି ଓ ନୈସର୍ଗିକ ଆନନ୍ଦ ମିଳେ ।

ଶିଶୁକୁ ସର୍ବଦା ଦୟା, କ୍ଷମା, ସ୍ନେହ, ଆଦର, ଭଲପାଇବା, ତ୍ୟାଗ, ବୀରତ୍ୱ, ସାହସ ଏବଂ ସମାଜର ମଙ୍ଗଳ ହୋଇ ପାରୁଥିବା ଶିକ୍ଷା ଦେବା ଉଚିତ୍ । ଶିଶୁର ମନସ୍ତତ୍ତ୍ୱକୁ ବୁଝି ତାକୁ ଶିଶୁ ସାହିତ୍ୟ ପାଠ କରିବାକୁ ପ୍ରବର୍ତ୍ତାଇବା । ପାଠ୍ୟ ପୁସ୍ତକକୁ ଶିଶୁ ଯେପରି ହୃଦୟଙ୍ଗମ କରିପାରିବ ସେଥିପାଇଁ ସରଳ ତଥା ସାବଲୀଳ କରିବା ଉଚିତ । ଗୁରୁଜନମାନଙ୍କୁ ସମ୍ମାନ ପ୍ରଦର୍ଶନ, ସାଥୀ ପିଲାମାନଙ୍କ ସହ ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର ପ୍ରଦର୍ଶନ ଏବଂ ଶିକ୍ଷକଙ୍କର ଆଜ୍ଞାଧୀନ ହେବାକୁ ଶିଶୁମାନଙ୍କୁ ଅଭିଭାବକ ପ୍ରେରଣା ଦେବା ଉଚିତ । ଶିଶୁ ପୁଅ ହେଉ ବା ଝିଅ ଦୁହିଁଙ୍କ ଶିକ୍ଷା ଗ୍ରହଣ କରିବାର ସମାନ ଦକ୍ଷତା ରହିଛି । ଏଣୁ ସେମାନଙ୍କୁ ସେ ସୁଯୋଗ ମିଳିବା ଉଚିତ ।

ବର୍ତ୍ତମାନ ସମୟରେ ଦେଖାଯାଉଛି – ଶିଶୁର ଶିକ୍ଷାର ଦାୟିତ୍ୱ ବଢିଯାଇଛି, ଯଦ୍ୱାରା ଶିଶୁଟି ବହି ବସ୍ତାନୀ ବୋଝରୁ ମୁକୁଳି ପାରୁନାହିଁ । ଏଥିପ୍ରତି ଶିକ୍ଷାନୁଷ୍ଠାନ ଓ ଅଭିଭାବକ ଯତ୍ନବାନ ହେବା ଉଚିତ । ଚାଣକ୍ୟ ଲେଖିଛନ୍ତି – ଜନ୍ମରୁ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ଲାଳନ ପାଳନ କରିବ, ଦଶ ବର୍ଷ ପର୍ଯ୍ୟନ୍ତ ତାଡନା କରିବ– ଏହାର ଅର୍ଥ ତାକୁ ମାର୍ଜିତ ବ୍ୟବହାର ପାଇଁ ଶିକ୍ଷାଦେବ, ଆଜ୍ଞାଧୀନ ହେବା ପାଇଁ ପ୍ରବର୍ତ୍ତାଇବା । ଯେତେବେଳେ ଶିଶୁକୁ ବା ସନ୍ତାନକୁ ପନ୍ଦର ବର୍ଷ ହୋଇଯିବ, ସେତେବେଳେ ତା' ସହ ମିତ୍ରଭାବ ଆଚରଣ କରିବ ଅର୍ଥାତ ସେତେବେଳେ ତାକୁ ତାଡନା ବା ତା' ଉପରେ କ୍ରୋଧ ନ କରି ତାକୁ ବୁଝାଇ ଶୁଝାଇ କହିବା ଉଚିତ ।

ଛୋଟ ମଞ୍ଜିଟିଏ ବା ଚାରା ଗଛଟିଏ ମାଟିରେ ପୋତିଲେ ଯେମିତି ସେ ପାଣି ପବନ ସୂର୍ଯ୍ୟାଲୋକ ପାଇ ବିଶାଳ ଦ୍ରୁମରେ ପରିଣତ ହୁଏ ଠିକ୍ ସେହିପରି କୋମଳମତି ଶିଶୁଟି ସ୍ନେହ ଶ୍ରଦ୍ଧା, ସଦାଚାର ଓ ଶିକ୍ଷାଲାଭ କରି ମହାମାନବରେ ପରିଣତ ହୁଏ । କୁମ୍ଭାର ମାଟିକୁ ଗଢି ତାକୁ ଆକୃତି ଦେଲାଭଳି ଶିଶୁକୁ ଭବିଷ୍ୟତର ବଡ ମଣିଷ ହେବା ପାଇଁ ସଂସ୍କାର ଦିଆଯାଏ । ଶିଶୁ ହୃଦୟକୁ କଳୁଷ କାଳିମା ଛୁଇଁପାରେନା । ନିର୍ମଳ ହୃଦୟ ତା'ର । ତେଣୁ ତା'ର ଶାରିରୀକ ଓ ମାନସିକତାକୁ ବୁଝି ତାକୁ ସୁଉପଦେଶ ଦିଆଯାଏ । ଶାରୀରିକ ଦଣ୍ଡ ବା ହିଂସା ପ୍ରଦର୍ଶନ ଦ୍ୱାରା ଶିଶୁଟି ହିଂସ୍ର ହୋଇଯାଏ । ଶିଶୁଟି ତା'ର ମନୋଭାବ ପ୍ରକାଶ କରୁଥିବା ବେଳେ ଅଭିଭାବକ ବା ଶିକ୍ଷକ ଧୈର୍ଯ୍ୟ ଓ ସହାନୁଭୁତି ଦେଖାଇବା ଉଚିତ । ଶିଶୁଟିର ଭବିଷ୍ୟତ ସହ ଗୋଟିଏ ସୁସ୍ଥ ସମାଜ ଗଠନର ଗଭୀର ସମ୍ପର୍କ ରହିଛି । ଏଣୁ ଶିଶୁମାନଙ୍କର ଯତ୍ନ ସର୍ବାଦୌ କର୍ତ୍ତବ୍ୟ । ଶିଶୁର ଯତ୍ନ, ପୁଷ୍ଟିକର ଖାଦ୍ୟ, ଶିକ୍ଷା, ସଂସ୍କାର ଏସବୁକୁ ଧ୍ୟାନ ଦେଲେ ଶିଶୁ ନିଶ୍ଚୟ ଭବିଷ୍ୟତ ଦେଶ ଗଠନରେ ସହାୟକ ହେବ । ସୁସ୍ଥ ସବଳ ଶିଶୁ ଏବଂ ଶିକ୍ଷା ଗ୍ରହଣ କରିବାରେ ଶିଶୁର ମାନସିକତା ହେଉଛି ଶିଶୁ ବିକାଶର ଭିତ୍ତିଭୂମି । ଶିଶୁର ଦକ୍ଷତା ନିୟମିତ ବଦଳୁଥାଏ ଏବଂ ନୂଆ ନୂଆ ଦକ୍ଷତାମାନ ବିକଶିତ ହେଉଥାଏ । ଶିକ୍ଷା କ୍ଷେତ୍ରରେ ଶିଶୁର ଦୋଷ ଦୁର୍ବଳତାକୁ ଉପଲବ୍‌ଧି କରି ତା' ପ୍ରତି ଅଧିକ ଧ୍ୟାନ ଦେଲେ ଶିଶୁଟି ଅଗ୍ରସର ହୋଇପାରିବ । କୋମଳମତି ଶିଶୁମାନଙ୍କ ଭିତରେ ଗାନ୍ଧୀ, ଗୋପବନ୍ଧୁ, ଅବଦୁଲ୍ କଲାମଙ୍କ ଭଳି କ୍ଷମତା ସମ୍ପନ୍ନ ବ୍ୟକ୍ତିତ୍ୱର ପରିପ୍ରକାଶ ହୋଇପାରେ, ଏଥିରେ ସନ୍ଦେହ ନାହିଁ ।

ଶିକ୍ଷା ଶିଶୁର ମୌଳିକ ଅଧିକାର । ଏଥିରୁ ତାକୁ କେହି ବଞ୍ଚିତ କରିପାରିବେ ନାହିଁ । ଏକଥା ଆଖି ଆଗରେ ରଖି ସରକାରଙ୍କ ତରଫରୁ ଜନ୍ମରୁ ୧୪ ବର୍ଷ ପର୍ଯ୍ୟନ୍ତ ଶିଶୁକୁ ସର୍ବ ଶିକ୍ଷା ଅଭିଯାନରେ ସାମିଲ କରିବା ପାଇଁ ଯଥେଷ୍ଟ ସୁବିଧା ସୁଯୋଗ ପ୍ରଦାନ କରାଯାଉଛି । ଶିଶୁକୁ ମଧ୍ୟାହ୍ନ ଭୋଜନ ଓ ପୋଷାକ ଇତ୍ୟାଦି ମାଗଣାରେ ଦିଆଯାଉଛି । ଏହାଦ୍ୱାରା ସମସ୍ତ ଶିଶୁ ଶିକ୍ଷା ଗ୍ରହଣ କରି ପାରିବେ ଏବଂ ସରକାରଙ୍କ ଯୋଜନା ସଫଳ ହେବା ସହିତ ଶିଶୁଟି ଭବିଷ୍ୟତରେ ବଡ ହୋଇ ସମାଜରେ ତା'ର ସ୍ଥାନ ମଜଭୁତ୍ କରିପାରିବ ।

ଦେଉଳବେଡା କଲୋନୀ, ତାଳଚେର
କ୍ୱାର୍ଟର ନଂ – ୧ ବି – ୨୦
ପିନ୍ – ୭୫୯୧୦୨

# ଓଡ଼ିଶାର ବନ୍ୟପ୍ରାଣୀ

**ସଚ୍ଚିଦାନନ୍ଦ ବାରିକ**

ଓଡ଼ିଶାର ଭୌଗୋଳିକ କ୍ଷେତ୍ରଫଳ ୧୫୫, ୭୦୭ ବର୍ଗ କି.ମି. । ରେକର୍ଡ ଅନୁସାରେ ୫୨,୪୭୨ ବର୍ଗକି.ମି. ଅଞ୍ଚଳରେ ବନାଞ୍ଚଳ ଅଛି କିନ୍ତୁ ପ୍ରକୃତରେ ଭାରତ ବନ ସର୍ବେକ୍ଷଣର ରାଜ୍ୟ ବନ ରିପୋର୍ଟ (୧୯୯୯) ଅନୁସାରେ



୪୭,୦୩୩ ବର୍ଗ କି.ମି. ଅଞ୍ଚଳ ଜଙ୍ଗଲ ଦ୍ୱାରା ଆଚ୍ଛାଦିତ। ବନ୍ୟଜନ୍ତୁ ଏବଂ ତାଙ୍କର ବାସସ୍ଥଳୀକୁ ଯଥାର୍ଥ ସୁରକ୍ଷା ଦେବା ନିମନ୍ତେ ଭାରତ ବନ୍ୟଜନ୍ତୁ (ସୁରକ୍ଷା) ଆଇନ୍ ୧୯୭୨ ଅନ୍ତର୍ଗତ ୧୮ ଗୋଟି ଅଭୟାରଣ୍ୟ(ସଂରକ୍ଷଣସ୍ଥଳୀ) ଓଡ଼ିଶାରେ ରହିଛି । ତା ମଧ୍ୟରେ ଗହୀରମଥା (ସାମୁଦ୍ରିକ) ବନ୍ୟଜନ୍ତୁ ଅଭୟାରଣ୍ୟ, ଭିତରକନିକା ଜାତୀୟ ଉଦ୍ୟାନ, ଆଉ ଗୋଟିଏ ହେବାକୁ ଥିବା ପ୍ରସ୍ତାବିତ ଜାତୀୟ ଉଦ୍ୟାନ ରହିଛି ।

ଓଡ଼ିଶାର ସମଗ୍ର ବନାଞ୍ଚଳର ୧୦.୩୭% ଏହି ପଶୁ-ପକ୍ଷୀଙ୍କ ସୁରକ୍ଷିତ ଅଞ୍ଚଳ । ଏହି ସୁରକ୍ଷିତ ଅଞ୍ଚଳ ଓଡ଼ିଶାର ସମଗ୍ର ଭୌଗୋଳିକ ଅଞ୍ଚଳର ୪.୧% । ଏତଦ୍‌ବ୍ୟତୀତ ଏକ ବ୍ୟାଘ୍ର ସଂରକ୍ଷିତ କ୍ଷେତ୍ର (ଶିମିଳିପାଳ), ଏକ ଜୈବମଣ୍ଡଳ ସଂରକ୍ଷାଳୟ (ଶିମିଳିପାଳ), ଏକ ସୀମିତ ଅଞ୍ଚଳ (ଚିଲିକା), ଏକ ବନ୍ୟଜନ୍ତୁ ସଂରକ୍ଷାଳୟ (ବାଲିପଦର-ଭେଟନଇ), ଏକ ପ୍ରାଣୀ ବିଜ୍ଞାନ ଉଦ୍ୟାନ ଏବଂ ୮ଟି ହରିଣପାର୍କ (ଛୋଟ ଚିଡିଆଖାନା) ଗଢିତୋଳିବା ପାଇଁ ଉପରୋକ୍ତ ଜାଗାଗୁଡିକ ନିର୍ଣ୍ଣୟ କରାଯାଇଛି । ରାଜ୍ୟରେ ବିଦେଶୀ ଅଲିଭ୍ ରିଡ୍‌ଲେ କଇଁଛମାନଙ୍କ ଅଣ୍ଡାଦେବା ପାଇଁ ତିନୋଟି ସମୁଦ୍ରକୂଳ ନିର୍ଣ୍ଣୟ ହୋଇଛି । ଏଠି ବିଶ୍ୱବିଦିତ ଚିଲିକା ହ୍ରଦସହ ଅନେକ ପ୍ରାକୃତିକ ହ୍ରଦ ରହିଅଛି । ଚିଲିକା ବର୍ତ୍ତମାନ 'ରାମସାର' ସ୍ଥାନରୂପେ ଚିହ୍ନିତ । ୧୯ଟି ପ୍ରଜାତିର ଉଭୟଚର, ୧୧୦ ପ୍ରଜାତିର ସରୀସୃପ (ଯାହା ମଧ୍ୟରେ ତିନି ପ୍ରକାର କୁମ୍ଭୀର ଅନ୍ତର୍ଭୁକ୍ତ), ୪୭୩ ପ୍ରଜାତିର ପକ୍ଷୀ ଓ ୮୬ ପ୍ରଜାତିର ସ୍ତନ୍ୟପାୟୀ ପ୍ରାଣୀ ଓଡ଼ିଶାରେ ଦେଖାଯାନ୍ତି । ଆଇୟୁସିଏନ୍ ରେଡ୍‌ଡାଟା ବହି ଅନୁସାରେ ଏମାନଙ୍କ ମଧ୍ୟରେ ୫୪ ଜାତିର ଲୋପ ପାଇଯାଉଥିବା ଜୀବ ଅନ୍ତର୍ଭୁକ୍ତ । ଏହି ୫୪ ମଧ୍ୟରେ ୧୭ ପ୍ରକାରର ସରୀସୃପ, ୧୫ ପ୍ରକାର ପକ୍ଷୀ ଏବଂ ୨୨ ଜାତିର ସ୍ତନ୍ୟପାୟୀ ପ୍ରାଣୀ ଅନ୍ତର୍ଭୁକ୍ତ । ଓଡ଼ିଶା ବ୍ୟାଘ୍ର ପରିଯୋଜନା (୧୯୭୨-୭୩), ସମନ୍ୱିତ କୁମ୍ଭୀର ଓ ସମୁଦ୍ର

କଇଁଛ ପରି ଯୋଜନା (୧୯୭୫-୭୬), ହସ୍ତୀ ପ୍ରକଳ୍ପ (୧୯୯୧-୯୨), ଜଳଜ ପକ୍ଷୀ ପରିଯୋଜନା (୧୯୯୨-୯୩) ଏବଂ କୃଷ୍ଣମୃଗ ପରିଯୋଜନା (୧୯୯୪-୯୫) ପରି ଅନେକ ଗବେଷଣା ଓ ସଂରକ୍ଷଣ ପରିଯୋଜନା କାର୍ଯ୍ୟକରୀ ହେଉଛି ।

## ଓଡ଼ିଶାର ଜାତୀୟ ଉଦ୍ୟାନ ଓ ବନ୍ୟପ୍ରାଣୀ ଅଭୟାରଣ୍ୟ

### ଶିମିଳିପାଳ ଜାତୀୟ ବନ୍ୟପ୍ରାଣୀ ଅଭୟାରଣ୍ୟ

ଓଡ଼ିଶାର ମୟୂରଭଞ୍ଜ ଜିଲ୍ଲାରେ ଥିବା ଶିମିଳିପାଳ ତା'ର ଘନସବୁଜ ଜଙ୍ଗଲ, ପାହାଡ, ବ୍ୟାପ୍ତ ଉପତ୍ୟକା, ସବୁଜଭୂମି, ମାଳଭୂମି ଏବଂ ସମୃଦ୍ଧ ଜୈବବିବିଧତା ସହ ଏକ ବ୍ୟାଘ୍ର ସଂରକ୍ଷଣ ସ୍ଥଳ, ଏକ ଜାତୀୟ ଉଦ୍ୟାନ (ପ୍ରସ୍ତାବିତ), ଏକ ବନ୍ୟଜନ୍ତୁ ଅଭୟାରଣ୍ୟ, ଏକ ହସ୍ତୀ ଅଭୟାରଣ୍ୟ ଏବଂ ଏକ ଜୀବବିଜ୍ଞାନ ସଂରକ୍ଷଣ ସ୍ଥାନର ଗୌରବ ବହନ କରେ । ପ୍ରାକୃତିକ ସୌନ୍ଦର୍ଯ୍ୟ ପରିପୂର୍ଣ୍ଣ ଶିମିଳିପାଳ ଅଭୟାରଣ୍ୟ ରାଜ୍ୟ ତଥା ଦେଶର ସର୍ବ ବୃହତ ବିଷୁବ ମଣ୍ଡଳୀୟ ଜଙ୍ଗଲ । ସମୁଦ୍ର ପତନଠାରୁ ୧୧୬୫.୬ ମିଟର ଉଚ୍ଚରେ ଅବସ୍ଥିତ ମେଘାସନୀ ପର୍ବତ ଏହାର ଉଚ୍ଚତମ ଶୃଙ୍ଗ । ଏହି ପର୍ବତମାଳାର ସଂକୀର୍ଣ୍ଣ ଉପତ୍ୟକା ଦେଇ ବୁଢ଼ାବଳଙ୍ଗ, ଗଙ୍ଗାହାର, ସୋନ୍, ଦେଓ, ସଞ୍ଜ, ଖଇରୀ ଓ ହଣ୍ଡନ ଆଦି ନଦୀ ପ୍ରବାହିତ ।

ଏହିଠାରେ ଜାତୀୟ ଉଦ୍ଭିଦର ପ୍ରବାହ ଅଧିକ । ଓଡ଼ିଶାରେ ମିଳୁଥିବା ୧୦୭୬ ଶ୍ରେଣୀ ଉଦ୍ଭିଦ ମଧ୍ୟରେ ୯୪ ପ୍ରକାରର ଅର୍କିଡ୍ ଗଛ, ଜୀବଜନ୍ତୁଙ୍କ ବାସସ୍ଥାନ, ୪୨ ପ୍ରକାରର ସ୍ତନ୍ୟପାୟୀ ପ୍ରାଣୀ, ୨୩୧ ଜାତିର ପକ୍ଷୀ, ୨୯ ପ୍ରକାରର ସରୀସୃପ ଦେଖାଯାନ୍ତି । ମାଂସାଶୀ ଜୀବ ଭିତରେ ମହାବଳ ବାଘ, କଲରାପତ୍ରିଆ ବାଘ, ଜଙ୍ଗଲ ବିରାଡ଼ି, ବଳିଆ କୁକୁର ଓ ଗଧିଆ ରହନ୍ତି । ତୃଣଭୋଜି ମଧ୍ୟରେ ହାତୀ, ଗୟଳ, ସମ୍ବର, କୁଟୁରା, ହରିଣ, ଗୁରାଣ୍ଡି ଇତ୍ୟାଦି ଦେଖାଯାନ୍ତି । ବାର୍ହା, ବଜ୍ରକାପ୍ତା, ଝିଙ୍କ, କଇଁଛ, ଅଜଗର ଏବଂ ମଗର ଜାତୀୟ କୁମ୍ଭୀର ଏଠି ରହିଛନ୍ତି । ୧୯୯୮ ଗଣନା ଅନୁସାରେ ରାଜ୍ୟର ୧୯୪ଟି ବାଘ ମଧ୍ୟରୁ ଏଠାରେ ୯୮ ବାଘ ଅଛନ୍ତି । ୧୯୯୯ ମସିହା ଗଣନା ଅନୁସାରେ ଏଠାରେ ୫୬୫ଟି ହସ୍ତୀ ଅଛନ୍ତି । ଏହା ମଧ୍ୟରେ ଜୋରନ୍ଦା (୧୫୦ମି) ଓ ବରେହିପାଣି (୪୦୦ମି) ଜଳପ୍ରପାତ ରହିଛି । ଜୈବବିବିଧତା, ଭୌଗୋଳିକ ଓ ଜୈବମଣ୍ଡଳ ବିଶେଷତ୍ୱସମୃଦ୍ଧ ଶିମିଳିପାଳ ବୈଜ୍ଞାନିକ, ପ୍ରକୃତିପ୍ରେମୀ, ଛାତ୍ର ତଥା ପର୍ଯ୍ୟଟକମାନଙ୍କ ନିମନ୍ତେ ଏକ ଅନନ୍ୟ ପ୍ରମୋଦଦାୟକ ଲକ୍ଷ୍ୟସ୍ଥଳ ।

### ଭିତରକନିକା ବନ୍ୟପ୍ରାଣୀ ଅଭୟାରଣ୍ୟ

ଭିତରକନିକା ବଣ୍ୟପ୍ରାଣୀ ଅଭୟାରଣ୍ୟ କେନ୍ଦ୍ରାପଡା ଜିଲ୍ଲାରେ ଅବସ୍ଥିତ । ଏହି ଉଦ୍ୟାନ ବ୍ରାହ୍ମଣୀ, ବୈତରଣୀ ଓ ଧାମରା ନଦୀର ତ୍ରିକୋଣ ଭୂମିରେ ଅବସ୍ଥିତ । ଏହା ୧୯୭୫ରେ ବନ୍ୟପ୍ରାଣୀ ଅଭୟାରଣ୍ୟ ଓ ୧୯୯୯ରେ ଜାତୀୟ ଉଦ୍ୟାନ ରୂପେ ଘୋଷିତ ହେଲା । ଜୈବ ବିବିଧତା ମଧ୍ୟରେ ୬୩ ପ୍ରକାରର ଲୁଣି ହେନ୍ତାଳ ଗଛ, ୨୧୭ ପ୍ରଜାତିର ପକ୍ଷୀ, ଅହିରାଜ, ଅଜଗର, ଗୋଖର, ଚମ୍ପ ଇତ୍ୟାଦି ସାପ, ଘଡିଆଳ କୁମ୍ଭୀର (୨୦୦୦ ଗଣନା ଅନୁସାରେ ୧୦୯୮ଟି ), ସାମୁଦ୍ରିକ ଗୋଧି, ବାଳିଆ, ଚିତ୍ତଳ ଆଦି ସ୍ତନ୍ୟପାୟୀ ପ୍ରାଣୀ ଦେଖାଯାନ୍ତି । ଏତଦ୍ ବ୍ୟତୀତ ଧଳାକୁମ୍ଭୀର ବା ଶଙ୍ଖୁଆ ଏଠାରେ ଦେଖାଯାନ୍ତି । ଶୀତଦିନେ(ଜାନୁଆରୀ-ଅପ୍ରେଲ୍) ଏହାକୁ ଲାଗିଥିବା ସମୁଦ୍ରକୂଳକୁ ଅଣ୍ଡାଦେବା ପାଇଁ ଲକ୍ଷ ଲକ୍ଷ ସଂଖ୍ୟାରେ ବିଦେଶୀ ଅଲିଭ୍ ରିଡ୍‌ଲେ କଇଁଛ ଆସନ୍ତି । ଭିତରକନିକା ହେନ୍ତାଳବଣ ସରୀସୃପଙ୍କ ପାଇଁ ଭାରତର ଉତ୍କୃଷ୍ଟ ଆଶ୍ରୟସ୍ଥଳ ।

### ସାତକୋଶିଆ ଗଣ୍ଡ ବନ୍ୟପ୍ରାଣୀ ଅଭୟାରଣ୍ୟ

ଓଡ଼ିଶାର ଅନ୍ୟତମ ଆକର୍ଷଣ ସାତକୋଶିଆ ଗଣ୍ଡ ବଣ୍ୟପ୍ରାଣୀ ଅଭୟାରଣ୍ୟ – ଅନୁଗୁଳ, ନୟାଗଡ, କଟକ ଓ ବୌଦ୍ଧ ଜିଲ୍ଲାର କିଛି ଅଂଶକୁ ନେଇ ଗଠିତ । ୭୯୫, ୫୨ବର୍ଗ କି.ମି. ପରିବେଷ୍ଟିତ ଅଭୟାରଣ୍ୟ ଭିତରେ ମହାନଦୀ କୃତ ସାତକୋଶିଆ ଗଣ୍ଡର ଦୈର୍ଘ୍ୟ ହେଉଛି ସାତକୋଶ ବା ୨୨କି.ମି. । ସାତକୋଶିଆ ଗଣ୍ଡକୁ ଲାଗି ସାତକୋଶିଆ ଅଭୟାରଣ୍ୟ । ଏହାର ମୁଖ୍ୟ ଆକର୍ଷଣ

ହେଉଛି ଘଡିଆଳ କୁମ୍ଭୀର । କୁମ୍ଭୀର ବ୍ୟତୀତ ବାଘ, ଭାଲୁ, ଟପବାଘ, ଗୟଳ ଓ ଅନ୍ୟାନ୍ୟ ସରୀସୃପ ଏହି ଅଭୟାରଣ୍ୟର ଆକର୍ଷଣ । ଏହା ଓଡ଼ିଶାର ଏକ ବ୍ୟାଘ୍ର ପ୍ରକଳ୍ପ ଓ କେନ୍ଦ୍ର ସରକାରଙ୍କ ହସ୍ତୀ ପ୍ରକଳ୍ପର ଅନ୍ତର୍ଭୁକ୍ତ । ସାତକୋଶିଆ ଗଣ୍ଡ, ଟିକରପଡା ଘଡିଆଳ ଗବେଷଣା ଓ ସଂରକ୍ଷଣ ପ୍ରକଳ୍ପ, ପର୍ବତମାଳା ଓ ନୌବିହାର ଏହାର ପ୍ରମୁଖ ଆକର୍ଷଣ ।

### ହଦଗଡ ଅଭୟାରଣ୍ୟ

କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାର କିଛି ସ୍ଥାନକୁ ନେଇ ହଦଗଡ ଅଭୟାରଣ୍ୟ । ଏହା ସାଳନ୍ଦି ଡ୍ୟାମ୍ ନିକଟରେ ଅବସ୍ଥିତ । ଏହି ଅଭୟାରଣ୍ୟରେ ବାଘ, ଚିତାବାଘ, ମାଛଧରା ବିଲେଇ, ଜଙ୍ଗଲୀ ବିଲେଇ, ହେଟାବାଘ, ହାତୀ, ମାଙ୍କଡ ଓ ବିଭିନ୍ନ ସରୀସୃପ ଓ ପକ୍ଷୀ ଦେଖାଯାନ୍ତି । ଏହି ଅଭୟାରଣ୍ୟର ପୂର୍ବରେ ଥିବା ବଉଳ ପର୍ବତାଞ୍ଚଳ ଓ ପଶ୍ଚିମରେ ପ୍ରବାହିତ ସାଳନ୍ଦୀ ନଦୀ ମୁଖ୍ୟ ଆକର୍ଷଣ ।

### ନନ୍ଦନକାନନ ପ୍ରାଣୀ ଉଦ୍ୟାନ

ଓଡ଼ିଶା ରାଜଧାନୀ ଭୁବନେଶ୍ୱରରୁ ମାତ୍ର ୧୫ କି.ମି. ଦୂରରେ ନନ୍ଦନକାନନ ପ୍ରାଣୀ ଉଦ୍ୟାନ ଅବସ୍ଥିତ । ଏହା ମଧ୍ୟରେ ଚିଡିଆଖାନା ଓ ଉଦ୍ଭିଦ ଉଦ୍ୟାନ ରହିଅଛି । ନନ୍ଦନକାନନର ଅର୍ଥ ସ୍ୱର୍ଗର ବଗିଚା । ଏଠି ପୃଥିବୀର ସବୁଠାରୁ ବଡ ଓ ବିରଳ ଧଳାବାଘ ପ୍ରଜନନ କେନ୍ଦ୍ର ଅଛି । ନନ୍ଦନକାନନ ୧୯୬୦ରେ ଆରମ୍ଭ ହୋଇଥିଲା ଏବଂ ୧୯୭୯ରେ ସର୍ବସାଧାରଣଙ୍କ ପାଇଁ ଖୋଲାଯାଇଥିଲା । ଏଠି ଏକ ଖୋଲା ସିଂହ ସଫାରୀ ଅଛି । ଏହା ବିଶ୍ୱର ପ୍ରଥମ ଚିଡିଆଖାନା ଯେଉଁଠି ଘଡିଆଳ କୁମ୍ଭୀରମାନେ ପ୍ରଜନନ କରନ୍ତି । ବିଭିନ୍ନ ପ୍ରକାରର ବିରଳ ଜୀବଜନ୍ତୁ, ନୌବିହାର, ହ୍ରଦ ଉପରେ ରୋପ୍‌ୱେ ଏହାର ପ୍ରମୁଖ ଆକର୍ଷଣ ।

### ବାଇଶିପାଲି ଅଭୟାରଣ୍ୟ

ଏହା ନୟାଗଡ ଜିଲ୍ଲାରେ ଅବସ୍ଥିତ ଓ ସାତକୋଶିଆ ଗଣ୍ଡ ନିକଟବର୍ତ୍ତୀ ଅଟେ । ଏଠାରେ ମଧ୍ୟ ସାତକୋଶିଆ ଗଣ୍ଡ ଅଭୟାରଣ୍ୟ ପରି ବନ୍ୟପ୍ରାଣୀ ପରିଦୃଷ୍ଟ ହୁଅନ୍ତି । ନିକଟବର୍ତ୍ତୀ ଜଙ୍ଗଲର ସବୁଜିମା ପ୍ରାକୃତିକ ସୌନ୍ଦର୍ଯ୍ୟକୁ ବୃଦ୍ଧି କରିଥାଏ ।

### କୋଟଗଡ ଅଭୟାରଣ୍ୟ

କନ୍ଧମାଳ ଜିଲ୍ଲାର ବାଲିଗୁଡା ଉପଖଣ୍ଡରେ ଅବସ୍ଥିତ ଏହି କୋଟଗଡ ଅଭୟାରଣ୍ୟ ଜୈବ ବିବିଧତାରେ ସମୃଦ୍ଧ । ଏଠାରେ ବାଘ, ହାତୀ, ଗୟଳ, ସମ୍ବର, ଚିତ୍ରିତ ହରିଣ, ମୟୂର, କୋକିଶିଆଳି ଓ ବିଭିନ୍ନ ପ୍ରକାରର ସରୀସୃପ ଓ ପକ୍ଷୀ ଦେଖାଯାନ୍ତି । ସବୁଜିମାଭରା ଘଞ୍ଚ ବନମାଳା ସହିତ ଶାନ୍ତ ଚିତ୍ରିତ ସୌନ୍ଦର୍ଯ୍ୟ ଏହାର ପ୍ରମୁଖ ଆକର୍ଷଣ । ବେଲଘରଠାରେ ଥିବା କାଠ ବଙ୍ଗଳା ପ୍ରକୃତିପ୍ରେମୀଙ୍କୁ ଆକର୍ଷିତ କରାଏ ।

### ଚନ୍ଦକା-ଡମପଡା ଅଭୟାରଣ୍ୟ

ଚନ୍ଦକା-ଡମପଡା (୧୭୫.୭୯ ବର୍ଗ କି.ମି.) ଅଭୟାରଣ୍ୟ ଓଡ଼ିଶାର ମନ୍ଦିରମାଳିନୀ ସହର ଭୁବନେଶ୍ୱରଠାରୁ ୨୦ କିଲୋମିଟର ଦୂରରେ ଅବସ୍ଥିତ । ଏଠାରେ କୋଚିଲା, ବେଲ, କାଙ୍କଡା, ସୁନାରି, ଶାଳ, କୁମ୍ଭ, କରଞ୍ଜ, ଜାମୁ, ବେତ ଇତ୍ୟାଦି ଗଛ ଦେଖାଯାନ୍ତି । ଔଷଧୀୟ ଗଛ ମଧ୍ୟରେ ଦୁରମାରୀ, ଭୁଇଁନିମ୍ବ, ଶତାବରୀ, ଇନ୍ଦ୍ରଜବ, ଅପମାରଙ୍ଗ, ପାତାଳ ଗରୁଡ ଇତ୍ୟାଦି ମିଳେ । ଏହି ବନାଞ୍ଚଳ ୮୩ଟି ହାତୀଙ୍କ ସମେତ ଏକାଧିକ ଚିତାବାଘ, ହେଟାବାଘ, ବଣୁଆ କୁକୁର, ବାରହା, ମୟୂର ଆଦିଙ୍କୁ ଉପଯୁକ୍ତ ବାସସ୍ଥାନ ଯୋଗାଏ । ଏଠି ଦୁଇଟି ଜଳଭଣ୍ଡାର ଅଛି- ଡେରାସବନ୍ଧ ଓ ଝୁମୁକା ବନ୍ଧ । ବେୟ ବନ୍ୟାଜଳ ସଂରକ୍ଷଣର ଜ୍ୱଳନ୍ତ ଉଦାହରଣ । ଡେରାସ୍‌ଠାରେ ଥିବା ବାଉଁଶ କୁଟୀରଗୁଡିକ ଚନ୍ଦକା ଅଭୟାରଣ୍ୟର ଅପୂର୍ବ ପ୍ରାକୃତିକ ସୌନ୍ଦର୍ଯ୍ୟ ଦର୍ଶନର ସୁଯୋଗ ଦିଏ ।

### ଖଳାସୁଣୀ ଅଭୟାରଣ୍ୟ

୨୨୩ରୁ ୭୫୦ ମିଟର ପର୍ଯ୍ୟନ୍ତ ପରିବ୍ୟାପ୍ତ ଖଳାସୁଣୀ ଅଭୟାରଣ୍ୟ ପ୍ରାକୃତିକ ସୌନ୍ଦର୍ଯ୍ୟ ଏବଂ ବାଘ, ହାତୀ, ସମ୍ବର, ଓ ବିଭିନ୍ନ ପ୍ରଜାତିର ହରିଣ ଏବଂ ପକ୍ଷୀ

ଦେଖାଯାଆନ୍ତି । ପ୍ରକୃତିପ୍ରେମୀ ଓ ପର୍ଯ୍ୟଟକମାନଙ୍କ ପାଇଁ ଏହା ଏକ ଆକର୍ଷଣୀୟ ସ୍ଥାନ

**ବାଲୁଖଣ୍ଡ–କୋଣାର୍କ ଅଭୟାରଣ୍ୟ**

ପୁରୀ–କୋଣାର୍କ ସମୁଦ୍ରତଟରେ ଏହା ଅବସ୍ଥିତ । କାଜୁ, ନିମ୍ବ, ତେନ୍ତୁଳି, କରଞ୍ଜ ଇତ୍ୟାଦି ବୃକ୍ଷ ଆଚ୍ଛାଦିତ ଏହି ଜଙ୍ଗଲରେ କୃଷ୍ଣସାର ମୃଗ, ଚିତ୍ରା ହରିଣ ସମେତ ବିଭିନ୍ନ ପ୍ରଜାତିର ପଶୁପକ୍ଷୀ ଓ ସରୀସୃପ ଦେଖାଯାଆନ୍ତି । ଏହି ଅଭୟାରଣ୍ୟର ପ୍ରବେଶ ସ୍ଥାନରୁ ମାତ୍ର ୩ କିଲୋମିଟର ଦୂରରେ ପୁରୀ ଅବସ୍ଥିତ ।

**କୁଲଡିହା ଅଭୟାରଣ୍ୟ**

ଏହି ଅଭୟାରଣ୍ୟ ବାଲେଶ୍ୱର ଜିଲ୍ଲାରେ ଅବସ୍ଥିତ । ଜଙ୍ଗଲ ଆଚ୍ଛାଦିତ ଏହି ଅଭୟାରଣ୍ୟରେ ଏକ ମନୋରମ ଝରଣା ପ୍ରବାହିତ । ଏଠାରେ ବାଘ, ହାତୀ, ସମ୍ବର ଇତ୍ୟାଦିଙ୍କ ସମେତ ବିଭିନ୍ନ ପ୍ରଜାତିର ପଶୁପକ୍ଷୀ ଓ ସରୀସୃପ ଦେଖାଯାଆନ୍ତି । ସୁଖୁପଡା ଓ ନାଟୋ ପାର୍ବତ୍ୟାଞ୍ଚଳ ମଧ୍ୟ ଦେଇ ଏହି ଅଭୟାରଣ୍ୟର ଶିମିଳିପାଳ ସହ ସଂଯୋଗ ରହିଛି ।

**ଡେବ୍ରିଗଡ ଅଭୟାରଣ୍ୟ**

ସମୃଦ୍ଧ ବନ୍ୟପ୍ରାଣୀ ହୀରାକୁଦ ନଦୀବନ୍ଧ ଏବଂ ଆକର୍ଷଣୀୟ ବିଶେଷତ୍ୱରେ ଭରା ଏହି ଡେବ୍ରିଗଡ ବନ୍ୟପ୍ରାଣୀ ଅଭୟାରଣ୍ୟ । ଶୀତଋତୁରେ ହୀରାକୁଦ ନଦୀବନ୍ଧର ଆକର୍ଷଣରେ ଅସଂଖ୍ୟ ବିଦେଶାଗତ ପକ୍ଷୀମାନଙ୍କ ସମାଗମ ହୋଇଥାଏ । ଏହି ଜଙ୍ଗଲ ହେଉଛି ଚୌରାଶିଂଘା ଜାତୀୟ ପଶୁଙ୍କର ବାସସ୍ଥଳୀ । ଏତଦ୍‌ବ୍ୟତୀତ ବାଘ, ଚିତାବାଘ, ସମ୍ବର, ଚିତ୍ରା ହରିଣ, ଉଭୟ ଘରୋଇ ଓ ବିଦେଶାଗତ ପକ୍ଷୀ ପ୍ରଭୃତି ଏଠାରେ ଦେଖାଯାଆନ୍ତି । ସମ୍ବଲପୁର ଏବଂ ବରଗଡଠାରୁ ଏହା ଯଥାକ୍ରମେ ୪୦କି.ମି. ଓ ୬୦ କି.ମି. ଦୂରରେ ଅବସ୍ଥିତ ।

**ଲଖାରୀ ବନ୍ୟଜନ୍ତୁ ଅଭୟାରଣ୍ୟ**

ଗଜପତି ଜିଲ୍ଲାର ଲଖାରୀ ଜଙ୍ଗଲ ଓଡ଼ିଶାର ଏକ ଅଭୟାରଣ୍ୟ । ଏଠି ହାତୀ ସମେତ ବାଘ, ହରିଣ, ସମ୍ବର, କୁତ୍ରା, ଝିଙ୍କ, ଠେକୁଆ ପ୍ରଭୃତି ବନ୍ୟଜନ୍ତୁ ଦେଖାଯାନ୍ତି । ଏହି ଅଭୟାରଣ୍ୟକୁ ବ୍ରହ୍ମପୁର, ତପ୍ତପାଣି ଏବଂ ଚନ୍ଦ୍ରଗିରିଠାରୁ ଯାଇ ହେବ ।

**ଚିଲିକା (ନଳବଣ) ଅଭୟାରଣ୍ୟ**

ଓଡ଼ିଶାର ଖୋର୍ଦ୍ଧା, ପୁରୀ ଓ ଗଞ୍ଜାମ ଜିଲ୍ଲାରେ ବ୍ୟାପିଥିବା ଏକ ଭାରତ ପ୍ରସିଦ୍ଧ ସ୍ଥାନ ହେଉଛି ଚିଲିକା (ନଳବଣ) ଅଭୟାରଣ୍ୟ । ଅଂଶୁପା ଓ ସର ମଧୁରଜଳ ହ୍ରଦ ହୋଇଥିବା ବେଳେ ଚିଲିକା ହେଉଛି ଓଡ଼ିଶାର ସବୁଠାରୁ ବଡ ଓ ଲବଣାକ୍ତ ହ୍ରଦ । ଏଠାରେ ଥିବା ନଳବଣ ବିଦେଶୀ ପକ୍ଷୀମାନଙ୍କ ଶୀତକାଳୀନ ବାସସ୍ଥାନ । ଏମାନେ ହଜାର ହଜାର ମାଇଲ ଭଳି ସୁଦୂର ଉତ୍ତରଗୋଲାର୍ଦ୍ଧ ଓ ସାଇବେରିଆ ଅଞ୍ଚଳରୁ ଆସନ୍ତି । ମାଲୁଦ ଓ ପାରିକୁଦ ଦ୍ୱୀପରେ ଥିବା ମନ୍ଦିର ପର୍ଯ୍ୟଟକଙ୍କ ପାଇଁ ଅନ୍ୟତମ ଆକର୍ଷଣ । ୧୬୭ ପ୍ରକାରର ବା ତଦୁର୍ଦ୍ଧ୍ୱ ପକ୍ଷୀ (ବିଦେଶୀ–୯୪) ଯଥା – ଫ୍ଲେମିଙ୍ଗୋ, ସମୁଦ୍ରଚିଲ, ବିଭିନ୍ନ ପ୍ରକାର ହଂସ, ସାରସ, ହଂସରାଳୀ ଓ ଅନ୍ୟାନ୍ୟ ପକ୍ଷୀ ଏଠି ଦେଖାଯାନ୍ତି । ଏରାବାଡି ଡଲ୍‌ଫିନ୍ ଏଠାରେ ବେଳେବେଳେ ଦେଖାଯାନ୍ତି ।

**ବଡରମା ଅଭୟାରଣ୍ୟ**

ଓଡ଼ିଶାର ସମ୍ବଲପୁର ଜିଲ୍ଲାର ବାମ୍ରା ବନ୍ୟ ଡିଭିଜନ୍‌ରେ ଏହି ଅଭୟାରଣ୍ୟ ଅବସ୍ଥିତ । ସମ୍ବଲପୁର ସହରଠାରୁ ୬ ନମ୍ବର ଜାତୀୟ ରାଜପଥରେ ଏହାର ଦୂରତା ୪୮କି.ମି । ଏହା ପଶ୍ଚିମ ଓଡ଼ିଶାର ଏକ ଆକର୍ଷଣୀୟ ସ୍ଥାନ । ଏଠାରେ ଚିରସ୍ରୋତା ଝରଣା ପ୍ରବାହମାନ । ବାଘ, ଚିତାବାଘ, ହାତୀ, ହେଟାବାଘ, ବାର୍‌ହା, ହରିଣ, ସମ୍ବର, କୁତ୍ରା ଓ ଅନେକ ପ୍ରକାରର ସରୀସୃପ ଓ ପକ୍ଷୀ ଏଠାରେ ବାସ କରନ୍ତି ।

**ସୁନାବେଡା ଅଭୟାରଣ୍ୟ**

ସୁନାବେଡା ଅଭୟାରଣ୍ୟ ଓଡ଼ିଶାର ପଶ୍ଚିମକୋଣ, ଛତିଶଗଡ ରାଜ୍ୟର ସୀମା ସନ୍ନିକଟେ ଓ ନୂଆପଡା ଜିଲ୍ଲାରେ ଅବସ୍ଥିତ । ଏହା ୬୦୦ ବର୍ଗ କି.ମି. ଅଞ୍ଚଳରେ

ପରିବ୍ୟାପ୍ତ । ୧୧ଟି ସୁନ୍ଦର ଜଳପ୍ରପାତ ଏହାର ଆକର୍ଷଣୀୟକୁ ଦ୍ୱିଗୁଣିତ କରେ । ବାଘ, ଚିତାବାଘ, ହେଟାବାଘ, ହରିଣ, ବାର୍ହା, ଚିତ୍ତଳ, ସମ୍ବର ତଥା ବିଭିନ୍ନ ପ୍ରକାର ପକ୍ଷୀ ଏବଂ ସରୀସୃପ ଏଠାରେ ଦେଖାଯାନ୍ତି । ଲୁପ୍ତପ୍ରାୟ ବାରସିଙ୍ଗାମାନଙ୍କ ପ୍ରକୃଷ୍ଟ ବାସସ୍ଥଳୀ ରୂପେ ଏହା ଜଣାଶୁଣା ।

**କର୍ଲାପାଟ ଅଭୟାରଣ୍ୟ**

ଏହି ଛୋଟ ଅଭୟାରଣ୍ୟଟି କଳାହାଣ୍ଡି ଜିଲ୍ଲା ସଦର ମହକୁମା ଭବାନୀ ପାଟଣା ସହରର ୧୨କି.ମି. ଦୂରରେ ଅବସ୍ଥିତ । ଫୁଲିଝରଣ ନାମରେ ଏକ ସୁନ୍ଦର ଜଳପ୍ରପାତ ଏହା ନିକଟରେ ଅବସ୍ଥିତ । ଏହା ବଣଭୋଜି ପାଇଁ ଗୋଟିଏ ପ୍ରକୃଷ୍ଟ ସ୍ଥାନ । ଦୂରଦୂରାନ୍ତରୁ ଲୋକେ ଏଠାକୁ ବଣଭୋଜି କରିବା ପାଇଁ ଆସନ୍ତି । ଏହି ଅଭୟାରଣ୍ୟରେ ଚିତାବାଘ, ସମ୍ବର, ହରିଣ, ମୂଷା ହରିଣ ଏବଂ ବିଭିନ୍ନ ପ୍ରକାର ପକ୍ଷୀ ତଥା ସରୀସୃପ ଦେଖାଯାନ୍ତି ।



**ଗହୀରମଥା (ସାମୁଦ୍ରିକ) ଅଭୟାରଣ୍ୟ**

ଗହୀରମଥା ଓଡ଼ିଶାର ଏକମାତ୍ର ସାମୁଦ୍ରିକ ଅଭୟାରଣ୍ୟ । ଏହା ମହାନଦୀ ତ୍ରିକୋଣଭୂମି ନିକଟରେ ଅବସ୍ଥିତ । ଏହା ଉତ୍ତର-ପୂର୍ବରେ ଥିବା ନାସି ଦ୍ୱୀପରୁ ଦକ୍ଷିଣ-ପଶ୍ଚିମ ତେଲେଙ୍ଗା ମୁହାଣ ଯାଏ ଲମ୍ବିଛି । ଏହା ସମୁଦ୍ର ଭିତରକୁ ୨୦ କି.ମି ପର୍ଯ୍ୟନ୍ତ ଯାଇଛି ।

ଏ ଅଭୟାରଣ୍ୟକୁ ଅଲିଭ୍ ରିଡ୍ଲେ କଇଁଛ, ଡଲଫିନ୍ ଓ ଅନ୍ୟାନ୍ୟ ସାମୁଦ୍ରିକ ଜନ୍ତୁଙ୍କ ସଂରକ୍ଷଣ ପାଇଁ ସୃଷ୍ଟି କରାଯାଇଛି । ବଙ୍ଗୋପସାଗର ଓ ହେନ୍ତାଳବଣକୁ ପୃଥକ କରୁଥିବା ଗହୀରମଥା ବେଳାଭୂମି ଭିତରକନିକାର ପୂର୍ବକୁ ଅବସ୍ଥିତ । ଗହୀରମଥା ଅଲିଭ୍ ରିଡ୍ଲେ କଇଁଛମାନଙ୍କ ସର୍ବୋତ୍କୃଷ୍ଟ ଅଣ୍ଡା ଦେବା ସ୍ଥଳୀ ରୂପେ ବିଶ୍ୱ ଦରବାରରେ ପରିଚିତ ।



# ଓଡ଼ିଶାର ଜାତୀୟ ଉଦ୍ୟାନ ଓ ବନ୍ୟଜନ୍ତୁ ଅଭୟାରଣ୍ୟ

ଗୋବିନ୍ଦ ଚନ୍ଦ୍ର ମଲ୍ଲିକ
ସାଧନା ମିଶ୍ର

| କ୍ର.ନଂ | ଜାତୀୟ ଉଦ୍ୟାନ ଓ ବନ୍ୟଜନ୍ତୁ ଅଭୟାରଣ୍ୟ | ଜିଲ୍ଲା | ଅଞ୍ଚଳ | ପର୍ଯ୍ୟଟନ ପାଇଁ ଉପଯୁକ୍ତ ସମୟ | ଅଧିକାରୀ ଓ ଯୋଗାଯୋଗ |
|---|---|---|---|---|---|
| ଜାତୀୟ ଉଦ୍ୟାନ | | | | | |
| ୧ | ଶିମିଳିପାଳ | ମୟୂରଭଞ୍ଜ | ୮୪୫.୭୦ | ୧୪ ନଭେମ୍ବରରୁ ୧୫ ଜୁନ୍ | ବାରିପଦା– କ୍ଷେତ୍ର ନିର୍ଦ୍ଦେଶକ, ଶିମିଳିପାଳ ବ୍ୟାଘ୍ର ସଂରକ୍ଷଣ, ଫୋ– ୫୨୫୯୩ (ଅଫିସ୍) ୬୦୭୭୩(ଆବାସ) ଫାକ୍ସ–୦୬୭୯୨–୫୬୭୦୫ ଡିଏଫ୍‌ଓ– ୫୧୬୧୩(ଅଫିସ୍) ୫୨୫୩୨(ଆବାସ) ଯଶିପୁର: ଏସିଏଫ୍(ବନ୍ୟଜନ୍ତୁ) ଫୋନ ନଂ– ୫୨୨୪୦ |
| ୨ | ଭିତରକନିକା | କେନ୍ଦ୍ରାପଡା | ୧୪୫.୦୦ | ଅଭୟାରଣ୍ୟ ମଧ୍ୟରେ ବର୍ଷବ୍ୟାପୀ ବିଚରଣ ସୁଯୋଗ (ଜଳପଥ ଜରିଆରେ) | ରାଜନଗର: ଡିଏଫ୍‌ଓ: ହେନ୍ତାଳବଣ ଡିଭିଜନ(ବନ୍ୟଜନ୍ତୁ) ରାଜନଗର ଫାକ୍ସ/ଫୋ–୦୬୭୨୯–୭୨୪୬୦ (ଅଫିସ) ୭୨୪୬୪(ଆବାସ) ଚାନ୍ଦବାଲି:ଏସିଏଫ୍(ବନ୍ୟଜନ୍ତୁ) ଫୋନ–୦୬୭୮୬–୨୦୦୭୨ |

**ଅଭୟାରଣ୍ୟ**

| | | | | | |
|---|---|---|---|---|---|
| ୧ | ଭିତରକନିକା | କେନ୍ଦ୍ରାପଡା | ୬୭୨.୦୦ | ଭିତରକନିକା ଜାତୀୟ ଉଦ୍ୟାନ ପାଇଁ ଉପଯୁକ୍ତ ସମୟ ଯାହା, ଠିକ୍ ସେହି ସମୟ ସହିତ ସମାନ | ଭିତରକନିକା ଜାତୀୟ ଉଦ୍ୟାନ ଯୋଗାଯୋଗ ସହିତ ସମାନ |
| ୨ | ଶିମିଳିପାଳ | ମୟୂରଭଞ୍ଜ | ୨୨୦୦.୦୦ | କୋର–୮୪୫.୭୦ ବଫର୍: ୧୯୨୪.୩୦ | ଶିମିଳିପାଳ ଜାତୀୟ ଉଦ୍ୟାନ ସହିତ ସମାନ |
| ୩ | ସାତକୋଶିଆ | ଅନୁଗୁଳ/ ବୌଦ୍ଧ/ (କଟକ/ନୟାଗଡ଼) | ୭୯୫.୫୨ | ସାରାବର୍ଷ | ଅନୁଗୁଳ ଡିଏଫ୍‌ଓ (ବନ୍ୟଜନ୍ତୁ) ସାତକୋଶିଆ ଫୋନ– ୦୬୭୬୨–୩୦୨୧୮(ଅଫିସ୍) ୩୦୨୧୯(ଆବାସ) |
| ୪ | ହଦଗଡ | କେନ୍ଦୁଝର | ୧୯୧.୦୬ | ଅକ୍ଟୋବର–ମାର୍ଚ୍ଚ | କେନ୍ଦୁଝର ଡିଏଫ୍‌ଓ ଫୋନ୍– ୦୬୭୬୬–୫୪୩୧୫(ଅଫିସ୍) ୫୫୩୧୫(ଆବାସ) |
| ୫ | ନନ୍ଦନକାନନ | ଖୋର୍ଦ୍ଧା | ୪.୪୦ | ସାରାବର୍ଷ | ନିର୍ଦ୍ଦେଶକ, ନନ୍ଦନକାନନ ଜୀବଉଦ୍ୟାନ ଫୋନ୍– ୫୧୫୮୪୦(ଅଫିସ୍) ୪୩୬୫୭୩(ଆବାସ ) |
| ୬ | ବାଇଶିପଲ୍ଲି | ନୟାଗଡ଼ | ୧୬୮.୩୫ | ଅକ୍ଟୋବର–ମାର୍ଚ୍ଚ | ନୟାଗଡ଼, ଡିଏଫ୍‌ଓ(କ୍ଷେତ୍ର) ଫୋନ୍– ୦୬୭୫୩– ୫୨୨୨୬ (ଅଫିସ୍) ୫୨୨୨୭ (ଆବାସ) |
| ୭ | କୋଟଗଡ଼ | କନ୍ଧମାଳ | ୩୯୯.୦୫ | ଅକ୍ଟୋବର–ମାର୍ଚ୍ଚ | ଫୁଲବାଣୀ, ଡିଏଫ୍‌ଓ, ବାଲିଗୁଡା, ଫୋନ–୦୬୮୪୬ –୪୩୨୪୯ (ଅଫିସ୍) ୪୩୨୩୯ (ଆବାସ) |
| ୮ | ଚନ୍ଦକା–ଡମପଡା | ଖୋର୍ଦ୍ଧା/କଟକ | ୧୭୫.୭୯ | ସାରାବର୍ଷ | ଭୁବନେଶ୍ୱର, ଡିଏଫ୍‌ଓ ଚନ୍ଦକା(ବନ୍ୟଜନ୍ତୁ) ଫୋନ୍–୪୭୨୦୪୦(ଅଫିସ୍) ୪୪୦୧୬୮(ଆବାସ) |

| | | | | | |
|---|---|---|---|---|---|
| ୯ | ଖଲାଶୁଣି | ସମ୍ବଲପୁର | ୧୧୬.୦୦ | ଅକ୍ଟୋବର–ମାର୍ଚ୍ଚ | ରେଢାଖୋଲ, ଡିଏଫ୍ଓ(କ୍ଷେତ୍ର) ଫୋନ୍–୦୬୬୪୪–୫୩୦୦୪ (ଅଫିସ୍)୫୩୦୦୫(ଆବାସ) |
| ୧୦ | ବାଲୁଖଣ୍ଡ–କୋଣାର୍କ | ପୁରୀ | ୭୧.୭୨ | ଅକ୍ଟୋବର–ମାର୍ଚ୍ଚ | ଖୋର୍ଦ୍ଧା, ଡିଏଫ୍ଓ, ପୁରୀ(କ୍ଷେତ୍ର) ଫୋନ୍–୦୬୭୫୫–୨୦୫୩୯(ଅଫିସ୍)ଫ୍ୟାକ୍ସ/ଫୋ ୨୦୫୪୦(ଆବାସ) |
| ୧୧ | କୁଳଡିହ | ବାଲେଶ୍ୱର | ୨୭୨.୭୫ | ଅକ୍ଟୋବର–ମାର୍ଚ୍ଚ | ବାରିପଦା, ଡିଏଫ୍ଓ(କ୍ଷେତ୍ର) ଫୋନ୍ – ୫୨୬୧୩(ଅଫିସ୍) ୫୨୫୩୨(ଆବାସ) |
| ୧୨ | ଦେବ୍ରିଗଡ଼ | ବରଗଡ଼ | ୩୪୬.୯୧ | ଅକ୍ଟୋବର–ମାର୍ଚ୍ଚ | ସମ୍ବଲପୁର, ଡିଏଫ୍ଓ ବଡ଼ରମା(ବନ୍ୟଜନ୍ତୁ) ଫୋନ୍–୦୬୬୩–୪୦୨୭୪୧ (ଅଫିସ୍) ୪୦୨୭୨୯ (ଆବାସ) |
| ୧୩ | ଲଖାରି ଉପତ୍ୟକା | ଗଜପତି | ୧୮୫.୭୮ | ଅକ୍ଟୋବର–ମାର୍ଚ୍ଚ | ପାରଳାଖେମୁଣ୍ଡି, ଡିଏଫ୍ଓ(ଟି) ଫୋନ୍–୦୬୮୨୪–୨୨୨୧୪ (ଅଫିସ୍) ୨୨୨୦୪(ଆବାସ) |
| ୧୪ | ଚିଲିକା(ନଳବଣ) | ପୁରୀ | ୧୫.୫୩ | ଅକ୍ଟୋବର–ମେ | (ଜଳପଥରେ ଅଭୟାରଣ୍ୟ ପରିଦର୍ଶନ), ଭୁବନେଶ୍ୱର ଡିଏଫ୍ଓ, ଚିଲିକା(ବନ୍ୟଜନ୍ତୁ) ଫୋନ୍–୦୬୭୪–୪୭୦୧୪୯ (ଅଫିସ୍) କିମ୍ବା ବାଲୁଗାଁ (ଆର୍.ଓ) |
| ୧୫ | ବଡରମା | ସମ୍ବଲପୁର | ୩୦୪.୦୩ | ଅକ୍ଟୋବର–ମାର୍ଚ୍ଚ | ବାମରା, ଡିଏଫ୍ଓ(କ୍ଷେତ୍ର) ଫୋନ୍–୦୬୬୪୨–୭୯୨୧୧(ଅଫିସ୍) ୭୯୨୦୪(ଆବାସ) |

| | | | | | |
|---|---|---|---|---|---|
| ୧୬ | ସୁନାବେଡା | ନୂଆପଡା | ୫୦୦.୦୦ | ଅକ୍ଟୋବର–ଫେବୃୟାରୀ | ନୂଆପଡା, ଡିଏଫ୍ଓ(ବନ୍ୟଜନ୍ତୁ) ଫୋନ୍–୦୬୬୭୮– ୨୩୩୭୨ (ଅଫିସ୍) ୨୩୪୦୧ (ଆବାସ) |
| ୧୭ | କର୍ଲାପାଟ | କଳାହାଣ୍ଡି | ୧୪୭.୬୬ | ଅକ୍ଟୋବର–ଫେବୃୟାରୀ | ଭବାନୀପାଟଣା, ଡିଏଫ୍ଓ (କ୍ଷେତ୍ର) ଫାକ୍ସ/ଫୋନ୍–୦୬୬୭୦ ୩୦୫୨୬ (ଅଫିସ୍) ୩୨୬୨୬ (ଆବାସ) |
| ୧୮ | ଗହୀରମଥା(ସାମୁଦ୍ରିକ) | କେନ୍ଦ୍ରାପଡା | ୧୪୩୫.୦୦ | ଅକ୍ଟୋବର–ଫେବୃୟାରୀ | ଭିତରକନିକା ଜାତୀୟ ଉଦ୍ୟାନ ପାଇଁ ଯୋଗାଯୋଗ ସହିତ ସମାନ |





# ପଣ୍ଡିତ ନେହେରୁ – ମାନବବାଦୀ ରାଷ୍ଟ୍ରନୀତିଜ୍ଞ

ଡକ୍ଟର ସୌରୀବଂଧୁ କର

ବିଂଶ ଶତାବ୍ଦୀର ଯେଉଁ କେତେଜଣ ମହାନ୍ ରାଷ୍ଟ୍ରନୀତିଜ୍ଞମାନେ ବିଶ୍ୱ ପ୍ରେକ୍ଷାପଟରେ ପରିଦୃଶ୍ୟ ହୁଅନ୍ତି, ସେମାନଙ୍କ ମଧ୍ୟରୁ ଅନ୍ୟତମ ହେଉଛନ୍ତି ପଣ୍ଡିତ ଜବାହରଲାଲ ନେହେରୁ । ସେ କେବଳ ଭାରତୀୟ ଜାତୀୟ ମୁକ୍ତି ସଂଗ୍ରାମର କର୍ଣ୍ଣଧାର ନଥିଲେ, ବରଂ ଥିଲେ ଜଣେ ପ୍ରଚଣ୍ଡ ମାନବବାଦୀ । ଦାର୍ଶନିକ ନୀଷ୍ କହିଛନ୍ତି, ''ଯୁଗ ଯୁଗର ପ୍ରଜ୍ଞା କେବଳ ନୁହେଁ, ତା'ର ପାଗଳାମି ମଧ୍ୟ ମଣିଷ ଭିତରେ ଅବତରଣ କରିଥାଏ । ଉତ୍ତରାଧିକାରୀ ହେବା ବଡ଼ ବିପଜ୍ଜନକ ।'' ତେଣୁ ନେହେରୁ ନିଜକୁ ପ୍ରଶ୍ନ କରିଛନ୍ତି ସେ କାହାର ଉତ୍ତରାଧିକାରୀ ? ହଜାର ହଜାର ବର୍ଷଧରି ମାନବଜାତି ଯାହାସବୁ ସଫଳତା ହାସଲ କରିଛି, ଯାହା ଚିନ୍ତା କରିଛି ଓ ଅନୁଭବ କରିଛି, ଯେତେ ଦୁଃଖ ଭୋଗିଛି ଓ ଆନନ୍ଦ ପାଇଛି, ଯେତେ ଜୟରେ ଉଲ୍ଲସିତ ହୋଇଛି ଓ ପରାଜୟ ଗ୍ଲାନିରେ ବେଦନାହତ ହୋଇଛି, ସେହିସବୁ ଦୁଃସାହସିକତା ଓ ବିସ୍ମୟକର ଅନୁଭୂତି ଯାହା ମଣିଷ ଜାତି ପାଇଛି, ତା'ର ଉତ୍ତରାଧିକାରୀ ହୋଇଛନ୍ତି ନେହେରୁ । ତେଣୁ ସେ ନିଜେ କହିଛନ୍ତି, ''ମଣିଷର ବ୍ୟକ୍ତିଗତ ଜୀବନ, ତାହାର ଅନୁଭୂତି, ତା'ର ବିଚାର ଭିତରେ ଗୋଟିଏ ପ୍ରକାର ଅନ୍ତରଙ୍ଗ ଭାବ ରହିଥାଏ, ଯାହା ଅନ୍ୟକୁ ଜଣାଇବା ସମ୍ଭବ ହୁଏନି । ତଥାପି ବ୍ୟକ୍ତିଗତ ଓ ଅବୈକ୍ତିକ ସେସବୁ ସଂସର୍ଗର ବହୁତ କିଛି ଅର୍ଥ ଅଛି ଏବଂ ବ୍ୟକ୍ତି ଉପରେ ତା'ର ପ୍ରଭାବ ଜୀବନ ପ୍ରତି, ଦେଶ ପ୍ରତି ଓ ଅନ୍ୟାନ୍ୟ ଜାତି ପ୍ରତି ତା'ର ପ୍ରତିକ୍ରିୟାରେ ପରିବର୍ତ୍ତନ ଆଣିଦିଏ ।''

ନେହେରୁ ତାଙ୍କ ଜୀବଦ୍ଦଶାରେ ଏହି ଅନୁସନ୍ଧାନରେ ଲିପ୍ତ ରହିଥିଲେ । ସେ ବିଶ୍ୱ ସଂସ୍କୃତିର ମହାନ୍ ଦାର୍ଶନିକ ପରମ୍ପରା ଓ ଚିନ୍ତାନାୟକମାନଙ୍କ ମନରେ ଉଠିଥିବା ତିନିଗୋଟି ପ୍ରଶ୍ନକୁ ଖୋଜିଥିଲେ । ପ୍ରଥମ ହେଉଛି, ମୁଁ



କିଏ? ଦ୍ୱିତୀୟ ମୁଁ କେଉଁଠାରୁ ଆସିଛି ? ତୃତୀୟ ମୋର ଭାଗ୍ୟ ବା ଅଦୃଷ୍ଟ କ'ଣ ? ଏହି ଖୋଜିବା ମଧ୍ୟରେ ସେ ନିଜକୁ ଉତ୍ତରଣ କରି ପ୍ରଶ୍ନ କରିଥିଲେ, ଆମର ସମାଜ ଓ ଆମର ଦେଶ କେଉଁଆଡ଼େ ଯାଉଛି ? ଭାରତର ଭାଗ୍ୟ

ଓ ଭବିଷ୍ୟତ କ'ଣ ? ଏବଂ ଆମେ କିପରି ସମ୍ମାନ ଓ ମହାନତା ଲାଭ କରିପାରିବା ? ଏହିସବୁ ପ୍ରଶ୍ନର ଉତ୍ତର ଖୋଜିଥିଲେ ଗାନ୍ଧୀ, ନେହେରୁ, ସୁବ୍ରମଣ୍ୟମ୍ ଭାରତୀ ଓ ରବୀନ୍ଦ୍ରନାଥ ଟାଗୋର । ସେଇଥିପାଇଁ ସେମାନଙ୍କର ସାମ୍ପ୍ରତିକ ସମୟରେ ତାତ୍ପର୍ଯ୍ୟ ରହିଛି ।

ଗାନ୍ଧିଜୀ କହିଥିଲେ, ''ପୃଥିବୀର ଦୃଷ୍ଟି ଆଜି ରୋଷକଷାୟିତ ହେଇଥିଲେ ମଧ୍ୟ ଶକ୍ତ ଓ ନିର୍ମଳ ଆଖିରେ ଆମକୁ ତା'ର ମୁହଁକୁ ଚାହିଁବାକୁ ପଡ଼ିବ ।''

ନେହେରୁ ବିଶ୍ୱକୁ ସେହି ଦୃଷ୍ଟିରେ ଦେଖିଥିଲେ । ଗାନ୍ଧୀ ଓ ନେହେରୁଙ୍କ ମଧ୍ୟରେ ବିଚାରଗତ କ୍ଷେତ୍ରରେ ଥିଲା ଉତ୍ତମ ବୁଝାମଣା । ଉଭୟଙ୍କର ଜୀବନ, କାର୍ଯ୍ୟ ଓ ଚିନ୍ତା ମିଶିଯାଇଥିଲା ଏବଂ ଏହା ସୃଷ୍ଟି କରିଥିଲା ଆଦାନପ୍ରଦାନ ଓ ସଂହତିର ମାଧ୍ୟମ । ଗାନ୍ଧୀଙ୍କର ଦୃଷ୍ଟି ଥିଲା ନୈତିକ ଓ ଆଧ୍ୟାତ୍ମିକ ବିଶ୍ୱଚେତନା । ନେହେରୁଙ୍କ ଚିନ୍ତା ଥିଲା ତର୍କ ବୁଦ୍ଧି ସମ୍ପନ୍ନ ଏବଂ ବିଜ୍ଞାନଭିତ୍ତିକ ବିଶ୍ୱ ଦୃଷ୍ଟିଭଙ୍ଗୀ । କିନ୍ତୁ ଉଭୟ ଥିଲେ ସମଗ୍ର ବିଶ୍ୱ ମନ ଓ ଚେତନାର ସମଷ୍ଟି । ଏହା ସମର୍ପିତ ହୋଇଥିଲା ଜାତୀୟ ମୁକ୍ତି ସଂଗ୍ରାମ ପାଇଁ ଏବଂ ଏହା ମାଧ୍ୟମରେ ଦେଶର ନୂତନ ଅସ୍ତିତ୍ୱର ସନ୍ଧାନ ।

ଗାନ୍ଧୀ ଓ ନେହେରୁଙ୍କର ଆଧ୍ୟାତ୍ମିକତାର ଶ୍ରେଷ୍ଠ ପରିପ୍ରକାଶ ମାନବବାଦର ପ୍ରକାଶରେ ଦେଖିବାକୁ ମିଳେ । କାରଣ ମାନବବାଦର ସାରାଂଶ ହେଉଛି ସମାଜ କିପରି ପ୍ରେମାସ୍ପଦ ଢଙ୍ଗରେ ଓ କରୁଣାର ସହିତ ଘୃଣା ଓ ହିଂସାକୁ ପରିବର୍ତ୍ତନ କରେ । ଦୀର୍ଘ ୧୬ ବର୍ଷ କାଳ ପ୍ରଧାନମନ୍ତ୍ରୀ ରହିଥିବା ସମୟରେ ଜବାହରଲାଲ ନେହେରୁ ଯାହାକିଛି କରିଗଲେ ସେଥିରେ ଥିଲା ଉନ୍ମୁକ୍ତ ବିଚାର ନୀତି, ରାଷ୍ଟ୍ର ଶାସନରେ ଉତ୍ତରଦାୟିତ୍ୱ, ଗଣତନ୍ତ୍ରର ଅନୁଷ୍ଠାନଗୁଡ଼ିକ ପ୍ରତି ଐକାନ୍ତିକ ପ୍ରତିବଦ୍ଧତା । ଏହା ସମସ୍ତେ ଅନୁଭବ କରିପାରିଥିଲେ । ବୈଜ୍ଞାନିକଙ୍କଠାରୁ ଆରମ୍ଭ କରି ବ୍ୟୁରୋକ୍ରାଟ୍, ରାଜନୀତିଜ୍ଞ ଏବଂ ସାମ୍ବାଦିକ ସମସ୍ତେ ରାଷ୍ଟ୍ର ଗଠନର ଅଂଶ ହୋଇଥିଲେ । ସେ ଗଣତନ୍ତ୍ରକୁ ସଂକୁଚିତ କରିବାକୁ ବା କଣ୍ଠରୋଧ କରିବାକୁ ଚାହୁଁ ନ ଥିଲେ । ସେ ଆଧ୍ୟାତ୍ମିକତାକୁ ଧାର୍ମିକ ପରମ୍ପରାଗତ ବିଚାର ପର୍ଯ୍ୟାୟକୁ ପ୍ରଶ୍ରୟ ଦେଉନଥିଲେ ।

ନେହେରୁ ଭାରତର ସ୍ୱାଧୀନତା ଆନ୍ଦୋଳନ ସହିତ ଏସିଆ, ଆଫ୍ରିକା ଓ ଗଣତାନ୍ତ୍ରିକ ଶକ୍ତିମାନଙ୍କୁ ସବୁ ସ୍ଥାନରେ ଲୋକମାନଙ୍କ ସହିତ ଯୋଡ଼ିଥିଲେ । ନେହେରୁ କେବଳ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମ କରିନଥିଲେ ବରଂ ସାମ୍ରାଜ୍ୟବାଦ, ଏକ ବ୍ୟବସ୍ଥା ବିରୁଦ୍ଧରେ ଆର୍ଥିକ ସାମ୍ରାଜ୍ୟବାଦ ଯାହାକୁ ସେ ନାମକରଣ କରିଥିଲେ, ତାହା ବିରୁଦ୍ଧରେ ସଂଗ୍ରାମ କରିଥିଲେ । ତାଙ୍କ ମତରେ ଫାସିବାଦ ଓ ସାମ୍ରାଜ୍ୟବାଦ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ । ଯଦି ସାମ୍ରାଜ୍ୟବାଦ ସଂଗଠିତ ହୁଏ କିମ୍ବା ଫାସିବାଦ ବିଜୟ ଲାଭ କରେ, ତେବେ ଚାରିଆଡ଼େ ଅନ୍ଧକାର ରାଜତ୍ୱ କରିବ ଏବଂ ସ୍ୱାଧୀନତା ବା ଗଣତନ୍ତ୍ରର କୌଣସି ଆଶା ରହିବ ନାହିଁ । ସେ ସମାଜବାଦରେ ବିଶ୍ୱାସ କରୁଥିଲେ କାରଣ ସମାଜବାଦ ହିଁ ଏକମାତ୍ର ବିକଳ୍ପ ଯାହା ଦାରିଦ୍ର୍ୟ, ଅଜ୍ଞତା ଓ ପଛୁଆପଣକୁ ଭାରତରୁ ହଟାଇ ପାରିବ ।

ବର୍ତ୍ତମାନ ଆମକୁ ଯୁଗଧର୍ମକୁ ନେଇ ଚାଲିବାକୁ ହେବ । ଯୁଗଧର୍ମ ହେଉଛି ଆଜିର ମନୁଷ୍ୟ ପକ୍ଷରେ ବିଶ୍ୱ–ମାନବତା ହିଁ ଈଶ୍ୱର ଓ ଆଉ ତା'ର ଧର୍ମ ହେଉଛି ସମାଜସେବା । ତେଣୁ ସେ ଯେଉଁ ଆଦର୍ଶକୁ ଆମ ଆଗରେ ଥୋଇଦେଲେ ତାହା ହେଉଛି ମାନବବାଦ ଓ ବୈଜ୍ଞାନିକ ସ୍ୱଭାବ । ମାନବବାଦ ଓ ବୈଜ୍ଞାନିକ ସ୍ୱଭାବ ମଧ୍ୟରେ ସମନ୍ୱୟ ବୃଦ୍ଧି ପାଉଛି ଏବଂ ପରିଣାମରେ ଏକ ପ୍ରକାର ବୈଜ୍ଞାନିକ ମାନବବାଦ ଗଢ଼ିଉଠୁଛି । ପ୍ରଫେସର ଆଲବର୍ଟ ଆଇନ୍‌ଷ୍ଟାଇନ୍ କହିଥିଲେ, ''ଆମର ଏହି ବସ୍ତୁବାଦୀ ଯୁଗରେ ଜିଜ୍ଞାସୁ ବୈଜ୍ଞାନିକ ହିଁ ପ୍ରଗାଢ଼ ଭାବରେ ଧର୍ମପ୍ରାଣ ।'' ସ୍ୱାମୀ ବିବେକାନନ୍ଦ ଆଧୁନିକ ବିଜ୍ଞାନକୁ ପ୍ରକୃତ ଧାର୍ମିକତାର ଅଭିବ୍ୟକ୍ତି ବୋଲି ବିବେଚନା କରିଥିଲେ ।

ନେହେରୁ ତାଙ୍କର ସମସ୍ତ ଜୀବନ ଓ ସମସ୍ତ ଶକ୍ତି ମାନବଜାତିର ମୁକ୍ତି ପାଇଁ ସମର୍ପିତ କରିଗଲେ । ବାସ୍ତବରେ, ସେ ଥିଲେ ଯଶସ୍ୱୀ ମାନବବାଦୀ ରାଷ୍ଟ୍ରନୀତିଜ୍ଞ ।

ଗଜପତି ନଗର
ଭୁବନେଶ୍ୱର–୭୫୧୦୦୫

# ଭୁବନେଶ୍ୱରଃ ଦର୍ଶନୀୟ ତଥା ଆକର୍ଷଣୀୟ ସ୍ଥାନ

ବିକ୍ରମ ମହାରଣା

**ଲିଙ୍ଗରାଜ ମନ୍ଦିର**

୫୪ ମିଟର ଉଚ୍ଚତା ବିଶିଷ୍ଟ ଏକାଦଶ ଶତାବ୍ଦୀର କୀର୍ତ୍ତି, ଭାରତ ବର୍ଷର ପ୍ରମୁଖ ଶୈବପୀଠ ମଧ୍ୟରୁ ଅନ୍ୟତମ ।

**ଧଉଳିଗିରି**

ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀରେ ସଂଗଠିତ କଳିଙ୍ଗ ଯୁଦ୍ଧର ଯୁଦ୍ଧସ୍ଥଳୀ ଯାହା ସମ୍ରାଟ୍ ଅଶୋକଙ୍କୁ ଧର୍ମାଶୋକରେ ପରିବର୍ତ୍ତନ କରିଥିଲା । ଏଠାରେ ବିଂଶ ଶତାବ୍ଦୀର ୭୦ ଦଶକରେ ଏକ ବୌଦ୍ଧ ଶାନ୍ତିସ୍ତୂପ ନିର୍ମିତ ହୋଇଛି । ଏହି ସ୍ଥାନ ସମ୍ରାଟ ଅଶୋକଙ୍କ ଶିଳାଲିପି ଏବଂ ଧବଳେଶ୍ୱର ମନ୍ଦିର ପାଇଁ ମଧ୍ୟ ପ୍ରସିଦ୍ଧ ।

**ରାଜାରାଣୀ ମନ୍ଦିର**

ଏକାଦଶ ଶତାବ୍ଦୀର କୀର୍ତ୍ତି । ଏହାର କାରୁକାର୍ଯ୍ୟମୟ ସ୍ଥାପତ୍ୟ, ଅଙ୍ଗ ଶିଖର ଅର୍ଥାତ ଅନେକ ମନ୍ଦିରକୁ ନେଇ ସଂଯୋଜନା ହୋଇଥିବା ମନ୍ଦିର ନିର୍ମାଣଶୈଳୀ ପାଇଁ ପ୍ରସିଦ୍ଧ । ଏହା ଏକ ଶସ୍ୟକ୍ଷେତ୍ର ଉପରେ ସ୍ଥାପିତ ଏବଂ ଏହି ସମଗ୍ର କାରୁକାର୍ଯ୍ୟମୟ ମନ୍ଦିରରେ ମାଧୁର୍ଯ୍ୟ ଓ କମନୀୟତା ପ୍ରସ୍ଫୁଟିତ ହୋଇଛି ।

**ବ୍ରହ୍ମେଶ୍ୱର ମନ୍ଦିର**

ଏଠାରେ ଥିବା ପ୍ରତିଟି ମନ୍ଦିର ମାଧୁର୍ଯ୍ୟପୂର୍ଣ୍ଣ ସ୍ଥାପତ୍ୟରେ ପରିପୂର୍ଣ୍ଣ ଯେଉଁଥିରେ କି ଓଡ଼ିଆ ସ୍ଥାପତ୍ୟ ତଥା କଳାନୈପୁଣ୍ୟତା ପରିଲକ୍ଷିତ ହୋଇଥାଏ । ଏହା ଲିଙ୍ଗରାଜ ମନ୍ଦିରର ଏକ କ୍ଷୁଦ୍ର ପ୍ରତିରୂପ ଏବଂ ଏହା ସମସ୍ତଙ୍କ ପାଇଁ ଉନ୍ମୁକ୍ତ ଏପରିକି ବିଦେଶୀମାନଙ୍କ ପାଇଁ ମଧ୍ୟ ।

**ଖଣ୍ଡଗିରି–ଉଦୟଗିରି**

ପାଖାପାଖି ଥିବା ଏହି ଦୁଇଟି ପାହାଡ଼କୁ କୁମାରଗିରି ଓ କୁମାରୀଗିରି ମଧ୍ୟ କୁହାଯାଇଥାଏ । ଖ୍ରୀଷ୍ଟପୂର୍ବ ୧ମ ଏବଂ ୨ୟ ଶତାବ୍ଦୀରେ ସମ୍ରାଟ୍ ଖାରବେଳଙ୍କ ଦ୍ୱାରା ଜୈନଧର୍ମାବଲମ୍ବୀ ତପସ୍ୱୀଙ୍କ ପାଇଁ ନିର୍ମିତ ଅନେକଗୁଡ଼ିଏ ଗୁମ୍ଫା ଏଠାରେ ଦେଖିବାକୁ ମିଳେ । ଏଠାରେ ଥିବା ହାତୀଗୁମ୍ଫା ଶିଳାଲେଖରେ ଖାରବେଳଙ୍କ ୧୩ ବର୍ଷର ଅନୁଶାସନ ଲିପିବଦ୍ଧ ହୋଇ ରହିଛି ତାହା ଭାରତ ଇତିହାସର ଏକ ଅମୂଲ୍ୟ ସମ୍ଭାର ।

**ଚଉଷଠି ଯୋଗିନୀ**

ଏହା ଭୁବନେଶ୍ୱର ଉପକଣ୍ଠ ତଥା ସହରର ଦକ୍ଷିଣପୂର୍ବ ଦିଗରେ ୧୫ କି.ମି ଦୂରତାରେ ଅବସ୍ଥିତ ଗୋଟିଏ କ୍ଷୁଦ୍ର ଗୋଲାକାର ନବମ ଶତାବ୍ଦୀ ପ୍ରାରମ୍ଭର ଯୋଗିନୀ ମନ୍ଦିର । ଏହି ମନ୍ଦିରଟି ମୁକ୍ତାକାଶ ତଳେ ଅବସ୍ଥିତ ଏବଂ ଏହାର ସ୍ଥାପତ୍ୟ ଶୈଳୀ ଓଡ଼ିଶାର ପ୍ରମୁଖ ସ୍ଥାପତ୍ୟଠାରୁ ଭିନ୍ନ ଅଟେ ।

**ମୁକ୍ତେଶ୍ୱର ମନ୍ଦିର**

ଦଶମ ଶତାବ୍ଦୀର ଶିବ ମନ୍ଦିର । ଓଡ଼ିଶା ମନ୍ଦିର କଳା ସ୍ଥାପତ୍ୟର ଅମୂଲ୍ୟରତ୍ନ ଭାବେ ପରିଗଣିତ ।

### ଏକାମ୍ର ହାଟ

ସହରର ମଧ୍ୟଭାଗରେ ଅବସ୍ଥିତ । ଏଠାରେ ଓଡ଼ିଶାର ହସ୍ତଶିଳ୍ପ ଓ ବୟନ ସାମଗ୍ରୀ ଦେଖିବାକୁ ମିଳେ । ଏଠାରେ ବିବିଧ ପ୍ରକାର ସାମଗ୍ରୀ ଯଥା– ଟେରାକୋଟା, ପଟ୍ଟଚିତ୍ର, ଶିଙ୍ଗ ଖେଳନା, ଡୋକ୍ରା, ପ୍ରସ୍ତର ମୂର୍ତ୍ତି ଇତ୍ୟାଦି କାରିଗର ତଥା ଶିଳ୍ପୀମାନଙ୍କ ଦ୍ୱାରା ବିକ୍ରି କରାଯାଇଥାଏ ।

### ବି.ଡ଼ି.ଏ. ନିକୋ ପାର୍କ

୧୯୯୮ ମସିହାରେ ନିର୍ମିତ ସହରର ଏକ ମନୋରଞ୍ଜନ କେନ୍ଦ୍ର । ଏଠାରେ ନୌକାବିହାର ଏବଂ ଅନ୍ୟାନ୍ୟ ଆମୋଦଦାୟକ କ୍ରୀଡ଼ା ଉପକରଣ ରହିଛି । ଯୁବଗୋଷ୍ଠୀ ଓ ପିଲାମାନଙ୍କ ପାଇଁ ଏହା ଏକ ଆକର୍ଷଣୀୟ ସ୍ଥାନ । ଏହି ପାର୍କରେ ସନ୍ଧ୍ୟା ସମୟ ଅତିବାହିତ କରିବା ଏବଂ ବିବିଧ ଆମୋଦ ପ୍ରମୋଦ ପାଇଁ ଏକ ପ୍ରକୃଷ୍ଟ ସ୍ଥାନ ।

### ଆଞ୍ଚଳିକ ଉଦ୍ଭିଦ ଗବେଷଣା କେନ୍ଦ୍ର (ଏକାମ୍ର କାନନ)

୫୦୦ ଏକର ପରିମିତ ସ୍ଥାନ ଉପରେ ଏହି ଗବେଷଣା କେନ୍ଦ୍ର ଗଢ଼ି ଉଠିଛି । ଏଠାରେ ଏସିଆ ମହାଦେଶର ବୃହତ କ୍ୟାକଟସ୍ ପାର୍କ ଅଛି । ମନମୁଗ୍ଧକାରୀ କ୍ୟାକ୍ଟସ୍, ଗୋଲାପ ଏବଂ ଅନ୍ୟାନ୍ୟ ବିରଳ ଉଦ୍ଭିଦ ଏହି କେନ୍ଦ୍ରରେ ଦେଖିବାକୁ ମିଳିଥାଏ । ଏହା ଉଦ୍ଭିଦପ୍ରେମୀ, ପ୍ରକୃତିପ୍ରେମୀ ଏବଂ ଗବେଷକମାନଙ୍କ ନିମନ୍ତେ ଏକ ପ୍ରକୃଷ୍ଟ ସ୍ଥାନ ।

### ଆଞ୍ଚଳିକ ବିଜ୍ଞାନ କେନ୍ଦ୍ର

ବିଂଶ ଶତାବ୍ଦୀର ଅଶୀ ଦଶକ ଶେଷ ଭାଗରେ ନିର୍ମିତ ଏହି ପାର୍କରେ ବିଭିନ୍ନ ବିଜ୍ଞାନ ଉପକରଣ ଏବଂ ମଡ଼େଲ ରହିଛି । ପିଲାମାନେ ଆମୋଦ ପ୍ରମୋଦ ମଧ୍ୟରୁ ବିଜ୍ଞାନ ବିଷୟରେ ଏଠାରେ ଶିକ୍ଷାଲାଭ କରିବେ । ଏଠାରେ ପିଲାମାନଙ୍କ ପାଇଁ ଏକ କ୍ରୀଡ଼ା କର୍ଣ୍ଣର ଏବଂ ପ୍ରାଗ୍ ଐତିହାସିକ ବିଷୟ ସମ୍ବଳିତ ଏକ ପାର୍କ ରହିଛି ।

### ଇନ୍ଦିରା ଗାନ୍ଧୀ ପାର୍କ

ଏହି ପାର୍କଟି ୧୯୮୦ ଦଶକରେ ସ୍ୱର୍ଗତ ଇନ୍ଦିରାଗାନ୍ଧୀଙ୍କ ସ୍ମୃତିସ୍ୱରୂପ ସ୍ଥାପିତ ହୋଇଛି । ଏହି ସ୍ଥାନରେ ସେ ତାଙ୍କର ଶେଷ ଭାଷଣ ପ୍ରଦାନ କରିଥିଲେ । ବ୍ୟସ୍ତ ବହୁଳ ସହରୀ ଜୀବନରୁ ସମୟ ବାହାର କରି ଏଠାକୁ ଆସିଲେ ଏହାର ସବୁଜିମା ମନ ମଧ୍ୟରେ ଶାନ୍ତି ଆଣିଦେଇଥାଏ । ବିବିଧ ଫୁଲ, ଉଦ୍ଭିଦ, ସ୍ତୁପ, ଝରଣା ଏବଂ ଇନ୍ଦିରା ଗାନ୍ଧୀଙ୍କ ପ୍ରତିମୂର୍ତ୍ତିଏହି ପାର୍କର ମୁଖ୍ୟ ଆକର୍ଷଣ ।

### ବିଜୁ ପଟ୍ଟନାୟକ ପାର୍କ

ଭୁବନେଶ୍ୱର ୟୁନିଟ୍–୧ ସ୍ଥିତ ବିଜୁ ପଟ୍ଟନାୟକ ପାର୍କଟି ପୂର୍ବରୁ ଫରେଷ୍ଟ ପାର୍କ ଭାବେ ନାମିତ ହୋଇଥିଲା । ଏହି ପାର୍କଟି ୟୁନିଟ୍–୬ କ୍ୟାପିଟାଲ୍ ହସପିଟାଲ୍ ସମ୍ମୁଖରେ ଅବସ୍ଥିତ । ସହରର ମଧ୍ୟଭାଗରେ ବିସ୍ତୃତ ସବୁଜିମା ଏଠାରେ ଦେଖିବାକୁ ମିଳେ । ଏହି ପାର୍କଟି ନାଲ୍‌କୋ ଦ୍ୱାରା ବିକଶିତ ହୋଇଛି ଏବଂ ଏହାର ରକ୍ଷଣାବେକ୍ଷଣ ଦାୟିତ୍ୱ ଭୁବନେଶ୍ୱର ମହାନଗର ନିଗମ ତୁଲାଉଛି । ବରିଷ୍ଠ ନାଗରିକ, ଜନସାଧାରଣ ଏବଂ ପିଲାମାନେ ଏଠାକୁ ପ୍ରାତଃ ଭ୍ରମଣ ଏବଂ ସାନ୍ଧ୍ୟ ଆମୋଦପ୍ରମୋଦ ପାଇଁ ପ୍ରାୟତଃ ଆସିଥାନ୍ତି । ଏହି ପାର୍କର ମଧ୍ୟସ୍ଥଳୀରେ ବିଜୁ ପଟ୍ଟନାୟକଙ୍କ ଏକ ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି ସ୍ଥାପିତ ହୋଇଛି । ଏହି ପାର୍କରେ ପ୍ରବେଶ ପାଇଁ କୌଣସି ଦେୟ ଦେବାକୁ ପଡ଼େନାହିଁ ।

### ପଠାଣି ସାମନ୍ତ ପ୍ଲାନେଟୋରିୟମ

ଏହି ପ୍ଲାନେଟୋରିୟମ୍‌ଟି ପ୍ରସିଦ୍ଧ ଓଡ଼ିଆ ଜ୍ୟୋର୍ତିବିଦ୍ ଏବଂ ଗଣିତଜ୍ଞ ପଠାଣୀ ସାମନ୍ତଙ୍କ ଅବଦାନର ସ୍ମାରକୀ ସଦୃଶ୍ୟ ୧୯୯୦ ମସିହାରେ ନିର୍ମିତ ହୋଇଛି । ମହାକାଶ ବିଜ୍ଞାନ ସମ୍ବନ୍ଧିତ ଶ୍ରାବ୍ୟ–ଦୃଶ୍ୟ ପ୍ରଦର୍ଶନ ଏହାର ମୁଖ୍ୟ ଆକର୍ଷଣ ।

### ନନ୍ଦନକାନନ

ଭୁବନେଶ୍ୱରଠାରୁ ୧୮ କ.ମି. ଦୂରରେ ଅବସ୍ଥିତ ୪୭୨ ହେକ୍ଟର ପରିମିତ ଏହି ପ୍ରାଣୀ ଉଦ୍ୟାନଟି ୧୯୬୦

ମସିହା ଡିସେମ୍ବର ମାସ ୨୯ ତାରିଖରେ ପ୍ରତିଷ୍ଠା ହୋଇଛି । ଏଠାରେ ଏକ ମନୋଲୋଭା ଉଦ୍ଭିଦ ଉଦ୍ୟାନ ସହିତ ଏକ ପ୍ରାଣୀ ଉଦ୍ୟାନ ମଧ୍ୟ ରହିଛି । ଏହି ପ୍ରାଣୀ ଉଦ୍ୟାନରେ ଧଳାବାଘ, ସିଂହ ସଫାରୀ, ରାତ୍ରିଚର ପ୍ରାଣୀ ଗୃହ, ସରୀସୃପ ଉଦ୍ୟାନ, କେବୁଲ କାର୍ ଏବଂ ନୌକାବିହାର ସୁବିଧା ସହ ଏକ ବିସ୍ତୀର୍ଣ୍ଣ ହ୍ରଦ ରହିଛି ।

### ଜୟଦେବ–କେନ୍ଦୁବିଲ୍ୱ

ଏହା ଭୁବନେଶ୍ୱରରୁ ୨୫ କି.ମି ଦୂରରେ ଅବସ୍ଥିତ । ଏହା ଦ୍ୱାଦଶ ଶତାବ୍ଦୀର ଭକ୍ତ କବି ଜୟଦେବଙ୍କର ଜନ୍ମସ୍ଥାନ । 'ଗୀତ ଗୋବିନ୍ଦ'ରେ ଦର୍ଶାଯାଇଥିବା ୧୨ଟି ପଦ ଏବଂ ଏଠାରେ ଥିବା ସଂଗ୍ରହାଳୟଟି ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିଥାଏ ।

### ଓଡ଼ିଶା ରାଜ୍ୟ ସଂଗ୍ରହାଳୟ

ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ୧୯୩୨ ମସିହାରେ ପ୍ରତିଷ୍ଠା ହୋଇ ପରବର୍ତ୍ତୀ କାଳରେ ୧୯୬୦ ମସିହାରୁ ବର୍ତ୍ତମାନର ସୌଧରେ କାର୍ଯ୍ୟକରି ଆସୁଛି । ଏହି ସଂଗ୍ରହାଳୟଟି ୧୧ଟି ଭାଗରେ ବିଭକ୍ତ ଯଥା:– ପ୍ରତ୍ନତତ୍ତ୍ୱ, ଶିଳାଲେଖ, ମୁଦ୍ରା ତତ୍ତ୍ୱ, ଅସ୍ତ୍ରାଗାର, ଖଣିଜ ଓ ଭୂତତ୍ତ୍ୱ, ପ୍ରାକୃତିକ ଇତିହାସ, କଳା ଓ ସ୍ଥାପତ୍ୟ, ସମକାଳୀନ ଚିତ୍ରକଳା, ପଟ୍ଟଚିତ୍ର, ନୃତତ୍ତ୍ୱ ଏବଂ ତାଳପତ୍ର ପୋଥି । ଏହି ସଂଗ୍ରହାଳୟଟି ଜଣେ ଅଧୀକ୍ଷକଙ୍କ ଦ୍ୱାରା ପରିଚାଳିତ ଏବଂ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ପ୍ରଶାସନ ଅଧୀନରେ ରହିଛି ।

### ଜନଜାତି ସଂଗ୍ରହାଳୟ

ଭୁବନେଶ୍ୱରସ୍ଥିତ ସି.ଆର.ପି. ଛକ ନିକଟରେ ଥିବା ଅନୁସୂଚିତ ଜାତି ଓ ଜନଜାତି ଗବେଷଣା ଓ ତାଲିମ୍ ପ୍ରତିଷ୍ଠାନ ପରିସରରେ ଅବସ୍ଥିତ ଏହି ସଂଗ୍ରହାଳୟ ଯଦିଓ ମୂଳତଃ ୧୯୮୭ ମସିହାରେ ପରିକଳ୍ପିତ ହୋଇଥିଲା, କିନ୍ତୁ ୨୦୦୧ ମସିହା ମାର୍ଚ୍ଚ ୫ ତାରିଖରେ ଏହା ପୂର୍ଣ୍ଣାଙ୍ଗ ଭାବେ କାର୍ଯ୍ୟକ୍ଷମ ହେଲା । ଆଜିକାଲି ସ୍ୱଦେଶୀ ଯନ୍ତ୍ରପାତି,




କାରିଗରୀ, ଅସ୍ତ୍ରଶସ୍ତ୍ର, ବେତବୁଣା ଦ୍ରବ୍ୟ, ମାଟିଆରି ପାତ୍ର, ବସ୍ତ୍ର, ପୋଷାକ, ଅଳଙ୍କାର ଓ ଗ୍ରାମୀଣ ସାମଗ୍ରୀ ନୂତନ ପିଢିଙ୍କ ପାଇଁ ଅର୍ଥହୀନ ହୋଇପଡିଛି । ଏହି ସଂଗ୍ରହାଳୟରେ ବିଭିନ୍ନ ପ୍ରକାରର ପୋଷାକ ଓ ଅଳଙ୍କାର, ଢୋକ୍ରା ସାମଗ୍ରୀ, ନୃତ୍ୟ ଓ ସଂଗୀତରେ ବ୍ୟବହୃତ ଜିନିଷ, ଶିକାରରେ ବ୍ୟବହୃତ ଅସ୍ତ୍ର, ମାଛ ଧରିବା ଜାଲ, ପ୍ରତିରୋଧ କରିବା ଅସ୍ତ୍ରଶସ୍ତ୍ର, ଘରକରଣା ସାମଗ୍ରୀ, ଚିତ୍ରକଳା ଓ ଫଟୋଚିତ୍ର ଇତ୍ୟାଦି ପ୍ରଦର୍ଶିତ ହୋଇଥାଏ ।



# ଶ୍ରୀମନ୍ଦିରର ରତ୍ନ ଭଣ୍ଡାର

**ଡକ୍ଟର ଭାସ୍କର ମିଶ୍ର**

ଭାରତବର୍ଷର ସୁପ୍ରସିଦ୍ଧ ଚାରିଧାମ ମଧ୍ୟରେ ଅନ୍ୟତମ ଶ୍ରୀପୁରୁଷୋତ୍ତମ ଧାମ ବା ଶ୍ରୀକ୍ଷେତ୍ର ଏବଂ ତତ୍ର ପ୍ରତିଷ୍ଠିତ ଶ୍ରୀଜଗନ୍ନାଥ ମନ୍ଦିର ସମଗ୍ର ବିଶ୍ୱର ଆଧ୍ୟାତ୍ମିକ ତଥା ସାଂସ୍କୃତିକ ପରମ୍ପରା ଦୃଷ୍ଟିରୁ ଅନନ୍ୟ । ପ୍ରାଚୀନ ସମୟରୁ ପୁରୁଷୋତ୍ତମ କ୍ଷେତ୍ର ଓ ଉତ୍କଳର ଆରାଧ୍ୟ ଦେବତା ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ମହିମା ସଂପର୍କରେ ଅନେକ ପୁରାଣ, ଆଧ୍ୟାତ୍ମିକ ଗ୍ରନ୍ଥ, ଶିଳାଲେଖ, ତାମ୍ରପଟା, ପ୍ରାଚୀନ ତାଳପତ୍ର ପୋଥି ଇତ୍ୟାଦିରେ ସବିଶେଷ ଉଲ୍ଲେଖ ହୋଇଥିବା ଜଣାଯାଏ । ପରମ ପବିତ୍ର ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଦାରୁବ୍ରହ୍ମରୂପୀ ଚତୁର୍ଦ୍ଧା ବିଗ୍ରହଙ୍କ ଆବିର୍ଭାବ ଓ ଉପାସନା ହେବା ଦିନଠାରୁ ପ୍ରାଚୀନ ଉଡ୍ର, କଳିଙ୍ଗ, ଉତ୍କଳ ପ୍ରଦେଶର ଶାସନ ମୁଖ୍ୟମାନେ ଏହି ପରଂବ୍ରହ୍ମରୂପୀ ଶ୍ରୀବିଗ୍ରହମାନଙ୍କ ସେବାପୂଜା, ପରିଚାଳନା ସର୍ବୋପରି ଯାନିଯାତ୍ରା ସହ ପ୍ରତ୍ୟକ୍ଷ ଭାବେ ଜଡ଼ିତ ହୋଇଥିବାର ପ୍ରମାଣ ମିଳେ । ବିଶେଷକରି ଅଭିଲେଖ, ତାମ୍ରପଟା, ମାଦଳାପାଞ୍ଜି ଓ ଅନ୍ୟାନ୍ୟ ଐତିହାସିକ ଉପାଦାନ ସୂତ୍ରରୁ ଜଣାଯାଏ ଯେ, ଅତୀତରେ ସୋମବଂଶୀ, ଗଙ୍ଗବଂଶ ନରପତିମାନଙ୍କଠାରୁ ଆରମ୍ଭ କରି ସୂର୍ଯ୍ୟବଂଶୀ ମହାରାଜା କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଦେବ, ପ୍ରତାପରୁଦ୍ର ଦେବ, ଭୋଇ ବଂଶର ପ୍ରତିଷ୍ଠାତା ଗଜପତି ମହାରାଜା ରାମଚନ୍ଦ୍ର ଦେବ (ପ୍ରଥମ) ପ୍ରମୁଖ



ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ବିପୁଳ ପରିମାଣର ଧନରତ୍ନାଦି ଶ୍ରୀମନ୍ଦିର ଭଣ୍ଡାରକୁ ଦାନ କରିଥିଲେ । ଏପରିକି ଭାରତବର୍ଷର ବିଭିନ୍ନ ଅଞ୍ଚଳର ରାଜା, ମହାରାଜା, ଜମିଦାର, ନେପାଳର ନରେଶ ଓ ତାଙ୍କ ରାଜପାର୍ଷଦବର୍ଗ ଅତୀତରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ବହୁ ପରିମାଣର ସ୍ୱର୍ଣ୍ଣ, ରୌପ୍ୟ, ବିଭିନ୍ନ ଦୁର୍ମୂଲ୍ୟ ରତ୍ନ ପଥର, କସ୍ତୁରୀ ଓ ଦୁର୍ଲ୍ଲଭ ଶାଳଗ୍ରାମ (ବିଷ୍ଣୁଶିଳା) ଇତ୍ୟାଦି ଅର୍ପଣ କରିଥିବାର

ପ୍ରମାଣ ରହିଅଛି । ବିଶେଷକରି ଦୁର୍ଲ୍ଲଭ ରତ୍ନ ପଥର ମଧ୍ୟରେ ବିଭିନ୍ନ ପ୍ରକାରର ମୂଲ୍ୟବାନ ହୀରା, ନୀଳା, ମୋତି, ମାଣିକ୍ୟ, ପୋଖରାଜ, ପ୍ରବାଳ, ମୁକ୍ତା ଇତ୍ୟାଦି ଅନ୍ୟତମ ଥିଲା । ସୁତରାଂ ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀ ବେଳକୁ ଶ୍ରୀମନ୍ଦିର ରତ୍ନଭଣ୍ଡାର ବହୁ ସ୍ୱର୍ଣ୍ଣ, ରତ୍ନାଦିରେ ସମୃଦ୍ଧ ହୋଇପାରିଥିଲା ।

ପୂର୍ଣ୍ଣଚନ୍ଦ୍ର ଭାଷାକୋଷରେ ରତ୍ନଭଣ୍ଡାର ଘର ସମ୍ବନ୍ଧରେ ଥିବା ବର୍ଣ୍ଣନା ପ୍ରକାରେ ଭଣ୍ଡାର ଅର୍ଥ ଧନ ସଞ୍ଚୟ ସ୍ଥାନ । କୌଣସି ଦ୍ରବ୍ୟ ବହୁ ପରିମାଣରେ ସଞ୍ଚିତ ହେବାର ଆକାର । ଭଣ୍ଡାର ଘର – ଯେଉଁ ଘରେ ଧନ ଗଚ୍ଛିତ ରହେ, ଯେଉଁ ଘରେ ନାନା ଦ୍ରବ୍ୟ ସଞ୍ଚିତ ହୁଏ । ସୁତରାଂ ଭଣ୍ଡାର ଘରେ ବିଭିନ୍ନ ଧନ ରତ୍ନାଦି ସଞ୍ଚୟ ହେଲେ ତାହାକୁ 'ରତ୍ନ ଭଣ୍ଡାର' କୁହାଯାଏ ।

ରତ୍ନର ଉତ୍ପତ୍ତି ସମ୍ବନ୍ଧରେ ପୁରାଣରେ ଉଲ୍ଲେଖ ଅଛି ଯେ ବଳି ଅସୁରକୁ ଦେବତାମାନେ ବଧ କରିପାରିଲେ ନାହିଁ । ତେଣୁ ଦେବତାମାନେ ଛଳ ପୂର୍ବକ ଗୋଟିଏ ଯଜ୍ଞ ଆରମ୍ଭ କଲେ । ସେହି ଯଜ୍ଞ ପାଇଁ ତା' ନିକଟକୁ ଯାଇ ତାକୁ ସତ୍ୟ କରାଇ ତା' ନିଜ ଦେହକୁ ଯଜ୍ଞ ପଶୁ ରୂପେ ମାଗିଲେ । ସେ ତାହା ଦେଲା, ଇନ୍ଦ୍ର ତାହାର ମସ୍ତକରେ ବଜ୍ର ପାହାର କରିବାରୁ ବଜ୍ରାହତ ମସ୍ତକରେ ରତ୍ନକୁଟମାନ ସୃଷ୍ଟି ହେଲା । ଦେବତାମାନେ କୁଟମାନଙ୍କର ନାମ ବଜ୍ର ଦେଲେ । ଅତଏବ ରତ୍ନର ଅନ୍ୟନାମ ବଜ୍ର । ମତାନ୍ତରେ ବଳି ରାକ୍ଷସ ଆପଣାର ଦେହକୁ ଯଜ୍ଞୀୟ ପଶୁ ରୂପରେ ପ୍ରଦାନ କରି ଦେବତା ଓ ଜନଗଣର ହିତ ସାଧନ କରିବାରୁ ସେ ସ୍ୱର୍ଗାରୋହଣ କଲା ଓ ତାହାର ଦେହ ଓ ଅବୟାଦି ରତ୍ନରେ ପରିଣତ ହେଲା । ଦେବତାମାନେ ବିମାନରେ ତାହାର ଦେହକୁ ଆକାଶ ମାର୍ଗରେ ନେଇ ଯିବାବେଳେ ତାହାର ଦେହର ଖଣ୍ଡମାନ ଯେଉଁ ଯେଉଁଠାରେ ଭୂପତିତ ହେଲା, ସେହି ସେହି ସ୍ଥାନ ରତ୍ନର ଆକାର ହେଲା । ତାହାର ଅସ୍ଥି ପଡ଼ିବା ସ୍ଥାନରେ ହୀରକ, ଚର୍ମ ପଡ଼ିବା ସ୍ଥାନରେ ପୁଷ୍ପରାଗ, ପିତ୍ତ ପଡ଼ିବା ସ୍ଥାନରେ ନୀଳମଣି ଜାତ ହେଲା ।

ସାଧାରଣତଃ ରତ୍ନ ୩୬ ପ୍ରକାରର । ସେମାନଙ୍କ ମଧ୍ୟରୁ ନଅଗୋଟି ପ୍ରଧାନ ବା ମହାରତ୍ନ ଅଟେ । ରତ୍ନ ଅପେକ୍ଷା ସେହି ଶ୍ରେଣୀର ନିକୃଷ୍ଟ ପଦାର୍ଥମାନଙ୍କୁ ଉପରତ୍ନ ବୋଲାଯାଏ । (ଯଥା – କାଚମଣି, ସ୍ଫଟିକ ବା ମର୍ମର) ୩୬ ପ୍ରକାରର ରତ୍ନମାନଙ୍କର ନାମ ହେଲା– (୧) ବଜ୍ର (୨) ମରକତ (୩) ପଦ୍ମରାଗ (୪) ମୌକ୍ତିକ (୫) ଇନ୍ଦ୍ରନୀଳ (୬) ମହାନଳ, (୭) ବୈଦୂର୍ଯ୍ୟ (୮) ଚନ୍ଦ୍ରକାନ୍ତ (୯) ସୂର୍ଯ୍ୟକାନ୍ତ (୧୦) ସ୍ଫଟିକ (୧୧) ମହାନଳ (୧୨) କର୍କେତାନ (୧୩) ପୁଷ୍ପରାଗ (୧୪) ରାଜପଟ ବା ରାଜପର୍ଯ୍ୟଙ୍କ (୧୫) ରାଜମୟ (୧୬) ସୌଗନ୍ଧିକ (୧୭) ଗନ୍ଧ (୧୮) ଶଙ୍ଖ (୧୯) ବ୍ରହ୍ମମୟ (୨୦) ଗୋମେଦ (୨୧) ରୁଧିରାକ୍ଷ (୨୨) ଭଲ୍ଲାତକ ବା ଭଗ୍ନାତକ (୨୩) ଧୂଳୀ (୨୪) ତୁହ୍ବକ (୨୫) ସୀସ (୨୬) ପୀଲୁ (୨୭) ପ୍ରବାଳକ (୨୮) ଗିରିବଜ୍ର (୨୯) ଭୁଜଙ୍ଗମଣି (୩୦) ଚିଚ୍ଛିଭ (୩୧) ପିଣ୍ଡ (୩୨) ଭ୍ରାମର (୩୩) ଉତ୍ପଳ (୩୪) ଗନ୍ଧ ଶସ୍ୟକ (୩୫) ଜ୍ୟୋତିୟକ ଓ (୩୬) ଭାଗ୍ୟ ।

ମହାରତ୍ନ ନଅଗୋଟି, ଏମାନଙ୍କୁ ନବରତ୍ନ ବୋଲାଯାଏ । ତାହା ହେଲା (୧) ବଜ୍ର – ହୀରକ ବା ହୀରା (Diamond) (୨) ମୁକ୍ତା ବା ମୋତି (୩) ପ୍ରବାଳ ବା ପୋହୋଳା (Coral) (୪) ଗୋମେଦ ବା ହଳଦିଆ ରତ୍ନ (Yellow stone; onyx) (୫) ଇନ୍ଦ୍ରନୀଳ ବା ନୀଳା (sapphire; Blue Gem) (୬) ବୈଦୂର୍ଯ୍ୟ (cat's eye; Lapis Lazuli) (୭) ପୁଷ୍ପରାଗ ବା ପୋଖରାଜ, ପଦ୍ମରାଗ (Topaz) (୮) ପାଚି ବା ମରକତ, ପାନ୍ନା, ହରିଦ୍ବର୍ଣ୍ଣ (Emerald; Samaragdus) (୯) ମାଣିକ୍ୟ ବା ନାଲି ରତ୍ନ (Ruby; Rubinus) ।

ଶାସ୍ତ୍ରମାନଙ୍କରେ ରତ୍ନମାନ ମଙ୍ଗଳମୟ ଓ ଶୁଭକର ବୋଲି ବର୍ଣ୍ଣନା ହୋଇଛି । ରାଜାମାନେ ଜୟାର୍ଥ ରତ୍ନମାନଙ୍କୁ ସୁବର୍ଣ୍ଣ ମଣ୍ଡିତ କରି ଦେହରେ ଧାରଣ କରିବାର ଉପଦେଶ ଅଛି । ଗରୁଡ଼ ପୁରାଣରେ ରତ୍ନମାନଙ୍କର ଗୁଣ, ଜାତି,

ମୂଲ୍ୟ ଓ ପରୀକ୍ଷା ସମ୍ବନ୍ଧେ ବିସ୍ତୃତ ବିବରଣ ଉଲ୍ଲେଖ ଅଛି । ଏପରିକି ରତ୍ନ ଶବ୍ଦ ସହ କେତେକ ସାମଗ୍ରୀ ଓ ବସ୍ତୁ ଜଡ଼ିତ ହୋଇଛି । ଯଥା – ରତ୍ନଦୀପ, ରତ୍ନମାଳି, ରତ୍ନ ଅଳଙ୍କାର, ରତ୍ନବେଦୀ, ରତ୍ନ ମୁଦ୍ରିକା, ରତ୍ନ ଖଚିତ, ରତ୍ନ ଭଣ୍ଡାର । ଶାସ୍ତ୍ରର ବର୍ଣ୍ଣନା ପ୍ରକାରେ ସ୍ୱୟଂ ଭଗବାନ ବିଷ୍ଣୁ ଅଳଙ୍କାର ଓ ରତ୍ନ ପ୍ରିୟ ଅଟନ୍ତି ।

ଦାରୁବ୍ରହ୍ମରୂପୀ ଶ୍ରୀବିଗ୍ରହମାନଙ୍କୁ ମହାବିଷ୍ଣୁ ସ୍ୱରୂପରେ ଉପାସନା କରାଯାଉଥିବା ଦୃଷ୍ଟେ ବହୁ ପ୍ରାଚୀନ ସମୟରୁ ଶ୍ରୀମନ୍ଦିରରେ ମହାପ୍ରଭୁଙ୍କ ଦୈନନ୍ଦିନ ସେବାପୂଜା, ଯାନିଯାତ୍ରା ଓ ବେଶ ଇତ୍ୟାଦିରେ ବହୁ ପ୍ରକାରର ରତ୍ନ ଖଚିତ ଅଳଙ୍କାରମାନ ବ୍ୟବହୃତ ହୋଇ ଆସୁଅଛି । ହୀରା, ନୀଳା, ମୁକ୍ତା, ମାଣିକ୍ୟ, ମର୍କତ, ବୈଦୂର୍ଯ୍ୟ ଇତ୍ୟାଦି ମୂଲ୍ୟବାନ ରତ୍ନ ପଥର ସ୍ୱର୍ଣ୍ଣାଦି ଅଳଙ୍କାରରେ ଖଚିତ ହୋଇ ମହାପ୍ରଭୁଙ୍କ ବିଭିନ୍ନ ବେଶରେ ବ୍ୟବହୃତ ହେବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ସମୟରେ ଏହା ଶ୍ରୀମନ୍ଦିର ରତ୍ନ ଭଣ୍ଡାରରେ ଥିବା ସିନ୍ଧୁକମାନଙ୍କରେ ସୁରକ୍ଷିତ ଭାବେ ରଖାଯାଇଥାଏ ।

ଶ୍ରୀମନ୍ଦିର ସ୍ୱତ୍ତ୍ୱ ଲିପି ମୁତାବକ ଏହି ଦୁର୍ଲ୍ଲଭ ରତ୍ନ ଅଳଙ୍କାର ଜିନିଷମାନ ରତ୍ନଭଣ୍ଡାରର ବାହାର ଓ ଭିତର ଭଣ୍ଡାରରେ ରଖାଯାଇ ଆସୁଅଛି । ସାଧାରଣତଃ ଯେଉଁ ଅଳଙ୍କାର ଓ ରତ୍ନପଥରଗୁଡିକ ମହାପ୍ରଭୁଙ୍କ ବ୍ୟବହାରରେ ଲାଗୁନାହିଁ ଏବଂ ଭଗ୍ନ ଅବସ୍ଥାରେ ରହିଅଛି, ସେହିସବୁ ଭିତର ଭଣ୍ଡାରରେ ରଖାଯାଇଛି ।

ପୁରୀ ଜିଲ୍ଲା ଗେଜେଟିୟରରେ ଶ୍ରୀମନ୍ଦିରର ରତ୍ନ ଭଣ୍ଡାର ସମ୍ପର୍କରେ ଉଲ୍ଲେଖ ଅଛି ଯେ ହିନ୍ଦୁ ଧର୍ମାବଲମ୍ବୀ ରାଜା ଓ ଭାରତର ବହୁ ବଦାନ୍ୟ ଭକ୍ତମାନଙ୍କ ପ୍ରଦତ୍ତ ବିଭିନ୍ନ ଧନରତ୍ନ ଶ୍ରୀମନ୍ଦିର ରତ୍ନ ଭଣ୍ଡାରକୁ ସମୃଦ୍ଧ କରିଥିଲା । ସୋମବଂଶୀ ରାଜାମାନେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ବିଭିନ୍ନ ମନ୍ଦିରମାନ ନିର୍ମାଣ ପୂର୍ବକ ତହିଁରେ ସେବାପୂଜା, ଉତ୍ସବ ଇତ୍ୟାଦି ପାଳନ ନିମନ୍ତେ ସ୍ୱଳ୍ପ ପରିମାଣର ସ୍ୱର୍ଣ୍ଣ ଓ ଜମି ଖଞ୍ଜିଥିଲେ । ମାଦଳାପାଞ୍ଜିର ରାଜଭୋଗ ଇତିହାସରୁ ଜଣାଯାଏ ଯେ ଗଙ୍ଗ ବଂଶର ପ୍ରଖ୍ୟାତ ନରପତି ଅନଙ୍ଗଭୀମଦେବ ବିଭିନ୍ନ ରାଜ୍ୟ ଜୟ କରି ଓ ଅନ୍ୟାନ୍ୟ ସୂତ୍ରରୁ ମୋଟ୍ ୪୭ ଲକ୍ଷ ୮୮ ହଜାର ମାଢ଼ ସୁବର୍ଣ୍ଣ ରାଜକୋଷରେ ଜମା କରିଥିଲେ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ସ୍ୱର୍ଣ୍ଣ ଅଳଙ୍କାରାଦିର ନିର୍ମାଣ ନିମନ୍ତେ ତହିଁରୁ ସେ ଦୁଇଲକ୍ଷ ପଚାଶ ହଜାର ମାଢ଼ ସୁବର୍ଣ୍ଣ ଶ୍ରୀମନ୍ଦିରକୁ ପ୍ରଦାନ କରିବା ସମେତ ଦଶହଜାର ସବୁର୍ଣ୍ଣ ମୁଦ୍ରା ଶ୍ରୀମନ୍ଦିର ରତ୍ନ ଭଣ୍ଡାରକୁ ଦାନ କରିଥିଲେ । ସେହିପରି ରାଜରାଜ ଦେବ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ୨୩୭୭ ବାଟି ଭୂମି ଦାନ କରିବା ସମେତ ଶ୍ରୀଜଗନ୍ନାଥଙ୍କ ରତ୍ନ ଭଣ୍ଡାରକୁ ଦଶହଜାର ମାଢ଼ ସୁବର୍ଣ୍ଣ ଦାନ କରିଥିଲେ । ଏହାଙ୍କ ପୂର୍ବରୁ ଗଙ୍ଗ ବଂଶର ରାଜାମାନେ ବିପୁଳ ପରିମାଣର ଭୂମି ମହାପ୍ରଭୁଙ୍କ ସେବାପୂଜା ଓ ପରିଚାଳନା ନିମନ୍ତେ ଖଞ୍ଜି ଥିଲେ । ଏଥିରୁ ଜଣାଯାଏ ଯେ, ମୁଖ୍ୟତଃ ଗଙ୍ଗ ବଂଶର ପ୍ରଖ୍ୟାତ ନରପତି ଅନଙ୍ଗ ଭୀମ ଦେବଙ୍କଠାରୁ ହିଁ ଶ୍ରୀମନ୍ଦିର ରତ୍ନ ସିଂହାସନରେ ବିରାଜିତ ଚତୁର୍ଦ୍ଧା ବିଗ୍ରହମାନଙ୍କର ବିଭିନ୍ନ ବେଶ, ଉତ୍ସବାଦିମାନଙ୍କରେ ରତ୍ନ ଖଚିତ ବିଭିନ୍ନ ସୁବର୍ଣ୍ଣ ଅଳଙ୍କାରମାନ ବ୍ୟବହୃତ ହୋଇ ତାହା ରତ୍ନ ଭଣ୍ଡାରରେ ରଖା ଯାଉଥିଲା । ଏହି ବ୍ୟବସ୍ଥାର ଚରମ ସୀମା ସୂର୍ଯ୍ୟବଂଶର ପ୍ରତିଷ୍ଠାତା ଗଜପତି ମହାରାଜା କପିଳେନ୍ଦ୍ର ଦେବଙ୍କଠାରେ ହିଁ ଘଟିଥିଲା । ଉତ୍କଳର ଇଷ୍ଟ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କଠାରେ ଅଖଣ୍ଡ ଭକ୍ତି, ଶ୍ରଦ୍ଧା, ବିଶ୍ୱାସ ପୂର୍ବକ ତାଙ୍କରି ପାଦପଦ୍ମରେ ନିଜକୁ ସମର୍ପି ସେ ରାଉତ ରୂପେ ନିଜକୁ ଅଭିହିତ କରିଥିଲେ । ଏଥିସହିତ ବିପୁଳ ପରିମାଣରେ ଧନରତ୍ନ ଶ୍ରୀମନ୍ଦିର ରତ୍ନଭଣ୍ଡାରକୁ ଦାନ କରିଥିଲେ । ଶ୍ରୀମନ୍ଦିର ଜୟ ବିଜୟ ଦ୍ୱାରର ଏକ ଅଭିଲେଖରୁ ଜଣାଯାଏ ଯେ ଗଜପତି ମହାରାଜା କପିଳେନ୍ଦ୍ର ଦେବ ତାଙ୍କ ରାଜତ୍ୱର ୩୧ ଅଙ୍କରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରିବା ସମୟରେ ଦାକ୍ଷିଣାତ୍ୟ ରାଜ୍ୟ ଜୟ କରି ସଙ୍ଗରେ ଆଣିଥିବା ସମସ୍ତ ଧନରତ୍ନ ଶ୍ରୀମନ୍ଦିର ରତ୍ନ ଭଣ୍ଡାରକୁ ଦାନ କରିଥିଲେ । ଏହି ଧନରତ୍ନରେ କେତେକ ନୂତନ ରତ୍ନ ଅଳଙ୍କାର ସମେତ ନୀତି, ସେବାପୂଜା ନିମନ୍ତେ ସୁବର୍ଣ୍ଣ ଓ ରୌପ୍ୟର ଅନେକ ଉପଚାର ସାମଗ୍ରୀ, ବାସନ ଇତ୍ୟାଦି ନିର୍ମିତ କରିଥିଲେ । ସବୁ ରତ୍ନ ଭଣ୍ଡାରରେ ରଖାଯାଇଥିଲା । ଏପରିକି ତାଙ୍କ

ସମୟରେ କେତେକ ପାତ୍ର, ମନ୍ତ୍ରୀ ଓ ରାଜ ପାର୍ଷଦ ଉଚ୍ଚ ପଦାଧିକାରୀମାନେ ମଧ୍ୟ ସ୍ୱଇଚ୍ଛାରେ ଅନେକ ଧନରତ୍ନ ଶ୍ରୀମନ୍ଦିର ଜଗମୋହନରେ ଉପସ୍ଥିତ ହୋଇ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ଦାନ କରିଥିଲେ । କଥିତ ଅଛି ଯେ ୧୪୬୬ ଖ୍ରୀଷ୍ଟାବ୍ଦରେ ରାଜା କପିଳେନ୍ଦ୍ର ଦେବ ମା' ଜୟଦୁର୍ଗାଙ୍କ କୃପାରୁ ଦାକ୍ଷିଣାତ୍ୟ ବିଜୟ କରି ୧୬ ଗୋଟି ହସ୍ତୀ ପୃଷ୍ଠରେ ବିପୁଳ ପରିମାଣର ଧନରତ୍ନ ଲଦି ନିଜ ରାଜ୍ୟକୁ ଆଣି ଶ୍ରୀମନ୍ଦିରରେ ମହାପ୍ରଭୁମାନଙ୍କୁ ଉତ୍ସର୍ଗ କରିବା ସହିତ ବଡ ତଡ଼ଉକରଣ ସେବକଙ୍କ ଅନୁରୋଧକ୍ରମେ ସେହି ଧନରତ୍ନରେ ଠାକୁରମାନଙ୍କର ୧୩୮ ପ୍ରକାରର ନୂତନ ରତ୍ନଖଚିତ ସ୍ୱର୍ଣ୍ଣ ଅଳଙ୍କାରମାନ ଗଢ଼ାଇଥିଲେ । ଏପରିକି ତାଙ୍କ ସମୟରୁ ହିଁ ରଥ ଉପରେ ଠାକୁରମାନଙ୍କର ସୁନାବେଶ ବା ବଡ ତଡ଼ଉବେଶର ସୃଷ୍ଟି ହୋଇଥିଲା ବୋଲି ପ୍ରବାଦ ରହିଛି । ସେହିପରି ପୁରୁଷୋତ୍ତମ ଦେବ ଶ୍ରୀମନ୍ଦିରକୁ ବିଜେ ସମୟରେ ହାତୀ ଦନ୍ତ ରତ୍ନ ପଲଙ୍କ, ରତ୍ନ କଳସ, ସ୍ୱର୍ଣ୍ଣ ଗଡୁ, ରତ୍ନ ଛତି, ରତ୍ନ ଖଟ, ସୁନା ମାର୍ଜ୍ୟଣୀ ଓ ରତ୍ନ ବେଣ୍ଟ, ଚାମର ଦାନ କରିଥିଲେ ।

ଶ୍ରୀମନ୍ଦିର ପରମ୍ପରା ଅନୁସାରେ ଭାରତ ଓ ନେପାଳରୁ ଆସୁଥିବା ବିଭିନ୍ନ ରାଜା, ମହାରାଜା, ଜମିଦାର ଓ ବଦାନ୍ୟ ବ୍ୟକ୍ତିବିଶେଷମାନେ ମହାପ୍ରଭୁଙ୍କୁ ଦର୍ଶନ କରିବା ସମୟରେ ବିଭିନ୍ନ ପ୍ରକାର ସ୍ୱର୍ଣ୍ଣ, ରୌପ୍ୟ ଅଳଙ୍କାର, ମୁଦ୍ରା, ମୂଲ୍ୟବାନ ରତ୍ନ ପଥର, ପାଟ ବସ୍ତ୍ର ଇତ୍ୟାଦି ଦାନ କରୁଥିଲେ । ଏହିପରି ଭାବେ ୧୫୬୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଶ୍ରୀମନ୍ଦିର ରତ୍ନ ଭଣ୍ଡାର ଭାରତବର୍ଷର ଅନ୍ୟାନ୍ୟ ପ୍ରସିଦ୍ଧ ଦେବ ମନ୍ଦିରମାନଙ୍କ ରତ୍ନ ଭଣ୍ଡାର ସଦୃଶ ଧନରତ୍ନରେ ପରିପୂର୍ଣ୍ଣ ତଥା ସମୃଦ୍ଧି ଲାଭ କରିଥିଲା । ଏପରିକି ୧୮୯୩ ମସିହାରେ ବାବୁ ମନମୋହନ ଚକ୍ରବର୍ତ୍ତୀ ମତପ୍ରଦାନ କରିଥିଲେ ଯେ ୧୪୬୬ ଖ୍ରୀଷ୍ଟାବ୍ଦରେ କପିଳେନ୍ଦ୍ର ଦେବଙ୍କ ତତ୍ତ୍ୱାବଧାନରେ ନିର୍ମିତ ଅନେକ ଅଳଙ୍କାର ମଧ୍ୟରୁ ସେସମୟରେ କେତେକ ଅଳଙ୍କାର ମହାପ୍ରଭୁଙ୍କ ବ୍ୟବହାରରେ ବର୍ତ୍ତମାନ ମଧ୍ୟ ଲାଗୁଅଛି ।

ଭାରତ ପ୍ରସିଦ୍ଧ ଶ୍ରୀଜଗନ୍ନାଥ ମନ୍ଦିରର ରତ୍ନ ଭଣ୍ଡାର ପ୍ରତି ବିଦ୍ୱେଷ ମନୋଭାବ ରଖି ଶ୍ରୀମନ୍ଦିର ଓ ରତ୍ନ ଭଣ୍ଡାର ଉପରେ କେତେକ ଲୋମହର୍ଷଣକାରୀ ଆକ୍ରମଣ ଓ ଲୁଣ୍ଠନ ହୋଇଥିଲା କେତେକ ଐତିହାସିକ ୧୩୫୮ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀ ବାଦଶାହ ଫିରୋଜ ତୋଗଲକ୍ ଶ୍ରୀମନ୍ଦିର ଆକ୍ରମଣ ପୂର୍ବକ ଲୁଣ୍ଠନ କରିଥିଲେ ବୋଲି ମତ ଦିଅନ୍ତି । କିନ୍ତୁ ଶ୍ରୀମନ୍ଦିରରୁ ଲୁଣ୍ଠିତ ଧନରତ୍ନ ନେବାର ସଠିକ୍ ବିବରଣୀ ମିଳିପାରୁ ନାହିଁ । ୧୫୦୯ ଖ୍ରୀଷ୍ଟାବ୍ଦରେ ଇସମାଇଲ୍ ଗାଜିଙ୍କ ଶ୍ରୀମନ୍ଦିର ଆକ୍ରମଣରେ କେତେକ ଧନରତ୍ନ ଲୁଣ୍ଠନ ହୋଇ ବଙ୍ଗ ସୁଲତାନଙ୍କ ରାଜଉଆସକୁ ଚାଲିଯାଇଥିବା ଜଣାଯାଏ । କିନ୍ତୁ ୧୫୬୮ ଖ୍ରୀଷ୍ଟାବ୍ଦରେ ହୋଇଥିବା ଶ୍ରୀମନ୍ଦିର ଆକ୍ରମଣ ଓ ରତ୍ନ ଭଣ୍ଡାର ଲୁଣ୍ଠନ ଉଲ୍ଲେଖନୀୟ ଅଟେ । ଏହି ଲୁଣ୍ଠନ ପରିପ୍ରେକ୍ଷୀରେ ଜଣାଯାଏ ଯେ କଳାପାହାଡ ଶ୍ରୀମନ୍ଦିର ଭିତରେ ପ୍ରବେଶ କରି 'ବାଉନ କୋଟି ଭଣ୍ଡାର' ଲୁଣ୍ଠନ କରିଥିଲେ । ସେ ଆସିବା ପୂର୍ବରୁ ଶ୍ରୀବିଗ୍ରହମାନଙ୍କୁ ଶ୍ରୀମନ୍ଦିର ରତ୍ନ ସିଂହାସନରୁ ସ୍ଥାନାନ୍ତର କରାଯାଇ ଚିଲିକା ନିକଟସ୍ଥ ହସ୍ତୀପାଟଣା ଗ୍ରାମକୁ ନିଆଯାଇଥିଲା । ମୁସଲମାନ ଲେଖକଙ୍କ ମତରେ ଶ୍ରୀମନ୍ଦିରରେ ଥିବା ତିରିଶ ମହଣ ସୁନାରେ ତିଆରି ଏକ ପ୍ରତିମା ଥିଲା । ଏହି ପ୍ରତିମାର ଆଖି ଦୁଇଟି ହୀରା ଖଚିତ ଥିଲା । ସୁନାରେ ତିଆରି ସାତ ମହଣ ପ୍ରତିମା ମାନ ଏହି ମୂର୍ତ୍ତି ଚାରିପଟେ ରହିଥିଲା । କଳାପାହାଡ ନେତୃତ୍ୱରେ ଆସିଥିବା ସୈନ୍ୟମାନଙ୍କ ହାତରେ ଏହି ମୂର୍ତ୍ତିମାନ ପଡ଼ିଥିଲା । ପ୍ରତ୍ୟେକ ସୈନ୍ୟ ପ୍ରାୟ ମହଣେ ଓଜନର ସୁନା ପ୍ରତିମା ଧରି ଆସିଥିଲେ । ଏତଦ୍‌ବ୍ୟତୀତ ଶ୍ରୀମନ୍ଦିର ଭଣ୍ଡାରରୁ କେତେ ଯେ ଧନରତ୍ନ ଲୁଣ୍ଠନ ହୋଇଥିବ, ତା'ର ହିସାବ ନାହିଁ । ଏକ ଆକଳନରୁ ଜଣାଯାଏ ଯେ ସେତେବେଳେ ୩୭ ଜଣ ସୈନିକ ୩୭ ମହଣ ସୁନା ଶ୍ରୀମନ୍ଦିରରୁ ନେଇ ଯାଇଥିଲେ । (ତଥ୍ୟ ସୂତ୍ର : ଶ୍ରୀଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ , ପୃ ୧୮୩) । ଏହି ଲୁଣ୍ଠନ ଘଟଣା ସେତେବେଳେ ସମଗ୍ର ଭାରତବର୍ଷରେ ଚହଳ ପକାଇ ଦେଇଥିଲା । ଭୋଇ ବଂଶର ଅନ୍ୟତମ ଗଜପତି ମହାରାଜା ପୁରୁଷୋତ୍ତମ ଦେବଙ୍କ ରାଜତ୍ୱକାଳ ସମୟରେ ରାଜପୁତ ସେନାପତି କେଶୋ ଦାସ ପୁରୀ ଜଗନ୍ନାଥ ମନ୍ଦିର ଦର୍ଶନ କରିବା ଛଳନାରେ ବହୁ ଛଦ୍ମବେଶୀ ରାଜପୁତ ସୈନ୍ୟ ସହ ଅତର୍କିତ ଭାବରେ

ଶ୍ରୀମନ୍ଦିରରେ ପଶି ରତ୍ନଭଣ୍ଡାର ଲୁଟ୍ କରିଥିଲେ । ମିର୍ଜାନାଥନ୍ଙ୍କ ବିବରଣ ପ୍ରକାରେ ଏହି ଲୁଟ ୧୬୦୯-୧୦ ଖ୍ରୀଷ୍ଟାବ୍ଦରେ ଘଟିଥିଲା । 'ବହିରିସ୍ଥାନ-ଇ-ଘାଇବି' ନାମକ ମୋଗଲ ଯୁଗର ଇତିହାସ ଗ୍ରନ୍ଥରୁ ଜଣାଯାଏ ଯେ ସେସମୟରେ ଶ୍ରୀମନ୍ଦିର ରତ୍ନ ଭଣ୍ଡାରରୁ ଲୁଟ୍ ହୋଇଥିବା ଧନରତ୍ନାଦିର ମୂଲ୍ୟ ପ୍ରାୟ ତିନିକୋଟି ଟଙ୍କା ଥିଲା । ୧୬୪୭ ଖ୍ରୀଷ୍ଟାବ୍ଦ ଜୁନ ମାସ ୫ ତାରିଖ ଶନିବାର ଦିନ ଫତେ ଖାଁ ଭୋଇ ବଂଶର ଅନ୍ୟତମ ରାଜା ନରସିଂହ ଦେବଙ୍କୁ ପୁରୀ ବାଲିସାହିସ୍ଥିତ ଶ୍ରୀନଅର ମଧ୍ୟରେ ଅତି ଜଘନ୍ୟ ଭାବରେ ହତ୍ୟା କରିବା ସଙ୍ଗେ ସଙ୍ଗେ ଶ୍ରୀନଅର ଓ ଶ୍ରୀମନ୍ଦିର ଭଣ୍ଡାରରୁ ଧନରତ୍ନମାନ ଲୁଟ୍ କରିଥିଲା । ମାଦଳାପାଞ୍ଜିର ବିବରଣ ଅନୁଯାୟୀ ''ଏ ମହାରାଜାଙ୍କ ଅ୩୨ଙ୍କ ମିଥୁନ ୭ ଦିନ ରାତ୍ର ପାହିବାକୁ ନବାବ ମତମତି ଖାଁର ଅମରା ଫତେ ଖାଁ ଆସି ଶ୍ରୀପୁରୁଷୋତ୍ତମ ଦକ୍ଷିଣ ପାରୁଶ ନଅରେ ରାଜାଙ୍କ ଅନିରୁଦ୍ଧ ରାୟ ପିତାମହଙ୍କୁ ସାଙ୍ଗ କରି ରାଜା ଠାକୁରଙ୍କ ମୁଣ୍ଡ କାଟି ଦେଲା । ଶ୍ରୀନଅର ଦ୍ରବ୍ୟଯାକ ନେଲା । ପରମେଶ୍ୱରଙ୍କ ଭଣ୍ଡାର ସବୁ ନେଲା ।'' ଏହିପରି ୧୫୬୮ ଖ୍ରୀଷ୍ଟାବ୍ଦରୁ ୧୭୩୩ ଖ୍ରୀଷ୍ଟାବ୍ଦ ମଧ୍ୟରେ ଶ୍ରୀମନ୍ଦିର ଉପରେ ପ୍ରାୟ ୧୦ରୁ ଊର୍ଦ୍ଧ୍ୱ ଥର ଆକ୍ରମଣ ହୋଇ ରତ୍ନ ଭଣ୍ଡାରରୁ ପ୍ରଚୁର ଧନ, ରତ୍ନାଦି ସ୍ୱର୍ଣ୍ଣ ଅଳଙ୍କାର, ସ୍ୱର୍ଣ୍ଣ ପ୍ରତିମା ଆଦି ଲୁଣ୍ଠନ କରାଯାଇଥିଲା । ୧୫୬୮ ଖ୍ରୀଷ୍ଟାବ୍ଦରେ ହୋଇଥିବା ଲୁଣ୍ଠନ ଓ ବିଗ୍ରହଙ୍କୁ ନଷ୍ଟ କରି ଦିଆଯିବା ପରେ ଭୋଇ ବଂଶର ପ୍ରତିଷ୍ଠାତା ରାମଚନ୍ଦ୍ର ଦେବ (ପ୍ରଥମ) ଖୁରୁଧାଠାରେ ଗଡ଼ ଓ ଶ୍ରୀନଅର ସ୍ଥାପନ ପୂର୍ବକ ଗଡକୁଜଙ୍ଗରୁ ବ୍ରହ୍ମ ପଦାର୍ଥକୁ ଉଦ୍ଧାର କରି ନୂତନ ଭାବେ ବନଯାଗ ବିଧିରେ ଚତୁର୍ଦ୍ଧା ବିଗ୍ରହଙ୍କର ନିର୍ମାଣ କରାଯାଇଥିଲା । ଏକ ଭବ୍ୟ ସମାରୋହରେ ଶୁଭଲଗ୍ନ ଦେଖି ଶ୍ରୀମନ୍ଦିର ରତ୍ନସିଂହାସନରେ ଚତୁର୍ଦ୍ଧା ବିଗ୍ରହଙ୍କୁ ଅଧିଷ୍ଠିତ କରିବା ସଙ୍ଗେ ସଙ୍ଗେ ଠାକୁରମାନଙ୍କ ନୀତି, ସେବାପୂଜା, ଅନ୍ନ ମହାପ୍ରସାଦ ଓ ଉତ୍ସବାଦିର ପୁନଃ ପ୍ରଚଳନ କରିଥିଲେ । ଏହି ସମୟରେ ସେ ଠାକୁରମାନଙ୍କ ନିମିତ୍ତ କେତେକ ସ୍ୱର୍ଣ୍ଣ ଅଳଙ୍କାର ଗଢ଼ାଇ ଶ୍ରୀମନ୍ଦିରକୁ ଦାନ କରିଥିଲେ । ତାଙ୍କର ପ୍ରବଳ ନିଷ୍ଠା ଓ ଉଦ୍ୟମରେ ଶ୍ରୀମନ୍ଦିରରେ ରଘୁନାଥ ବେଶର ଆରମ୍ଭ ହୋଇଥିଲା । ଏଥିରେ ତାଙ୍କ ପ୍ରଦତ୍ତ କେତେକ ସ୍ୱର୍ଣ୍ଣ ଅଳଙ୍କାରାଦି ଠାକୁରମାନଙ୍କୁ ଲାଗି କରାଯାଇଥିଲା । ଏତଦ୍‌ବ୍ୟତୀତ ସ୍ୱର୍ଣ୍ଣ ନିର୍ମିତ ଏକହଜାର ରାମାଭିଷେକ ମୋହର ଶ୍ରୀମନ୍ଦିର ରତ୍ନ ଭଣ୍ଡାରକୁ ଦାନ କରିଥିଲେ ।

ଓଡ଼ିଶା ବ୍ରିଟିଶ୍ ଶାସନାଧୀନ ହେବାପରେ ୧୮୦୫ ମସିହାରେ ରତ୍ନଭଣ୍ଡାରରେ ଗଚ୍ଛିତ ଥିବା ଏକ ତାଲିକା ତଦାନୀନ୍ତନ ପୁରୀ କଲେକ୍ଟର ସି. ଗ୍ରୋମ୍ ପ୍ରସ୍ତୁତ କରିଥିଲେ । ସେସମୟରେ ସୁବର୍ଣ୍ଣ ଅଳଙ୍କାରଗୁଡିକର ତାଲିକା ମଧ୍ୟରେ ମୟୂର ଚନ୍ଦ୍ରିକା, ମୟୂର ପଙ୍ଖା, ଚନ୍ଦ୍ର, ସୂର୍ଯ୍ୟ, ମୁକୁଟ, କିଆପତ୍ର, କୁଣ୍ଡଳ, ଅଳକା, ରାହୁରେଖା, ଶ୍ରୀଭୁଜ, ନଳୀ, ବାହୁଟି, ସୁନା ଚକ୍ର, ନାକୁଆସି, କମର ଝୁମ୍ପା, ପଦ୍ମପାଦ (ସୁନାଗୋଡ), ବାଘନଖ, ପଦ୍ମମାଳା, ସେବତୀ ମାଳା, ପାରିଜାତ ମାଳା, କେଳିକଦମ୍ବ ମାଳା, କଣ୍ଠି ମାଳା, ଉପଚାର ପଦକ, ବାଜୁବନ୍ଧ, ସୁନା ବେଣ୍ଟ ଚଅଁର, ସୁନା ମୟୂରଚୂଳ, ସୁନା ଛାଞ୍ଚୁଣୀ, ସୁନା ବେତ, ଜିଭି, ତାବିଜ, ସୁନା ଝୁମ୍ପା, ସୁନା କଣ୍ଠି, ସୁନା ନାକ ଫାସିଆ, ଇଙ୍ଗା ସୁନା ଗହଣା, ମୁଦି, ସୁନା ପିଆ ବାଡି, ଚନ୍ଦ୍ର, ସୂର୍ଯ୍ୟ, କର୍ଣ୍ଣ ଫୁଲ, ନାକଚଣା, ଚିତା, ଶିରପେଞ୍ଚ, ପାନବଟା, ଗରା, ଥାଳି, ରୂପାର ଶଙ୍ଖ, ପାରା, ଫୁଲ, ଦୀପରୁଖା, ପାନଦାନି, ପଙ୍ଖା ବେଣ୍ଟ, ପିଲସଜ (ଦୀପ ଦଣ୍ଡ), ଚୂଆ ଦାନି, ଛତା ବେଣ୍ଟ, କଂସା ଦର୍ପଣ ବେଣ୍ଟ, ରୂପା ଛିଆଣ ଖଟ, ଜଗନ୍ନାଥଙ୍କ ଅଣ୍ଟା ଲାଗି ରୂପା ଶିକୁଳି, ଦଶାବତାର ଚିତ୍ର ଥିବା ପାନବଟା, ରୂପା ମୁକୁଟ (୧୫ ଗୋଟି), ରୂପାର ବୀଣା, ରୂପା ଖୁରା ଇତ୍ୟାଦି ଅନ୍ତର୍ଭୁକ୍ତ ଥିଲା । ଏତଦ୍‌ବ୍ୟତୀତ ମଦନମୋହନ ଠାକୁରଙ୍କର ରତ୍ନଜଡ଼ିତ ଅଳଙ୍କାର ମଧ୍ୟରେ କାନଫୁଲ (୧୦ ହଳ), କୁଣ୍ଡଳ ୨ଟି, ପଦ୍ମମାଳା ୪, ସେବତୀ ମାଳା ୩, ଚାପ ସରିମାଳା ୧, ବିଭିନ୍ନ ପ୍ରକାର ବେକର ମାଳା ୪୩ଟି, ବାଜୁବନ୍ଧ ୬, ପଦକ-୫, କଙ୍କଣ-୨, ଖଡୁ-୨, ଅଳକା-୨, ନାକୁଆସି ୧୦, ନୋଥ ୨, ମୁଦି ୫, ଖଡୁ ୨, ମୁକୁଟ ୨, ଖଣ୍ଡା ୨, କଟାରୀ ୧, ଧନୁ ୧, ଶର ୨, ଝୁମ୍ପା ୯ ଗୋଟି ସମେତ ବିଭିନ୍ନ ପ୍ରକାର ସୁବର୍ଣ୍ଣ ମୂର୍ତ୍ତି ୭ ଗୋଟି, ରୂପା ମୂର୍ତ୍ତି ୧୧, ପାଷାଣ-୧, ଦକ୍ଷିଣାବର୍ତ୍ତ ଶଙ୍ଖ ୧, ରାମାଭିଷେକ ମୋହର ୧ଟି, ସିଂହ ଜଟିଆ ଟଙ୍କା

୧ ଗୋଟି ରହିଥିଲା । ଏଠାରେ ସୂଚନାଯୋଗ୍ୟ ଯେ ଗଜପତି ରାମଚନ୍ଦ୍ର ଦେବ (ପ୍ରଥମ)ଙ୍କ ପ୍ରଦତ୍ତ ଏକ ହଜାର ରାମାଭିଷେକ ସ୍ୱର୍ଣ୍ଣ ମୋହର ପରବର୍ତ୍ତୀ ସମୟରେ ଦୁଇ ତିନି ଥର ଭଣ୍ଡାର ଲୁଟ୍ ଓ ବିଭିନ୍ନ ସମୟରେ ଅଳଙ୍କାରଗୁଡ଼ିକର ମରାମତି ନିମନ୍ତେ ଏହି ମୋହରଗୁଡିକ ଆଉ ରତ୍ନଭଣ୍ଡାରରେ ନ ରହି କେବଳ ସ୍ମୃତି ସ୍ୱରୂପ ଗୋଟିଏ ମୋହର ୧୮୦୫ ଖ୍ରୀଷ୍ଟାବ୍ଦରେ ହୋଇଥିବା ତାଲିକାରୁ ଜଣାଯାଏ । ଏପରିକି ୧୯୭୮ ମସିହାରେ ଶେଷ ଥର ପାଇଁ ହୋଇଥିବା ରତ୍ନଭଣ୍ଡାରର ଅଳଙ୍କାର ସାମଗ୍ରୀ ତାଲିକାରେ ଏହି ରାମାଭିଷେକ ମୋହରଟି ରହିଥିବା ଜଣାଯାଏ । ୧୮୦୫ ମସିହା ତଦାନୀନ୍ତନ କଲେକ୍ଟର, ପୁରୀଙ୍କ ରିପୋର୍ଟ ଅନୁଯାୟୀ ଶ୍ରୀମନ୍ଦିର ରତ୍ନଭଣ୍ଡାରରେ ସୁନା ମୋହର ୧୨୮ଟି, ରୂପା ଟଙ୍କା ୧୨୯୭, ତମ୍ବା ପଇସା ୧୦୬, ପ୍ରାଚୀନ ସୁବର୍ଣ୍ଣ ମୁଦ୍ରା ୨୪ ଗୋଟି ସମେତ ବିଭିନ୍ନ ପ୍ରକାରର ସୂତା ପାଟ, ସିଲ୍କ ପ୍ରଭୃତିର ଶାଢ଼ୀ, ଧୋତି, କନା, ଲୁଗା, ପୋଷାକ ପ୍ରଭୃତି ୧୩୩୩ଟି ଥିଲା । ଠାକୁରମାନଙ୍କର କେତେକ ବେଶରେ ଏହି ସ୍ୱତନ୍ତ୍ର ଜରିଦିଆ ପାଟ, ରେଶମ ପୋଷାକଗୁଡ଼ିକ ଅତୀତରେ ବ୍ୟବହାର ହେଉଥିବା ଅନୁମାନ କରାଯାଏ ।

ଡକ୍ଟର ଜଗନ୍ନାଥ ପ୍ରସାଦ ଦାସଙ୍କ ରଚିତ 'ଦେଶ କାଳ ପାତ୍ର' ପୁସ୍ତକର ଉଲ୍ଲେଖ ପ୍ରକାରେ ୧୮୮୬ ମସିହାରେ ସୂର୍ଯ୍ୟମଣି ପାଟମହାଦେଈଙ୍କ ସମୟରେ ତଦାନୀନ୍ତନ ଜିଲ୍ଲାପାଳ, ପୁରୀଙ୍କ ଆଦେଶ ଅନୁସାରେ ନାଜର ଶ୍ରୀମନ୍ଦିର ଭଣ୍ଡାର ଖୋଲାଇ କେବଳ ପାଟ ଓ ସୂତା ବସ୍ତ୍ରର ତାଲିକା କରିଥିଲେ । କିନ୍ତୁ ରତ୍ନ ଅଳଙ୍କାରର ତାଲିକା ହୋଇଥିବାର ସୂଚନା ମିଳୁନାହିଁ ।

୧୯୦୫ ମସିହାରେ ପ୍ରକାଶିତ ଉତ୍କଳ ଦୀପିକା ସମ୍ବାଦପତ୍ରରୁ ଜଣାଯାଏ ଯେ ଫେବୃଆରୀ ମାସ ୨୩ ତାରିଖଠାରୁ ଶ୍ରୀଜୀଉଙ୍କର ବହୁ କାଳରୁ ରୁଦ୍ଧ ହୋଇ ରହିଥିବା ରତ୍ନ ଭଣ୍ଡାର ମ୍ୟାନେଜର ଶ୍ରୀଯୁକ୍ତ ରାଜ କିଶୋର ଦାସଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା । ଦ୍ୱିପ୍ରହର ଧୂପ ଶେଷରେ ଦିବା ପହଡ ହେଲା ପରେ ଭଣ୍ଡାର ଖୋଲା ହୋଇଥିଲା । ରାଜଗୋପାଳ ମଠର ମହନ୍ତ ଶ୍ରୀ ରଘୁନନ୍ଦନ ରାମାନୁଜ ଦାସ, ଅନାରୀ ମାଜିଷ୍ଟ୍ରେଟ୍ ଶ୍ରୀ ଭିକାରୀ ମିଶ୍ର ଓ ପ୍ରଧାନ ସେବକମାନଙ୍କ ଉପସ୍ଥିତିରେ ଭଣ୍ଡାରରୁ ସିନ୍ଦୁକମାନ ଅଣାଯାଇ ବେହେରଣ ତଳେ ଖୋଲାଯାଇଥିଲା । ପ୍ରଥମ ଦିନ ଅଳିଆ ପରିଷ୍କାର କରାଯିବାରେ କେତେକ ଭଗ୍ନ ଓ ଜୀର୍ଣ୍ଣ ସିନ୍ଦୁକ ଦେଖାଗଲା । ଗୋଟିଏ ସିନ୍ଦୁକରେ ପିତଳର କେତେକ ପଦାର୍ଥ ଓ ନାନାବିଧ ମୂର୍ତ୍ତି ଥିଲେ । ଦୁଇଗୋଟି ସିନ୍ଦୁକରୁ ସୁବର୍ଣ୍ଣ ନିର୍ମିତ ରତ୍ନଖଚିତ ନାନା ଅଳଙ୍କାର ଏବଂ ଅନେକ ହୀରା, ନୀଳା, ମାଣିକ୍ୟ, ମୁକ୍ତା ପ୍ରଭୃତି ବହୁମୂଲ୍ୟ ରତ୍ନ ବାହାରିଥିଲା । ଅବଶିଷ୍ଟ ଦୁଇଗୋଟି ସିନ୍ଦୁକରୁ ଅନେକଗୁଡିକ ପାଟଲୁଗା ବାହାରିଥିଲା । ଏହାଛଡା ସୁନା ଓ ରୂପାର ଥାଳି, ଗିନା ଓ ନାନାବିଧ ମୂର୍ତ୍ତି ମିଳିଥିଲା ।

ରାଜ୍ୟ ସରକାର ୧୯୬୦ ମସିହାରେ ଶ୍ରୀମନ୍ଦିର ପ୍ରଶାସନର ପରିଚାଳନା ଭାର ନିଜ ହାତକୁ ନେବା ପୂର୍ବରୁ ଶ୍ରୀଜଗନ୍ନାଥ ମନ୍ଦିର (ପ୍ରଶାସନ) ଆଇନ୍, ୧୯୫୨ ପ୍ରଚଳନ କରିଥିଲେ । ଏହି ଆଇନ୍‌ର ବ୍ୟବସ୍ଥା ଅନୁଯାୟୀ ଶ୍ରୀମନ୍ଦିରର ନୀତି, ସେବାପୂଜା ପାଇଁ ଏକ ସ୍ୱତ୍ୱଲିପି (Record of Rights) ପ୍ରସ୍ତୁତ ହେଲା । ଜଣେ ଜିଲ୍ଲା ଜଜ୍ ପାହ୍ୟାର ଅଧିକାରୀ ଶ୍ରୀଯୁକ୍ତ ଲକ୍ଷ୍ମଣ ପଣ୍ଡାଙ୍କୁ ଏହି ପ୍ରସ୍ତୁତି କାର୍ଯ୍ୟରେ ନିୟୋଜନ କରାଯାଇଥିଲା । ତଦନୁଯାୟୀ ସ୍ୱତ୍ୱଲିପିର ୪ର୍ଥ ଭାଗର ଶ୍ରୀମନ୍ଦିର ରତ୍ନଭଣ୍ଡାର ସମ୍ପର୍କରେ ବିଶଦ ବିବରଣୀ ଉଲ୍ଲେଖ ହୋଇଛି । ଏଥିରୁ ଜଣାଯାଏ ଯେ ଶ୍ରୀମନ୍ଦିର ରତ୍ନ ଭଣ୍ଡାରଟି ଦୁଇ କୋଠରି ବିଶିଷ୍ଟ ଅଟେ । ପ୍ରଥମ କୋଠରିଟି ବାହାର ଭଣ୍ଡାର ନାମେ କଥିତ ହେଉଥିବାବେଳେ ଶେଷ କୋଠରିଟି ଭିତର ଭଣ୍ଡାର ନାମେ ସୁପରିଚିତ ଅଟେ । ବାହାର ଭଣ୍ଡାରରେ ମୋଟ୍ ୧୫୦ ପ୍ରକାରର ରତ୍ନ ଅଳଙ୍କାର ରହିଛି । ଏଥିମଧ୍ୟରେ ୧୨୦ ତୋଳା ଓଜନ ବିଶିଷ୍ଟ ୩ଟି ହରିଡାକଣ୍ଠି ମାଳି, ସୁନା ଶ୍ରୀଭୁଜ ଓ ଶ୍ରୀପୟର, ୩ଟି ସୁବର୍ଣ୍ଣ କିରୀଟ ଯାହାକି ୬୧୦ ତୋଳା (ଜଗନ୍ନାଥ), ୪୩୪ ତୋଳା (ବଳଭଦ୍ର) ଓ ୨୭୫ (ସୁଭଦ୍ରା) ତୋଳା ଓଜନ ବିଶିଷ୍ଟ ଅଟେ । ଏତଦ୍‌ବ୍ୟତୀତ ବହୁ ପ୍ରକାରର ରତ୍ନ ଜଡ଼ିତ ଅଳଙ୍କାର ଅନ୍ତର୍ଭୁକ୍ତ ଅଟେ । ସେହିପରି ଭିତର

ଭଣ୍ଡାରରେ ୧୮୦ ପ୍ରକାରର ଅଳଙ୍କାର ମଧ୍ୟରୁ ୭୪ ପ୍ରକାରର ଖାଣ୍ଟି ସୁନାରେ ନିର୍ମିତ ଅଳଙ୍କାର ଅନ୍ତର୍ଭୁକ୍ତ । ଏହି ଅଳଙ୍କାର ମଧ୍ୟରୁ କେତେକ ୧୦୦ ତୋଳା ଓଜନରୁ ଅଧିକ ଅଟେ । ଏଥିସହିତ ହୀରା କଣି, ମାଣିକ୍ୟ, ନୀଳା, ପାନ୍ନା, ମୁକ୍ତା, ପୋହଳା, ମୋତି ଇତ୍ୟାଦି ବହୁ ଦୁର୍ଲ୍ଲଭ ରତ୍ନ ପଥର ଓ ରତ୍ନ ଜଡ଼ିତ ଅଳଙ୍କାରମାନ ଗଚ୍ଛିତ ରହିଛି । ସୁବର୍ଣ୍ଣ ଓ ରତ୍ନ ଜଡ଼ିତ ଅଳଙ୍କାର ବ୍ୟତୀତ ୧୪୬ ପ୍ରକାରର ରୌପ୍ୟ ନିର୍ମିତ ସାମଗ୍ରୀ, ବାସନକୁସନ ଓ ଅଳଙ୍କାରମାନ ରହିଛି । ଏଥିମଧ୍ୟରୁ କେତେକ ସାମଗ୍ରୀର ଓଜନ ୫୦୦ ତୋଳାରୁ ଅଧିକ ଅଟେ । ସୂଚନାଯୋଗ୍ୟ ଯେ ଏକ ତୋଳାର ଓଜନ ୧୧ ଗ୍ରାମରୁ ସାମାନ୍ୟ ଅଧିକ । କାରଣ ଅଧ ତୋଳାର ଓଜନ ୫.୮୩ ଗ୍ରାମ୍ ଅଟେ ।

ପ୍ରଚଳିତ ବ୍ୟବସ୍ଥା ଅନୁଯାୟୀ ସମ୍ପ୍ରତି ବାହାର ଭଣ୍ଡାରର ୩ଟି ତାଲା ମଧ୍ୟରୁ ଗୋଟିଏ ପୁରୀ ଗଜପତି ମହାରାଜାଙ୍କ ପାଖରେ ଓ ଅନ୍ୟ ଦୁଇଟି ଶ୍ରୀମନ୍ଦିର ପ୍ରଶାସନ ଓ ଭଣ୍ଡାର ମେକାପ ନିକଟରେ ରହୁଥିବା ବେଳେ ଭିତର ଭଣ୍ଡାରର ଦୁଇଟି ତାଲା (ଡବଲ୍ ଲକ୍ ଚାବି) ଜଉମୁଦ ଦିଆଯାଇ ତାହାକୁ ଶ୍ରୀଜଗନ୍ନାଥ ମନ୍ଦିର ଆଇନ୍, ୧୯୫୫ର ବିଧି ବ୍ୟବସ୍ଥା ଅନୁଯାୟୀ ଶ୍ରୀମନ୍ଦିର ପରିଚାଳନା କମିଟି ଓ ଜିଲ୍ଲାପାଳ, ପୁରୀଙ୍କ ତତ୍ତ୍ୱାବଧାନରେ ରଖାଯାଇଛି ।

୧୯୫୪ ମସିହାରେ ପୁରୀ ଶ୍ରୀମନ୍ଦିର ପାଇଁ ନିଯୁକ୍ତ ସ୍ପେଶାଲ ଅଫିସରଙ୍କ ରିପୋର୍ଟର ପ୍ରଥମ ଭାଗର ଷଷ୍ଠ ପରିଚ୍ଛେଦରେ 'ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରର ସମ୍ପତ୍ତି' ଶୀର୍ଷକ ଶିରୋନାମାରେ ରତ୍ନ ଭଣ୍ଡାର ସମ୍ପର୍କରେ ଉଲ୍ଲେଖ ରହିଛି । ତାହାର ଅବିକଳ ବିବରଣୀ ଏଠାରେ ଉଦ୍ଧୃତ କରାଯାଉଛି –

''.... ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଯେଉଁ ସମସ୍ତ ଅଳଙ୍କାର ଜହରତ୍ ଆଦି ସେସମୟରେ ଭଣ୍ଡାରରେ ମହଜୁଦ୍ ଥିଲା ତହିଁର ବିବରଣ ୧୮୦୫ ମସିହାରେ ଗ୍ରୋମ୍ ସାହେବଙ୍କ ରିପୋର୍ଟର ୧୫ ନମ୍ବର ତାଲିକାରେ ଦିଆଯାଇଥିଲା । ଏ. ସିବାଏ ପାଟଯୋଶୀ ମହାପାତ୍ର ଏପରି ଅନେକ ବହି ଦେଖାଇଥିଲେ, ଯହିଁରେ ଭଣ୍ଡାରର ଓ ଭଣ୍ଡାରସ୍ଥିତ ଜହରତ୍‌ମାନଙ୍କର ହିସାବ ଅଛି ଏବଂ ସରକାର ବଦଳ ବା ରାଜା ପରିବର୍ତ୍ତନ ସମୟରେ ଏହି ତାଲିକା ପ୍ରସ୍ତୁତ ହେଉଥିଲା । ରିପୋର୍ଟର ୩୩ ଦଫାରେ ସେ ଲେଖିଛନ୍ତି ଯେ ଯାତ୍ରୀମାନେ ପ୍ରତ୍ୟହ ଠାକୁରଙ୍କୁ ଯେଉଁ ଜହରତ୍ ଓ ଅନ୍ୟାନ୍ୟ ମୂଲ୍ୟବାନ ସାମଗ୍ରୀ ଦାନ କରନ୍ତି, ତାହା ଭଣ୍ଡାର ଘରେ ରଖାଯାଏ । ରିପୋର୍ଟର ୪୧ ଦଫାରେ ଉଲ୍ଲେଖ ଅଛି ଯେ, ଭଣ୍ଡାର ରକ୍ଷକମାନଙ୍କୁ ଚୋରି ବନ୍ଦ କରିବା ଉଦ୍ଦେଶ୍ୟରେ ଭଣ୍ଡାର ଘରକୁ ପ୍ରବେଶ କରିବା ସମୟରେ ଓ ଭଣ୍ଡାର ଛାଡ଼ିବା ସମୟରେ ଭଣ୍ଡାର ମେକାପଙ୍କୁ ଲୁଗାପଟା ଛାଡ଼ି କରି ଯିବାକୁ ହୁଏ ଏବଂ ମୂଲ୍ୟବାନ ଜହରତ୍‌ମାନ ପରିଚ୍ଛାମାନଙ୍କ ସିଲ୍ ମୁଦ ମଧ୍ୟରେ ଗଚ୍ଛିତ ରଖାଯାଏ । ରିପୋର୍ଟର ୪୬ ଦଫାରେ ଉଲ୍ଲେଖ କରିଛନ୍ତି ଯେ ପୁରୀ କ୍ଷେତ୍ର ମଧ୍ୟରେ କୌଣସି ସମ୍ପତ୍ତି ପକ୍ଷେ କେହି ଦାବୀଦାର ନ ହେଲେ ତାହା ମନ୍ଦିରର ବ୍ୟବହାର ନିମନ୍ତେ ନିଆଯାଇଥାଏ ।'' ପୁନଶ୍ଚ ସ୍ପେଶାଲ ଅଫିସର ଶ୍ରୀଯୁକ୍ତ ଲକ୍ଷ୍ମଣ ପଣ୍ଡାଙ୍କ ପ୍ରଦତ୍ତ ରିପୋର୍ଟରେ ଉଲ୍ଲେଖ ଅଛି ଯେ, ''ଶ୍ରୀଜୀଉଙ୍କର ଥିବା ବହୁ ମୂଲ୍ୟବାନ ଓ ଚଳନ୍ତି ମାଲ ରତ୍ନ ଭଣ୍ଡାରରେ ଅଛି । ଏହି ରତ୍ନ ଭଣ୍ଡାରକୁ ଲୋକେ ବାଉନ କୋଟି ଭଣ୍ଡାର ବୋଲି କହନ୍ତି । ହୁଏତ କେବେ ଏହାର ମୂଲ୍ୟ ସେତେବେଳେ ବାଉନ (୫୨) କୋଟି ଟଙ୍କା ଥିଲା । ଏହାକୁ ଅସରନ୍ତି ଭଣ୍ଡାର ବୋଲି ମଧ୍ୟ କେତେକ କହିଥାନ୍ତି, ଅର୍ଥାତ୍ ଏ ଭଣ୍ଡାର ବୋହିଲେ ସରେ ନାହିଁ । ପୂର୍ବେ କୁହାଯାଇଛି ଯେ ଅନଙ୍ଗ ଭୀମଦେବ ଶ୍ରୀଜୀଉଙ୍କ ଅଳଙ୍କାର ତୟାର ନିମନ୍ତେ ବହୁ ପରିମାଣ ସୁନା ଓ ମୂଲ୍ୟବାନ ଜହରତ୍ ଦାନ କରିଥିଲେ । ମନ୍ଦିର ପ୍ରଚଳିତ ନିୟମ ଓ ବ୍ୟବହାର ମତେ ଯାତ୍ରୀମାନଙ୍କ ପ୍ରଦତ୍ତ ସମସ୍ତ ଜହରତ, ସୁନା ଓ ପାଟ ଏହି ଭଣ୍ଡାରରେ ଗଚ୍ଛିତ ରଖାଯିବା ବିଧି ଏବଂ ଫଳରେ ଭଣ୍ଡାରରେ ଗଚ୍ଛିତ ଧନ କେତେ ବୃଦ୍ଧି ପାଇବାର କଥା ତାହା ସହଜରେ ଅନୁମାନ କରାଯାଇପାରେ । ଓଡ଼ିଶାର ନରପତିମାନେ ଏହି ବିପୁଳ ଧନ ଭଣ୍ଡାରର ଦାୟିତ୍ୱ ନିଜେ ଗ୍ରହଣ କରୁ ନଥିଲେ । ତେଣୁ ୧୯୨୬ ମସିହାରେ ରାଜା ରାମଚନ୍ଦ୍ର ଦେବ ମନ୍ଦିର ଦାୟିତ୍ୱରେ ଥିବା ପର୍ଯ୍ୟନ୍ତ ଭଣ୍ଡାର ସମ୍ବନ୍ଧେ ନିମ୍ନଲିଖିତ

ରୀତି ପ୍ରଚଳିତ ଥିଲା– ଭଣ୍ଡାରରେ ତିନିଟି ତାଲା ପଡୁଥିଲା । ଭିତର ଭଣ୍ଡାରରେ ଦୁଇଟି ତାଲା ପଡୁଥିଲା । ତହିଁ ମଧ୍ୟରୁ ଗୋଟିକର ଚାବି ରାଜା ସୁପରିନ୍‌ଟେଣ୍ଡେଣ୍ଟଙ୍କ ନିକଟରେ ଓ ଅନ୍ୟ ଗୋଟିକର ଚାବି ଭଣ୍ଡାର ନାୟକଙ୍କ ନିକଟରେ ରହୁଥିଲା ଓ ବାହାର ଭଣ୍ଡାରର ଚାବି ଭଣ୍ଡାର ମେକାପଙ୍କ ଜିମା ରହୁଥିଲା । ଭଣ୍ଡାର ନାୟକ ଛତିଶା ନିଯୋଗର ନାୟକ ବା ସେବକମାନଙ୍କର ପ୍ରତିନିଧି ଥିବା, ସପରିନ୍‌ଟେଣ୍ଡେଣ୍ଟ ମନ୍ଦିରର ପରିଚାଳକ ଥିବା ଓ ଭଣ୍ଡାର ମେକାପ ମନ୍ଦିର କର୍ମଚାରୀ ଥିବା ଯୋଗେ ଓ ଭଣ୍ଡାରର ତିନିଟି ଚାବି ତିନି ଜଣଙ୍କ ପାଖେ ରହୁଥିବାରୁ ସେମାନଙ୍କ ମଧ୍ୟରୁ କାହାରି ଉପରେ ସନ୍ଦେହ ହେବାର ଅବକାଶ ନଥିଲା । ଭଣ୍ଡାର ମାଲମାନଙ୍କର ତାଲିକା ରୀତିମତ ପ୍ରସ୍ତୁତ କରାଯାଉଥିଲା ଏବଂ ଭଣ୍ଡାର ନାୟକଙ୍କ ପାଖେ ମଣତି ପରେ ଗୋଟିଏ ଲେଖାଏଁ ତାଲିକା ରଖାଯାଉଥିଲା । ୧୮୦୩ ମସିହାରେ ବ୍ରିଟିଶ୍ ସରକାର ମନ୍ଦିର ଦଖଲ ନେଲାବେଳେ ଗୋଟିଏ ତାଲିକା ପ୍ରସ୍ତୁତ (୧୯୦୫ ମସିହାରେ) ପ୍ରସ୍ତୁତ ହୋଇଥିଲା ଓ ତତ୍‌ପୂର୍ବରୁ ଅନ୍ୟ ତାଲିକାମାନ ଥିଲା ଏବଂ ପରିଶେଷରେ ଶ୍ରୀ ରାଜ କିଶୋର ଦାସ, ମେନେଜର ନିଯୁକ୍ତ ହେବା ସମୟେ ଗୋଟିଏ ତାଲିକା ପ୍ରସ୍ତୁତ ହୋଇଥିଲା । ଶ୍ରୀ ରାଜ କିଶୋର ଦାସ କେତେକ ଅଳଙ୍କାର ତୟାର କରାଇଥିଲେ ଏବଂ ରେଜା ସୁନାରେ କେତେକ ଅଳଙ୍କାର ଗଢ଼ାଇଥିଲେ ଏବଂ ସର୍ବଶେଷରେ ୧୯୧୩ ମସିହାରେ ଭିତର ଭଣ୍ଡାର ଓ ବାହାର ଭଣ୍ଡାରରେ ଥିବା ସମସ୍ତ ଜହରତ୍ ଆଦିର ତାଲିକାମାନ ପ୍ରସ୍ତୁତ କରାଯାଇଥିଲା । ଭିତର ଭଣ୍ଡାରରେ ବରାବର ଦୁଇଟି ତାଲା ପଡୁଥିଲା ଏବଂ ତହିଁ ମଧ୍ୟରୁ ଗୋଟିକର ଚାବି ଭଣ୍ଡାର ନାୟକଙ୍କ ପାଖେ ରହୁଥିଲା । ଜହରତ ଆଦିର ଅନ୍ୟ ଗୋଟିଏ ତାଲିକା ଦେଉଳକରଣଙ୍କ ନିକଟେ ମଧ୍ୟ ରଖାଯାଉଥିଲା । ଠାକୁରମାନଙ୍କ ଦୈନିକ ବ୍ୟବହାର୍ଯ୍ୟ ଜିନିଷମାନ ବାହାର ଭଣ୍ଡାରରେ ରଖାଯାଉଥିଲା ଏବଂ ସେଥିନିମନ୍ତେ ଭଣ୍ଡାର ମେକାପ ଦେଉଳକରଣଙ୍କୁ ରସିଦ ଲେଖି ଦେଉଥିଲେ ଓ ସେଥିନିମନ୍ତେ ସେ ଦାୟୀ ରହୁଥିଲେ । ୧୯୨୬ ମସିହାରେ ରାଜା ଉଭୟ ଭଣ୍ଡାରର ଦାୟିତ୍ୱ ଗ୍ରହଣ କରିଥିଲେ ଏବଂ ପୂର୍ବରୁ ବହୁବାର ଉଲ୍ଲେଖ କରାଯାଇଅଛି ଯେ ସେ ସେଥିନିମନ୍ତେ ରସିଦମାନ ଲେଖି ଦେଉଥିଲେ ଓ ଭଣ୍ଡାର ଅଳଙ୍କାର ତାଲିକା ବହିରେ ପ୍ରତ୍ୟେକ ଜିନିଷ ଉଲ୍ଲେଖ ଥିବା ସ୍ଥାନରେ ଦସ୍ତଖତ କରି ଦେଇଥିଲେ ଏବଂ ସେ ଯେଉଁ ଜିନିଷ ଯେଉଁ ଅବସ୍ଥାରେ ପାଇଥିଲେ ତହିଁର ବର୍ଣ୍ଣନା ମଧ୍ୟ ଲେଖି ଦେଇଥିଲେ । ୧୯୩୦ ମସିହାରେ ତତ୍‌କାଳୀନ ଭଣ୍ଡାର ନାୟକ ନାବାଳକ ଥିଲେ ଏବଂ ସେ ଦାଖଲ କରିଥିବା ଏକକିତା ନୋଟିସ୍‌ରୁ ଏବଂ ଦେଉଳକରଣଙ୍କଠାରୁ ଜଣାଗଲା ଯେ ବର୍ତ୍ତମାନ ସୁପରିନ୍‌ଟେଣ୍ଡେଣ୍ଟ ଭଣ୍ଡାରର ଅନ୍ୟ ଚାବିଟି ତାଙ୍କୁ ଦେବା ନିମନ୍ତେ ଭଣ୍ଡାର ନାୟକଙ୍କୁ ନୋଟିସ୍ ଦ୍ୱାରା ହୁକୁମ୍ ଦେଇଥିଲେ ଏବଂ ଉକ୍ତ ଚାବିଟି ତାଙ୍କ ହସ୍ତକୁ ଦିଆଯାଇଥିଲା । ତେଣୁ ସେହି ସମୟରୁ ଭିତର ଭଣ୍ଡାରର ଉଭୟ ଚାବି ସୁପରିନ୍‌ଟେଣ୍ଡେଣ୍ଟଙ୍କ ହାତରେ ରହିଅଛି ଏବଂ ୧୯୨୬ ମସିହା ପରଠାରୁ ଭଣ୍ଡାରରେ ଗଚ୍ଛିତ ଥିବା ଜିନିଷାଦ୍ ମଣତି ହୋଇନାହିଁ । ସୁପରିନ୍‌ଟେଣ୍ଡେଣ୍ଟ ଭଣ୍ଡାର ସ୍ଥିତ ଜିନିଷାଦ୍ ବୁଝିନେଇ ନିଜେ ପ୍ରାପ୍ତି ସ୍ୱୀକାର ରସିଦ୍ ଲେଖି ଦେଇଥିବା ଓ ଉକ୍ତ ରସିଦ ସମ୍ବଳିତ ତାଲିକା କିଲଟରୀ ମହାଫିସଖାନାରେ ମହଜୁଦ୍ ରହିଥିବା ଦୃଷ୍ଟେ ଉକ୍ତ ତାଲିକା ଲିଖିତ ମାଲମତା ଜଗନ୍ନାଥ ମହାପ୍ରଭୁଙ୍କ ସମ୍ପତ୍ତି ସୁପରିନ୍‌ଟେଣ୍ଡେଣ୍ଟଙ୍କ ଜିମା ରହିଅଛି ଏବଂ ସେଥିରେ କୌଣସି ଜିନିଷ କମତି ହେଲେ ସେଥିନିମନ୍ତେ ସୁପରିନ୍‌ଟେଣ୍ଡେଣ୍ଟ ଦାୟୀ ସେଥିରେ କୌଣସି ସନ୍ଦେହ ହୋଇ ନପାରେ । ବାହାର ଭଣ୍ଡାରରେ ବହୁମୁଲ୍ୟ ଜହରତ୍ ଖଚିତ ଅଷ୍ଟରତ୍ନ ଜଡ଼ିତ ଚିତା, ରତ୍ନଜଡ଼ିତ ସ୍ୱର୍ଣ୍ଣଚୂଳ, ରତ୍ନ ଜଡ଼ିତ ସୁନା କିରୀଟ, ଓଜନଦାର ସୁନା ମାଳି, ସୁନା ମକର ୧୩୪ ତୋଳା ଓଜନର ରୂପା ଅସ୍ତ୍ର ଉପରେ କୁଣ୍ଡଳ, ପ୍ରତ୍ୟେକ ୧୨୦ ତୋଳାରୁ ବେଶୀ ଓଜନର ତିନି ଗୋଟା ସୁନା ହରିଡ଼ା କଣ୍ଠିମାଳ, ରୂପା ଓ ଅନ୍ୟାନ୍ୟ ଉପାଦାନ ବାଦ ୩୭୧ ତୋଳା ଓଜନର ସୁନା ଶ୍ରୀଭୁଜ, ୧୨୯ ତୋଳା ଓଜନର ସୁନା ରାହୁରେଖା ଓ ଅନ୍ୟାନ୍ୟ ରତ୍ନ ଅଳଙ୍କାର ରହିଅଛି । ଭିତର ଭଣ୍ଡାରରେ ହୀରା, ମୁକ୍ତା, ମାଣିକ୍ୟ, ମରକତ, ନୀଳା, ପୋହଳା ଆଦି ବହୁ ମୂଲ୍ୟବାନ ସଚ୍ଚା ଜହରତ୍ ଖଚିତ ୧୮୦ ପ୍ରକାରର ଭିନ୍ନ ଭିନ୍ନ ଅଳଙ୍କାର

ରହିଛି । ମଣିମୁକ୍ତା ଖଚିତ ୪୯ ପ୍ରକାରର ସୁନା ଅଳଙ୍କାର, ପ୍ରାୟ ୨୫୦ ତୋଳା ଓଜନର ସୁନା ଥାଳି, ମଣିମୁକ୍ତା ଖଚିତ ୨୯ ଗୋଟି ଭଗ୍ନ ଅଳଙ୍କାର, ୫୬ ତୋଳା ଓଜନର ସୁନା ଖାଡ଼ି ସହିତ ୨୩ ଥାନ ରେଜା ସୁନା, ୧୪୬ ଥାନ ରୂପା ଜିନିଷ, ଏଥିରେ ପ୍ରତ୍ୟେକ ୪୦୦ ତୋଳାରୁ ଅଧିକ ଓଜନର କେତେକ ରୂପା ଥାଳି, ୫୬୪ ତୋଳା ଓଜନର ଗରା, ପ୍ରାୟ ୬୦୦ ତୋଳା ଓଜନର କୁଣ୍ଡ, ସୁନାର ପିଙ୍ଗଣ (୧୫୮ ତୋଳା), ବଟୁଲୀ, ଚାମର, ଓଗେର ୯୨ ଥାନ ଜିନିଷ ତାଲିକାଭୁକ୍ତ ଅଛି । ଏହି ଜିନିଷମାନ ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ବିସ୍ତୃତ ଭାବେ ଶ୍ରେଣୀ ବିଭାଗ କରାଯାଇଅଛି ଏବଂ ତାହା ରତ୍ନଭଣ୍ଡାରରେ ଗଚ୍ଛିତ ଜଗନ୍ନାଥ ମହାପ୍ରଭୁଙ୍କର ସମ୍ପତ୍ତି ଅଟେ ।''

୧୯୭୮ ମସିହାରେ ଶ୍ରୀମନ୍ଦିର ପରିଚାଳନା କମିଟି ପକ୍ଷରୁ କଟକସ୍ଥିତ ସତ୍ୟବାଦୀ ପ୍ରେସ୍‌ଠାରେ ମୁଦ୍ରିତ 'ଶ୍ରୀଜଗନ୍ନାଥ ମନ୍ଦିର ରତ୍ନ ଭଣ୍ଡାର ତାଲିକା' ପୁସ୍ତକରୁ ଜଣାଯାଏ ଯେ ଶ୍ରୀମନ୍ଦିର ରତ୍ନ ଭଣ୍ଡାରରେ ଗଚ୍ଛିତ ଥିବା ସୁନା, ରୂପା ଓ ମଣିମୁକ୍ତା ଖଚିତ ଅଳଙ୍କାର ଆଦିର ଏକ ତାଲିକା ୧୯୨୬ ମସିହାରେ ପ୍ରସ୍ତୁତ କରାଯାଇ ତତ୍କାଳୀନ ଗଜପତି ରାଜା ସାହେବଙ୍କ ସ୍ୱୀକୃତି ପାଇ ପୁରୀ ଜିଲ୍ଲାପାଳଙ୍କ ଅଫିସ୍‌ର ରେକର୍ଡରୁମ୍‌ରେ ଜଉମୁଦ ଦିଆଯାଇ ରଖାଯାଇଥିଲା । ସେହି ସମୟରୁ ରତ୍ନ ଭଣ୍ଡାରରେ ଥିବା ଉପଯୁକ୍ତ ସମ୍ପତ୍ତିର କୌଣସି ପୂର୍ଣ୍ଣାଙ୍ଗ ତାଲିକା ୧୯୭୮ ମସିହା ପର୍ଯ୍ୟନ୍ତ କରାଯାଇନଥିଲା ।

ରାଜ୍ୟ ସରକାରଙ୍କ ଦ୍ୱାରା ଗଠିତ ତଦାନୀନ୍ତନ ରାଜ୍ୟପାଳ ଶ୍ରୀ ଭଗବତ୍ ଦୟାଲ୍ ଶର୍ମାଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଶ୍ରୀମନ୍ଦିର ପ୍ରଶାସନ ଉନ୍ନୟନ କମିଟିର ସୁପାରିସ୍‌କ୍ରମେ ତଥା ରାଜ୍ୟ ସରକାରଙ୍କ ନିର୍ଦ୍ଦେଶାନୁଯାୟୀ ଶ୍ରୀମନ୍ଦିର ପରିଚାଳନା କମିଟି ପକ୍ଷରୁ ଶ୍ରୀମନ୍ଦିରର ଉଭୟ ଭିତର ଓ ବାହାର ରତ୍ନ ଭଣ୍ଡାରରେ ରଖାଯାଇଥିବା ସମସ୍ତ ରତ୍ନ ଅଳଙ୍କାର ଓ ଅନ୍ୟାନ୍ୟ ସାମଗ୍ରୀର ଏକ ପୂର୍ଣ୍ଣାଙ୍ଗ ତାଲିକା ପ୍ରସ୍ତୁତ କରାଯାଇଥିଲା । ସେସମୟରେ ଏହି ତାଲିକା ଦାୟିତ୍ୱରେ ଶ୍ରୀମନ୍ଦିର ପରିଚାଳକ ବା ପ୍ରଶାସକଙ୍କୁ ମିଶାଇ ମୋଟ୍ ୬ ଜଣ ସଦସ୍ୟ ରହିଥିଲେ । ତନ୍ମଧ୍ୟରୁ ଶ୍ରୀମନ୍ଦିର ପରିଚାଳନା କମିଟିର ସଭ୍ୟ ଶ୍ରୀ ଭୀମସେନ୍ ଗୋଚ୍ଛିକାର, ଶ୍ରୀ ନରସିଂହ ଦାସ ମହାପାତ୍ର, ଅତିରିକ୍ତ ଏସ୍.ପି. ପୁରୀ ଶ୍ରୀ ଶଚିକାନ୍ତ ତ୍ରିପାଠୀ, ପୁରୀ ଜିଲ୍ଲାପାଳଙ୍କ ପ୍ରାଧିକୃତ ପ୍ରତିନିଧି ଶ୍ରୀ ଆର୍. ବିଶ୍ୱାଳ ଏବଂ ଶ୍ରୀମନ୍ଦିର ପ୍ରଶାସକ ଶ୍ରୀ ପ୍ରହଲ୍ଲାଦ ରଥ ଉପସ୍ଥିତ ରହି ରତ୍ନ ଭଣ୍ଡାର ତାଲିକା କାର୍ଯ୍ୟରେ ନିୟୋଜିତ ହୋଇଥିଲେ । ଏହି କାର୍ଯ୍ୟ ତା ୧୩.୫.୧୯୭୮ ଆରମ୍ଭ ହୋଇ ୨୩.୭.୧୯୭୮ ତାରିଖ ମଧ୍ୟରେ ଶେଷ ହୋଇଥିଲା । ସୁତରାଂ ସମୁଦାୟ ୭୧ ଦିନରେ ଏହି ତାଲିକା କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଥିଲା । ୧୯୭୮ ମସିହା ରତ୍ନ ଭଣ୍ଡାର ତାଲିକା ପୁସ୍ତକର ଉଲ୍ଲେଖ ପ୍ରକାରେ ଭିତର ଭଣ୍ଡାରରେ ୩୬୭ଟି ପ୍ରକାରର ସୁନା ଅଳଙ୍କାରର ଓଜନ ୪୩୬୪ ଭରି ଅଟେ । ସେହିପରି ୨୩୧ ପ୍ରକାରର ରୂପା ଅଳଙ୍କାର ପୂଜା ବାବଦୀୟ ସାମଗ୍ରୀର ଓଜନ ୧୪୮୭୮ ଭରି ୬ ଅଣା ଅଟେ । ଅପରପକ୍ଷରେ ବାହାର ଭଣ୍ଡାରରେ ଗଚ୍ଛିତ ଥିବା ବିଭିନ୍ନ କିସମର ୭୯ ପ୍ରକାରର ସ୍ୱର୍ଣ୍ଣ ଅଳଙ୍କାରରର ଓଜନ ୮୧୭୫ ଭରି ଏବଂ ୩୯ ପ୍ରକାରର ରୂପା ସମାଗ୍ରୀର ଓଜନ ୪୬୭୧ ଭରି ଅଟେ । ଏତଦ୍‌ବ୍ୟତୀତ ଚଳନ୍ତି ଭଣ୍ଡାର ଯାହାକି ଠାକୁରମାନଙ୍କ ଦୈନନ୍ଦିନ ନୀତି ସେବାପୂଜା ପାଇଁ ଉଦ୍ଦିଷ୍ଟ ଥିବା ୮ ପ୍ରକାରର ସ୍ୱର୍ଣ୍ଣ ଅଳଙ୍କାରର ଓଜନ ୨୯୯ ଭରି ୧ ଅଣା ଏବଂ ୨୩ ପ୍ରକାରର ରୂପା ସାମଗ୍ରୀର ଓଜନ ୨୬୦୩ ଭରି ୮ ଅଣା ଅଟେ । ସୂଚନାଯୋଗ୍ୟ ଯେ ଶ୍ରୀମନ୍ଦିର ରତ୍ନ ଭଣ୍ଡାରରେ ୩ ଶ୍ରେଣୀୟ ରତ୍ନ ଅଳଙ୍କାର ରହିଅଛି । ଗୋଟିଏ ହେଲା ଭିତର ରତ୍ନ ଭଣ୍ଡାରରେ ଗଚ୍ଛିତ ଥିବା ଏବଂ ବ୍ୟବହୃତ ହେଉନଥିବା ଅଳଙ୍କାରାଦି, ଦ୍ୱିତୀୟରେ ବାହାର ଭଣ୍ଡାରରେ ରହିଥିବା ରତ୍ନ ଅଳଙ୍କାରଗୁଡିକ ବର୍ଷର ବିଭିନ୍ନ ବେଶ, ପର୍ବପର୍ବାଣିରେ ବ୍ୟବହୃତ ଏବଂ ତୃତୀୟତଃ ଚଳନ୍ତି ଭଣ୍ଡାରରେ ଦୈନନ୍ଦିନ ନୀତି, ସେବା ପୂଜାରେ ବ୍ୟବହୃତ ହେଉଥବା ରତ୍ନ ଅଳଙ୍କାର ଓ ପୂଜା ସାମଗ୍ରୀ ଜିନିଷାଦ୍‌ମାନ । ଏହିପରି ୩ ଗୋଟି ଶ୍ରେଣୀ ପର୍ଯ୍ୟାୟଭୁକ୍ତ ମୋଟ୍ ୪୫୪ ପ୍ରକାରର ସ୍ୱର୍ଣ୍ଣ ଓ ରତ୍ନ ଜଡ଼ିତ ଅଳଙ୍କାରର ଓଜନ ୧୨୮୩୮ ଭରି ୧ ଅଣା (ମୂଲ୍ୟବାନ ପଥର ସହିତ) ଏବଂ ୨୯୩ ପ୍ରକାରର ରୂପା ବାସନ କୁସନ, ପୂଜା

ସାମଗ୍ରୀର ମୋଟ୍ ଓଜନ ୨୨୧୫୩ ଭରି (ମୂଲ୍ୟବାନ ପଥର ସହିତ) ଅଟେ । ଏହାବ୍ୟତୀତ ୧୪ ଗୋଟି ସୁନା ଓ ରୂପା ଜିନିଷ ବିଭିନ୍ନ କାରଣରୁ ଓଜନ ହୋଇ ପାରି ନଥିବାରୁ ଉପରୋକ୍ତ ପରିମାଣର ସୁନା ଓ ରୂପାରେ ଏହା ଅନ୍ତର୍ଭୁକ୍ତ ନୁହେଁ । (ତଥ୍ୟ ସୂତ୍ର : ନଭେମ୍ବର ୨୦୧୮ ମସିହା, ବିଧାନସଭା ପ୍ରଶ୍ନୋତ୍ତର ତଥ୍ୟ ପ୍ରଦାନ : ଶ୍ରୀମନ୍ଦିର ପ୍ରଶାସନ)

**ଶ୍ରୀମନ୍ଦିର ସ୍ୱତ୍ତ୍ୱଲିପି (୧୯୫୬) ରେ ପ୍ରକାଶିତ ତଥ୍ୟ**

**ଭିତର ରତ୍ନ ଭଣ୍ଡାର : ସୁନା**

ତାଲିକା ନଂ ୧: ରତ୍ନଜଡ଼ିତ ସ୍ୱର୍ଣ୍ଣ ଅଳଙ୍କାର ୧୭୮ ପ୍ରକାର ଏଥିସହିତ ୧୭୯ ଛୋଟ ଏବଂ ବଡ ମୁକ୍ତା, ୧୮୦ ଦକ୍ଷିଣ ଭାରତ ଶଙ୍ଖ

ତାଲିକା ନଂ ୨: ଝୁଟା ରତ୍ନ ଅଳଙ୍କାର ୪୯ ପ୍ରକାର

ତାଲିକା ନଂ ୩ : ସୁନା ଅଳଙ୍କାର ୭୪ ପ୍ରକାର

ତାଲିକା ନଂ ୪ : ଭଙ୍ଗା ଅଳଙ୍କାର ୨୯ ପ୍ରକାର

ତାଲିକା ନଂ ୫ : ସୁନା ରେଜା ୨୩ ପ୍ରକାର

**ରୂପା ସାମଗ୍ରୀ**

ତାଲିକା ନଂ ୧ : ୧୪୬ ପ୍ରକାର – ୧୬,୬୬୭ ଭରି ୮ ଅଣା

ତାଲିକା ନଂ ୨ : ୯୨ ପ୍ରକାର – ୬୦୧୧ ଭରି ୩ ଅଣା

ତାଲିକା ନଂ ୩ : ୨୪ ପ୍ରକାର – ୧୮୧୯ ଭାରି ୬ ଅଣା

ଏହି ରୂପା ଜିନିଷାତ୍‌ମାନ ତତ୍‌କାଳୀନ ମନ୍ଦିର ମ୍ୟାନେଜର ଲାଲା ଆଶୁତୋଷଙ୍କ ସମୟରେ ମିଳିଥିଲା ଓ ଏହାକୁ ରତ୍ନଭଣ୍ଡାରରେ ରଖାଯାଇଅଛି ।

**ବାହାର ରତ୍ନ ଭଣ୍ଡାର**

ତାଲିକା ନଂ ୧ : ରତ୍ନ ଏବଂ ସୁନା ୧୫୦ ପ୍ରକାର

ତାଲିକା ନଂ ୨ : ରୂପା ୭୦ ପ୍ରକାର

ଶ୍ରୀମନ୍ଦିର ଉଭୟ ଭିତର ଓ ବାହାର ରତ୍ନ ଭଣ୍ଡାରରେ ଗଚ୍ଛିତ ରହିଥିବା ବିଭିନ୍ନ ସ୍ୱର୍ଣ୍ଣ ଓ ଅନ୍ୟାନ୍ୟ ରତ୍ନ ଖଚିତ ଅଳଙ୍କାର ପୂଜା ସାମଗ୍ରୀ ଇତ୍ୟାଦି ମଧ୍ୟରେ ସ୍ୱର୍ଣ୍ଣର ଶ୍ରୀଭୁଜ, ଶ୍ରୀପୟର, କିରୀଟ, ରତ୍ନ ଜଡ଼ିତ ସ୍ୱର୍ଣ୍ଣ ନାକୁଆସୀ, ସ୍ୱର୍ଣ୍ଣ ଚମ୍ପାକଢ଼ି ମାଳି, କରମଙ୍ଗିଆ କଣ୍ଠିମାଳ, ମରିଚିଆ କଣ୍ଠିମାଳି, ଓଡ଼ିଆଣୀ, ଛେଚା କଣ୍ଠିମାଳି, ରତ୍ନ ଜଡ଼ିତ ଚନ୍ଦ୍ରଝୁମ୍ପି, ମଦନମୋହନଙ୍କ ସୁନା କିରୀଟ, ଉପଚାର ପଦକ, ଛେଚା ସୋରିଷିଆ ମାଳି, ସ୍ୱର୍ଣ୍ଣ ହାତଖଡୁ, ସୁନା ଶିକୁଳି ଓ ପିଆଣିଆ ଥିବା ସୁନା ମଗର ମୁହାଁ ବଂଶୀ, ରତ୍ନ ଜଡ଼ିତ ସ୍ୱର୍ଣ୍ଣ କୁଣ୍ଡଳ, ସ୍ୱର୍ଣ୍ଣ ଝୋବା କଣ୍ଠି, ସ୍ୱର୍ଣ୍ଣ ବେଲପତ୍ରିମାଳି, ସ୍ୱର୍ଣ୍ଣ ପୁଷ୍ପହାର, ସ୍ୱର୍ଣ୍ଣ ମୁକୁଟ, ତାବିଜମାଳି, ରତ୍ନଜଡ଼ିତ ଅଳକା, ରତ୍ନଜଡ଼ିତ ସୁନା ଚନ୍ଦ୍ରଝୁମ୍ପି, ସ୍ୱର୍ଣ୍ଣ ତୁଳସୀ ପତ୍ରମାଳି, ପାନପତ୍ରିମାଳ, ଚାପସରୀ ଦାନା, ରତ୍ନ ଜଡ଼ିତ ରାମାନନ୍ଦୀ ଚିତା, ରତ୍ନଜଡ଼ିତ ଚନ୍ଦ୍ରିକା, ରତ୍ନ ଜଡ଼ିତ ବାଘନଖ, କମରପଟି, ଢ଼ାଲ, ମୋଡାଖଡୁ, ନୁପୂର, ସୋରିଷିଆ ମାଳି, ଧାନୁଆ ମାଳି, ଛ ସରିଆ ସୁନା ସୋରିଷିଆ କଣ୍ଠିମାଳି, ସୁନାଥାଳି, ରତ୍ନଜଡ଼ିତ ସୁନା ଶିରପେଚ, ରତ୍ନ ଜଡ଼ିତ ସୁନା କଲିଙ୍ଗି, ରତ୍ନ ଜଡ଼ିତ ଚିତା, ରତ୍ନ ଜଡିତ ବିଭିନ୍ନ ପ୍ରକାରର ସ୍ୱର୍ଣ୍ଣ ପଦକ, ନବରତ୍ନ ଜଡ଼ିତ ଚଉଖୁଣ୍ଟିଆ ପଦକ, ରତ୍ନ ଜଡ଼ିତ ସୁନା ଦଣ୍ଡି, ରତ୍ନ ଜଡ଼ତ ସୁନା ନଥ, ମୁକ୍ତା ଝାଲର ମାଳି, ରତ୍ନ ଜଡ଼ିତ ବାଜୁ, ରତ୍ନ ଜଡ଼ିତ ଚାପ ସରି ମାଳ, ରାମାଭିଷେକ ସ୍ୱର୍ଣ୍ଣ ମୋହର, ଅନେକ ଭଗ୍ନ ରତ୍ନ ଅଳଙ୍କାର ସମେତ ରୂପାର କଠଉ, ଆଳତି କାଠି, ପରଖ, ଅତର ଦାନୀ, ରୂପା ବେଣ୍ଟ ଚାମର, କରମଙ୍ଗିଆ କଳସ, ପିଚକାରୀ, ଗିନା, ହଡ଼ପ ବଟା, ବନକ ଲାଗି ଗିନା, ତସଲା, ରୂପାଚକ୍ର, ରୂପା ଗରା, ପିଙ୍ଗଣ, ଝରୀ, ଗଡୁ, ଛତି, ପାନ ଡ଼ିବା, ରୂପା ଥାଳି ପ୍ରଭୃତି ଅନ୍ତର୍ଭୁକ୍ତ ।

ଶ୍ରୀମନ୍ଦିର ସ୍ୱତ୍ତ୍ୱଲିପିରୁ ଜଣାଯାଏ ଯେ ଶ୍ରୀମନ୍ଦିର ଭିତର ଭଣ୍ଡାର ମଧ୍ୟରେ ଥିବା ବିଭିନ୍ନ ହୀରା ଓ ରତ୍ନଜଡ଼ିତ ସ୍ୱର୍ଣ୍ଣ ଅଳଙ୍କାର ମଧ୍ୟରେ ପଦକରେ ହୀରା କଣି ୧୬ଟି, ରତ୍ନଜଡ଼ିତ ମାଳିରେ ୨୦୪ଟି ହୀରା କଣି, ଅନ୍ୟ ଦୁଇଟି ରତ୍ନଜଡ଼ିତ ମାଳିରେ ୧୨୫ଟି ଛୋଟ ହୀରା କଣି, ୪୦ଟି ହୀରା କଣି ଏବଂ ସେହି ମାଳିର ପଦକରେ ୧୬ଟି ହୀରା

କଣି, ରତ୍ନ ଜଡ଼ିତ ମିହ୍ନା ଫୁଙ୍କା ମାଳିରେ ଅତି ସୂକ୍ଷ୍ମ ହୀରା କଣି ୩୯ଟି, ପାଲିଆରେ ଛୋଟ ହୀରା କଣି ୨ଟି, ପଦକରେ ୧୨ଟି ହୀରା କଣି, ୧୩ଟି ତ୍ରିଖଣ୍ଡିଆ ରତ୍ନଜଡ଼ିତ ଶିରପେଚ (ଶ୍ରୀପେଚ)ରେ ଯଥାକ୍ରମେ ୪୯, ୫୨, ୫୩, ୨୮, ୬୪, ୮୩, ୮୧, ୧୯୪, ୩୦, ୨୬, ୪୭, ୪୬ ଓ ୧୮ ଟି ଲେଖାଏଁ ହୀରା କଣିମାନ ଖଚିତ ହୋଇଅଛି । ଅନ୍ୟତ୍ର ଦୁର୍ଲ୍ଲଭ ରତ୍ନ ପଥର ନୀଳା, ମାଣିକ୍ୟ, ମର୍କତ, ପୁଷ୍ପରାଗ, ମୁକ୍ତା ସମେତ ୧୦ ଭରି ଓଜନ ହୀରା ପଥର, ପାନ ପତ୍ରିମାଳିରେ ୧୧ଟି ନାୟକ ହୀରା ଖଚିତ ଥିବା, ରତ୍ନଜଡ଼ିତ ଚିତାରେ ନାୟକ ହୀରା ବଡରୁ ୪ଟି ଓ ସାନରୁ ୪ଟି ସମେତ ହୀରା ଫୁଲ, ମଗର ମୁହାଁ ଖଡୁ, ହୀରା ପଥର ଖଚିତ ଅଳକା, ଚନ୍ଦ୍ରଝୁମ୍ପି, ବାଜୁବନ୍ଧ, ଶ୍ରୀପେଚ ଇତ୍ୟାଦି ରତ୍ନଜଡ଼ିତ ସୁବର୍ଣ୍ଣ ଅଳଙ୍କାରମାନଙ୍କରେ ହୀରା ପଥରମାନ ଖଚିତ ହୋଇଛି । ସେହିପରି ବାହାର ଭଣ୍ଡାରରେ ଥିବା ରତ୍ନଜଡ଼ିତ ସ୍ୱର୍ଣ୍ଣ ଚୂଳ, ରତ୍ନ ଜଡ଼ିତ ଚିତା ଏବଂ ଶ୍ରୀଜଗନ୍ନାଥଙ୍କର ରତ୍ନଜଡ଼ିତ ୧୨୫ ଭରି ଓଜନର ସୁବର୍ଣ୍ଣ ଚିତାର ମଝିରେ ବ୍ରହ୍ମଜ୍ୟୋତି ହୀରା ୧ଟି ସଂସ୍ଥାପନ ହୋଇଥିବା ବେଳେ ଏହାର ପ୍ରଥମ ବେଢ଼ରେ ୧୬ଟି, ଦ୍ୱିତୀୟ ବେଢ଼ରେ ୨୪ଟି, ୪ର୍ଥ ବେଢ଼ରେ ୩୪ଟି ହୀରାକଣି ଖଚିତ ହୋଇଛି । ସେହିପରି ବଳଭଦ୍ର ଓ ସୁଭଦ୍ରାଙ୍କ ରତ୍ନଜଡ଼ିତ ଚିତାରେ ହୀରା କଣି ଏବଂ ମଝିରେ ଏକ ବଡ ମର୍କତ ବା ପାନ୍ନା ପଥର ରହିଛି ।

ଶ୍ରୀମନ୍ଦିର କାର୍ଯ୍ୟାଳୟ ପତ୍ର ସଂଖ୍ୟା ୩୧୨୫ ତା ୧୯.୦୮.୧୯୭୮ ମସିହାରୁ ଜଣାଯାଏ ଯେ, ୧୯୬୨ ମସିହାରେ ତତ୍କାଳୀନ ଶ୍ରୀମନ୍ଦିର ପ୍ରଶାସକ ଶ୍ରୀ ଲକ୍ଷ୍ମଣ ମିଶ୍ର, ଭଣ୍ଡାରରେ ଗଚ୍ଛିତ ଥିବା ସୁନା ଓ ରୁପାର Physical Verification କରିବା ପାଇଁ ତିରୁପତି ମନ୍ଦିରର ଏକ୍ସପର୍ଟ ଜହୁରୀମାନଙ୍କ ସହାୟତାରେ ଚେଷ୍ଟା କରିଥିଲେ । ମାତ୍ର ସୂର୍ଯ୍ୟକିରଣ ବିନା ଏହି ଦୁର୍ଲ୍ଲଭ ରତ୍ନ ପଥର ଚିହ୍ନଟ କାର୍ଯ୍ୟ ସମ୍ଭବପର ନହେବାରୁ ରତ୍ନ ଅଳଙ୍କାରକୁ ଶ୍ରୀମନ୍ଦିର ନିୟମ ଅନୁଯାୟୀ ବାହାରକୁ ଅଣାଯିବା ନିଷେଧ ଥିବାରୁ ତାହା ବନ୍ଦ ହୋଇ ଯାଇଥିଲା । ପୁନଶ୍ଚ ୧୯୬୭ ମସହିାରେ ତତ୍କାଳୀନ ପ୍ରଶାସକ ରମେଶ ଚନ୍ଦ୍ର ଶତପଥୀ ରତ୍ନ ଭଣ୍ଡାର Verification କରିବା ପାଇଁ ଉଦ୍ୟମ କରିଥିଲେ ହେଁ ତାହା ସଫଳ ହୋଇ ପାରିନଥିଲା । କିନ୍ତୁ ୧୯୬୭-୬୮ ମସିହାରେ ରତ୍ନ ଭଣ୍ଡାରରେ ଥିବା କେତେକ ସ୍ୱର୍ଣ୍ଣ ଅଳଙ୍କାରାଦିର ମରାମତି କାର୍ଯ୍ୟ ହୋଇଥିଲା । ସେହିପରି ୧୯୬୯ ମସିହାରେ ଭିତର ଭଣ୍ଡାରରେ ଏକ ବ୍ୟାଗରେ ଥିବା ଭଙ୍ଗା ରୁପା ଜିନିଷାଦ୍ ଯାହାର ଓଜନ ଥିଲା ୪୨୭୦ ଭରି, ତାହାକୁ ବାହାରକୁ ଅଣାଯାଇ ଏକ ବିମାନର ମରାମତି କାର୍ଯ୍ୟରେ ବ୍ୟବହୃତ କରାଯାଇଥିଲା । ଏତଦ୍‌ବ୍ୟତୀତ ୧୯୭୨ ଓ ୧୯୭୪ରେ ରତ୍ନ ଭଣ୍ଡାରରୁ କେତେକ ସ୍ୱର୍ଣ୍ଣ ନିର୍ମିତ ଭଗ୍ନ ଅଳଙ୍କାର ଓ ୪୨ ଭରି ୬ ଅଣା ଓଜନ ବିଶିଷ୍ଟ ଏକ ସ୍ୱର୍ଣ୍ଣ ନିର୍ମିତ ପଦ୍ମ ପୁଷ୍ପର ମାଳି କଢ଼ା ଯାଇ ସେଥିରେ ଏକ ନୂତନ ମହାଲକ୍ଷ୍ମୀ ମୂର୍ତ୍ତି ନିର୍ମାଣ କାର୍ଯ୍ୟରେ ଲାଗିଥିଲା ।

ସୂଚନାଯୋଗ୍ୟ ଯେ ୧୯୭୮ ମସିହା । inventory ସମୟରେ ରତ୍ନ ଭଣ୍ଡାରରେ ଗଚ୍ଛିତ ଥିବା ୨୨୮୦୮ ଭରି ଦୁଇ ଅଣା ରୁପା ମଧ୍ୟରେ ୭୨୫ ଭରି ଓଜନ ବିଶିଷ୍ଟ ଏକ ରଥ ଏବଂ ୧୯୬୪-୬୫ ମସିହାରେ ଦାନସୂତ୍ରେ ମିଳିଥିବା ଦୁଇଟି ରୁପା ନିର୍ମିତ ଗାଈ ଅନ୍ତର୍ଭୁକ୍ତ । ସେହିପରି ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ଲିପିବଦ୍ଧ ହୋଇ ନଥିବା ଭିତର ଭଣ୍ଡାରରେ ୧୧୫୫ ଭରି ୧୫ ଅଣା ସୁନା ଅଳଙ୍କାର ଉପଲବ୍ଧ ଥିବା ଜଣାଯାଇଥିଲା ।

କଥିତ ଅଛି ଯେ, ଶ୍ରୀମନ୍ଦିର ରତ୍ନ ଭଣ୍ଡାରର ମୂଲ୍ୟାୟନ (Assesment) ପାଇଁ ତିରୁପତିରୁ ଆସିଥିବା ଜନୈକ ପ୍ରଖ୍ୟାତ୍ ଜହୁରୀ ମାତ୍ର ୨୬ ଗୋଟି ଅଳଙ୍କାରର ମୂଲ୍ୟାୟନ ପରେ ସେ କାର୍ଯ୍ୟ ବନ୍ଦ କରି ଦେଇଥିଲେ । କାରଣ ସୂର୍ଯ୍ୟ କିରଣ ପ୍ରବେଶ ନକଲେ ଦୁର୍ଲ୍ଲଭ ରତ୍ନଜଡ଼ିତ ରତ୍ନ ଅଳଙ୍କାରର ମୂଲ୍ୟାୟନ କରିବା ସମ୍ଭବ ନୁହେଁ ବୋଲି ସେ କହିଥିଲେ । ସେ ଶେଷ ଚାରି ଦିନ କାର୍ଯ୍ୟ ନକରି କେବଳ ରତ୍ନ ବେଦୀର ପଛ ପାର୍ଶ୍ୱ ଅର୍ଥାତ୍ ଭିତର ବେଢ଼ାର ପଶ୍ଚିମ ପାର୍ଶ୍ୱରେ ଅଧିକାଂଶ ସମୟ ବସି ରହିଥିଲେ । କେତେକ ସେବକ ତାଙ୍କୁ ଏ ବିଷୟରେ ପଚାରିବାରୁ, ସେ କହିଥିଲେ ଯେ ମହାପ୍ରଭୁ ଶ୍ରୀଜଗନ୍ନାଥ ପ୍ରକୃତରେ ପରମ ବ୍ରହ୍ମ । ତା' ନ ହୋଇଥିଲେ ମହାପ୍ରଭୁ ତାଙ୍କ କପାଳଦେଶରେ

ସଂସ୍ଥାପିତ ସୁବର୍ଣ୍ଣ ଚିତାରେ ଅତ୍ୟନ୍ତ ଦୁର୍ଲ୍ଲଭ ତଥା ଅସାଧାରଣ ବ୍ରହ୍ମ ଜ୍ୟୋତି ହୀରା ଧାରଣ କରି ପାରନ୍ତେ ନାହିଁ । ଉଦାହରଣ ଦେଇ ସେ ପ୍ରକାଶ କରିଥିଲେ ଯେ, ଗୋଟିଏ ବିଷୁବ ସଂକ୍ରାନ୍ତିଠାରୁ ତତ୍ପର ବିଷୁବ ସଂକ୍ରାନ୍ତି ପର୍ଯ୍ୟନ୍ତ ଏହି ଦୁର୍ଲ୍ଲଭ ହୀରା ଧାରଣ କଲେ ଧାତୁ ବା ପାଷାଣ ତରଳି ଯିବ । ସମ୍ଭବତଃ ସେଥିପାଇଁ ଶ୍ରୀଜଗନ୍ନାଥଙ୍କ ମସ୍ତକରେ ଏହି ବ୍ରହ୍ମଜ୍ୟୋତି ହୀରା ଖଚିତ ସୁବର୍ଣ୍ଣ ଚିତା ବର୍ଷ ସାରା ରହେ ନାହିଁ । ଶ୍ରୀମନ୍ଦିରର ପରମ୍ପରା ଅନୁଯାୟୀ ସ୍ନାନ ପୂର୍ଣ୍ଣିମାଠାରୁ ଶ୍ରାବଣ ଅମାବାସ୍ୟା ପୂର୍ବଦିନ ପର୍ଯ୍ୟନ୍ତ ଏହି ହୀରା ଚିତା ଶ୍ରୀବିଗ୍ରହଙ୍କ କପାଳ ଦେଶରେ ରହି ନଥାଏ । ସାଧାରଣତଃ ଏକ ହିସାବରୁ ଜଣାଯାଏ ଯେ ବର୍ଷକରେ ଠାକୁରମାନଙ୍କର କପାଳ ଦେଶରେ ପ୍ରାୟ ୪୫ ଦିନ ଧରି ଏହି ଦୁର୍ଲ୍ଲଭ ତଥା ଅନନ୍ୟ ରତ୍ନ ଖଚିତ ସୁବର୍ଣ୍ଣ ହୀରା ଚିତା ରହି ନଥାଏ ।

୧୯୬୦ ମସିହାଠାରୁ ଏକ ସ୍ୱତନ୍ତ୍ର ଆଇନ୍ ବଳରେ ଏକ କମିଟି ଉପରେ ରାଜ୍ୟ ସରକାର ଶ୍ରୀମନ୍ଦିର ପରିଚାଳନା ଭାର ନ୍ୟସ୍ତ କରିବା ପରଠାରୁ ବିଭିନ୍ନ ସମୟରେ ଯଥା– ୧୯୬୨, ୧୯୬୭, ୧୯୭୨, ୧୯୭୪ ମସିହାରେ ରତ୍ନଭଣ୍ଡାର ଖୋଲିଥିବାର ସୂଚନା ମିଳୁଛି । ୧୯୭୮ ମସିହାରେ ରତ୍ନଭଣ୍ଡାରର ସ୍ୱର୍ଣ୍ଣ ଅଳଙ୍କାର ଓ ବିଭିନ୍ନ ଜିନିଷାଦ୍ରର ସମ୍ପୂର୍ଣ୍ଣ ତାଲିକା ପ୍ରସ୍ତୁତ ପୂର୍ବକ ରେକର୍ଡ କରାଯିବା ପରେ ଶ୍ରୀମନ୍ଦିର ପରିଚାଳନା କମିଟି ତରଫରୁ କଟକସ୍ଥିତ ସତ୍ୟବାଦୀ ପ୍ରେସ୍‌ରେ ଏହି ତାଲିକାକୁ ଏକ ପୁସ୍ତକ ଆକାରରେ ପ୍ରକାଶ କରାଯାଇଥିଲା ।

ତା ୨୬.୧୨.୧୯୮୨ ମସିହାରେ ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା କମିଟିର ନିର୍ଦ୍ଧାରଣ ମତେ କଳାହାଟ ଦ୍ୱାର କବାଟର ରୂପା ଛାଉଣି ନିମିତ୍ତ ଭିତର ରତ୍ନ ଭଣ୍ଡାର ଖୋଲାଯାଇ କେତେକ ରୂପା ଅଳଙ୍କାର ଶ୍ରୀମନ୍ଦିର କାର୍ଯ୍ୟାଳୟକୁ ଅଣାଯାଇଥିଲା । ରୂପା ଅଳଙ୍କାର ମଧ୍ୟରେ ହଡପ ବଟା, ରୂପା ଥାଳିଆ, କରମଙ୍ଗିଆ ଥାଳିଆ, ଫିଛା ଫନ୍ଦଭଙ୍ଗା କୁଣ୍ଡ, ଚାମର ବେଣ୍ଟ, ଗିଲାସ, ରୂପା ଛତି, ରୂପା କିରୀଟୀ, ଅତର ଦାନି, ମଗର ମୁହଁ, କରମଙ୍ଗିଆ କଳସ ଇତ୍ୟାଦି ଅନ୍ତର୍ଭୁକ୍ତ ଥିଲା । ମୋଟ୍ ତିନିହଜାର ତିନି ଶହ ସଇଁ ତିରିଶ ଭରି ଦଶଅଣା ଓଜନର ରୂପା ଉପରଲିଖିତ କାର୍ଯ୍ୟ ନିମିତ୍ତ ଭିତର ରତ୍ନ ଭଣ୍ଡାରରୁ କଢ଼ା ଯାଇଥିଲା । ସେତେବେଳେ ପ୍ରଶାସକ କାଳି କୁମାର ରଥ, ତତ୍କାଳୀନ ଶିକ୍ଷା ଓ ଯୁବକଲ୍ୟାଣ ବିଭାଗ ମନ୍ତ୍ରୀ ଶ୍ରୀ ଗଙ୍ଗାଧର ମହାପାତ୍ର, ଆଇନ୍ ସଚିବ ଶ୍ରୀ କୃଷ୍ଣ ପ୍ରସାଦ ମହାପାତ୍ର, ପୁରୀ ଜିଲ୍ଲାପାଳ ଶ୍ରୀ ନରେନ୍ଦ୍ର କୁମାର ମହାପାତ୍ର, ସ୍ପେଶାଲ ଅଫିସର ଶ୍ରୀ ପର୍ଶୁରାମ କର, ସହକାରୀ ପ୍ରଶାସକ ସହଦେବ ପାତ୍ର, ରବୀନ୍ଦ୍ର ନାରାୟଣ ମିଶ୍ର, ଗଜପତି ମହାରାଜାଙ୍କ ପ୍ରତିନିଧି ରମେଶ ଚନ୍ଦ୍ର ମିଶ୍ର, ଦେଉଳକରଣ ରାଧାକୃଷ୍ଣ ସାମନ୍ତରାୟ, ତଢ଼ଉକରଣ ଶ୍ରୀ ସୁଦର୍ଶନ ପଟ୍ଟନାୟକ, ଭଣ୍ଡାର ମେକାପ ଶ୍ରୀ ନୀଳକଣ୍ଠ ମେକାପ, ପରିଚାଳନା କମିଟି ସଦସ୍ୟ ନରସିଂହ ଦାସ ମହାପାତ୍ର ପ୍ରମୁଖ ଉପସ୍ଥିତ ଥିଲେ ।

ଶ୍ରୀମନ୍ଦିର ରତ୍ନ ଭଣ୍ଡାର ରେଜିଷ୍ଟରରୁ ମିଳୁଥିବା ସୂଚନା ମୁତାବକ ବଡ ଠାକୁର (ଶ୍ରୀ ବଳଭଦ୍ର)ଙ୍କ ଶିରରେ ମଣ୍ଡିତ ହୋଇଥିବା ଦୁର୍ଲ୍ଲଭ ରତ୍ନ ଚିତା ବ୍ୟବହାରଯୋଗ୍ୟ ନ ହେବାରୁ ଓଡ଼ିଶା ସରକାରଙ୍କ ବିଧି ବିଭାଗ ପତ୍ର ୮୭୬୭ ତା ୧୨.୭.୮୫ ସଂଖ୍ୟକ ଆଦେଶାନୁଯାୟୀ ତା ୧୪.୭.୧୯୮୫ରେ ଭିତର ରତ୍ନ ଭଣ୍ଡାର ଖୋଲାଯାଇ ଏକ ରତ୍ନଜଡ଼ିତ ଚିତାକୁ କଢାଯାଇ ବାହାର ଭଣ୍ଡାରରେ ରଖା ଯାଇଥିଲା । ୧୯୭୮ ମସିହା ରତ୍ନ ଭଣ୍ଡାର ତାଲିକାର କ୍ରମିକ ସଂଖ୍ୟା ୧୬୪ରେ ଏହି ଚିତାର ସବିଶେଷ ବର୍ଣ୍ଣନା କରାଯାଇଅଛି । ଚିତାର ଓଜନ ଥିଲା ୧୯ ଭରି ଦୁଇ ଅଣା ଦୁଇ ପଇସା । ଚିତାରେ ବିଭିନ୍ନ କିସମର ହୀରା, ମାଣିକ୍ୟ, ମରକତ ଇତ୍ୟାଦି ଦୁର୍ଲ୍ଲଭ ରତ୍ନମାନ ରହିଥିଲା । ରତ୍ନ ଭଣ୍ଡାର ଖୋଲାଯିବା ସମୟରେ ତତ୍କାଳୀନ ବିଧି ସଚେତକ ବିଶ୍ୱନାଥ ମିଶ୍ର, ଜିଲ୍ଲାପାଳ, ପୁରୀଙ୍କ ପ୍ରତିନିଧି ଏ.ଡି.ଏମ ମଦନ ମୋହନ ନନ୍ଦ, ଡ଼ି.ଏସ.ପି (ଶ୍ରୀମନ୍ଦିର) ପଦ୍ମ ଚରଣ ମିଶ୍ର, ଶ୍ରୀମନ୍ଦିର ପ୍ରଶାସକ ଗୁରୁ ପ୍ରସାଦ ମହାନ୍ତି, ପରିଚାଳନା କମିଟି ସଦସ୍ୟ ନରସିଂହ ଦାସ ମହାପାତ୍ର, ସହକାରୀ ପ୍ରଶାସକ ରବୀନ୍ଦ୍ର ନାରାୟଣ ମିଶ୍ର, ଭିତରଛ ମଧୁସୂଦନ

ମହାପାତ୍ର, ଗଜପତିଙ୍କ ପ୍ରତିନିଧି କୈଳାସ ଚନ୍ଦ୍ର ମହାନ୍ତି, ତଢ଼ାଉକରଣ ଲକ୍ଷ୍ମୀ ନାରାୟଣ ପଟ୍ଟନାୟକ, ଦେଉଳକରଣ ରାଧାମୋହନ ରାଉତରା, ଭଣ୍ଡାର ମେକାପ ନୀଳକଣ୍ଠ ମେକାପ, ପୋଦାର ପୂର୍ଣ୍ଣଚନ୍ଦ୍ର ସାହୁ ପ୍ରମୁଖ ଉପସ୍ଥିତ ଥିଲେ ।

ଶ୍ରୀମନ୍ଦିର ରତ୍ନ ଭଣ୍ଡାରର ସ୍ଥିତି ଓ ସୁରକ୍ଷାର ଯାଞ୍ଚ ନିମିତ୍ତ ହାଇକୋର୍ଟଙ୍କ ନିର୍ଦ୍ଦେଶମତେ ଶ୍ରୀମନ୍ଦିର ପରିଚାଳନା କମିଟିର ରତ୍ନ ଭଣ୍ଡାର ସବ୍‌କମିଟି, ଏ.ଏସ.ଆଇର ବିଶେଷଜ୍ଞ, ସେବାୟତ ପ୍ରତିନିଧି, ମୁଖ୍ୟ ପ୍ରଶାସକ, ଜିଲ୍ଲାପାଳ, ପୁରୀ, ଏସ୍.ପି, ପୁରୀ ପ୍ରମୁଖ ଏକ ୧୭ ଜଣିଆ କମିଟି ୨୦୧୮ ମସିହା ମାର୍ଚ୍ଚ ୨୮ ତାରିଖ ବୁଧବାର ମଧ୍ୟାହ୍ନ ସମୟରେ ବାହାର ରତ୍ନ ଭଣ୍ଡାରର ଚଟାଣ, କାନ୍ଥ, ଛାତର ଯାଞ୍ଚ କରିଥିଲେ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଶ୍ରୀଜଗନ୍ନାଥ ମନ୍ଦିର ଆଇନ୍ ୧୯୫୫ର ଧାରା ୧୫ ଅନୁଯାୟୀ ଶ୍ରୀମନ୍ଦିର ରତ୍ନ ଭଣ୍ଡାରର ସୁରକ୍ଷା ଓ ତତ୍ତ୍ୱାବଧାନ ଦାୟିତ୍ୱ ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା କମିଟି ଉପରେ ନ୍ୟସ୍ତ । ଶ୍ରୀମନ୍ଦିର ଆଇନ୍‌ର ବିଧି ବ୍ୟବସ୍ଥା ଅନୁଯାୟୀ ଯେତେବେଳେ ଭିତର ଭଣ୍ଡାର ଖୋଲାଯିବ ସେହି ସମୟରେ ଶ୍ରୀମନ୍ଦିର ପରିଚାଳନା କମିଟିର ନିଷ୍ପତ୍ତିକୁ ରାଜ୍ୟ ସରକାରଙ୍କ ବିଧି ବିଭାଗ ଅନୁମୋଦନ ପୂର୍ବକ ସ୍ୱୀକୃତି ବା ଅନୁମତି ଦେବା ଏକାନ୍ତ ଆବଶ୍ୟକ ଅଟେ । ଶ୍ରୀମନ୍ଦିର ରତ୍ନ ଭଣ୍ଡାର ରେଜିଷ୍ଟରରୁ ମିଳୁଥିବା ତଥ୍ୟ ଅନୁଯାୟୀ ଭିତର ରତ୍ନ ଭଣ୍ଡାର ୧୯୮୫ ମସିହା ଜୁଲାଇ ୧୪ ତାରିଖ ଦିନ ଶେଷ ଥର ପାଇଁ ଖୋଲାଯାଇଥିଲା । ଭାରତର ଏକ ପ୍ରମୁଖ ଧାର୍ମିକ ଅନୁଷ୍ଠାନ ଶ୍ରୀଜଗନ୍ନାଥ ମନ୍ଦିର, ମହାପ୍ରଭୁଙ୍କ ଏହି ରତ୍ନଭଣ୍ଡାର ସୁରକ୍ଷିତ ରହିଛି ବୋଲି ଶ୍ରୀମନ୍ଦିର ପରିଚାଳନା କମିଟି ବୈଠକରେ ଆଲୋଚିତ ହୋଇଥିବା ଜଣାଯାଏ ।

ଗବେଷକ, ଶ୍ରୀଜଗନ୍ନାଥ ସଂସ୍କୃତି
ଘର.ନଂ ଏ/୩, ହାତୀଶାଳା,
ଶ୍ରୀଗୁଣ୍ଡିଚା ଅତିଥି ବିହାର, ପୁରୀ–୨



# ପ୍ରାଚୀନ ଓଡ଼ିଶାର ନୌକା ନିର୍ମାଣ : ଏକ ବିହଙ୍ଗାବଲୋକନ

**ପୂର୍ଣ୍ଣଚନ୍ଦ୍ର ଦାସ**

ସମୁଦ୍ର ଓ ସାମୁଦ୍ରିକ ବାଣିଜ୍ୟ ସହିତ ଓଡ଼ିଆ ଜାତିର ସମ୍ପର୍କ ଅତି ପ୍ରାଚୀନ ଆଉ ନିବିଡ । ଓଡ଼ିଆ ଜାତିର ଯୁଦ୍ଧାନୁରାଗ, ସମର ନୈପୁଣ୍ୟ ଓ ଦୁଃସାହସିକ ସମୁଦ୍ର ଯାତ୍ରାକୁ ଲକ୍ଷ୍ୟ କରି ପ୍ରାଚୀନ ସଂସ୍କୃତ ସାହିତ୍ୟରେ 'କଳିଙ୍ଗା ସାହସିକାଃ' ବିଶେଷଣଟି ସଂଯୋଜିତ ହୋଇଥିଲା ବୋଲି ଜଣାଯାଏ । ମହାକବି କାଳିଦାସ ତାଙ୍କର ପ୍ରସିଦ୍ଧ ସଂସ୍କୃତ କାବ୍ୟରେ କଳିଙ୍ଗର ରାଜାଙ୍କୁ 'ମହୋଦଧିପତିଃ' ବୋଲି ଉଲ୍ଲେଖ କରିଛନ୍ତି । ଆହୁରି ମଧ୍ୟ ଖ୍ରୀଷ୍ଟାବ୍ଦ ଷଷ୍ଠ ଶତାବ୍ଦୀରେ ରଚିତ ମହାଜାନି ବୌଦ୍ଧମାନଙ୍କ ଧର୍ମଗ୍ରନ୍ଥ 'ଆର୍ଯ୍ୟମଞ୍ଜୁଶ୍ରୀ ମୂଳକଳ୍ପ'ରେ କଳିଙ୍ଗ ପାଶ୍ୱବର୍ତ୍ତୀ ସମୁଦ୍ର ପୂର୍ବ ମହୋଦଧି ବା ଆଜିକାର ବଙ୍ଗୋପ ସାଗରକୁ କଳିଙ୍ଗ ସାଗର ବୋଲି ଅଭିହିତ କରାଯାଉଥିଲା ।

ପ୍ରାଚୀନ ଓଡିଶାର ନୌବାଣିଜ୍ୟ ଓ ଦରିଆପାରି ଉପନିବେଶ ବିଷୟରେ ଇତିହାସ ସଦା ପ୍ରଗଳ୍ଭ । ମନ୍ଦିର ଗାତ୍ରର କଳାକୃତି, ଶିଳାଲିପି ପ୍ରାଚୀନ ଓ ମଧ୍ୟଯୁଗୀୟ ଅଭିଲେଖଗୁଡିକରେ, ପ୍ରାଚୀନ ସାହିତ୍ୟ, ଭ୍ରମଣ ବୃତ୍ତାନ୍ତମାନଙ୍କରେ ଓଡ଼ିଆ ଜାତିର ଦୁଃସାହସିକ ସମୁଦ୍ରଯାତ୍ରା ଓ ଦରିଆପାରି ବାଣିଜ୍ୟ ବିଷୟରେ ଅନେକ ତଥ୍ୟ ଲିପିବଦ୍ଧ ହୋଇ ରହିଛି କାଳ କାଳ ଧରି । ଖ୍ରୀଷ୍ଟପୂର୍ବ ପଞ୍ଚମ-ଷଷ୍ଠ ଶତାବ୍ଦୀରେ ଦରିଆପାରି ଦେଶମାନଙ୍କ ସହିତ କଳିଙ୍ଗବାସୀଙ୍କର ସାମୁଦ୍ରିକ ବାଣିଜ୍ୟ ସମ୍ପର୍କ ରହିଥିଲା ବୋଲି ବୌଦ୍ଧ ଧର୍ମଯାଜକ ବିଜ୍ଞ ଦତ୍ତଙ୍କ ଦ୍ୱାରା ଲିଖିତ 'ବୁଦ୍ଧ ଜୀବନ ଚରିତ'ରେ ପ୍ରାଚୀନ ଓଡିଶାର ବନ୍ଦର ସମ୍ପର୍କରେ ଉଲ୍ଲେଖ ମିଳେ । ଗୌତମବୁଦ୍ଧଙ୍କ ଜୀବନୀରୁ ଜଣାଯାଏ ତପସୁ ଆଉ ଭଲ୍ଲିକ ନାମକ ଦୁଇଭ୍ରାତା ବ୍ରହ୍ମଦେଶରୁ ବଡ ବଡ ବୋଇତରେ ପାଞ୍ଚଶତ ଶଗଡରେ ବୋଝେଇ ହେବା ଭଳି ପଣ୍ୟଦ୍ରବ୍ୟ ବହନ କରି ଉତ୍ତର କଳିଙ୍ଗର ଆଡଜେଇତା ନାମକ ବନ୍ଦରରେ ଓହ୍ଲାଇ ସେଠାରୁ ସ୍ଥଳପଥରେ ମଗଧକୁ ଯାଇଥିଲେ । ଏଥିରୁ ଖ୍ରୀଷ୍ଟପୂର୍ବ କାଳରେ ପ୍ରାଚୀନ କଳିଙ୍ଗ ପୋତଗୁଡିକର ବିଶାଳତା ସହଜରେ ଅନୁମାନ କରିହୁଏ ।

ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀର ଅନ୍ତିମ ଭାଗରେ ମଗଧ ଶାସକ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ମନ୍ତ୍ରୀ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରୁ ପ୍ରାଚୀନ ଉତ୍କଳର ନୌବାଣିଜ୍ୟ ସମ୍ପର୍କରେ ସୂଚନା ମିଳେ । ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ପୌତ୍ର ଅଶୋକଙ୍କ ଶାସନ କାଳରେ କଳିଙ୍ଗର ପୋତଗୁଡିକୁ 'ସାମୁଦ୍ରିକ ସର୍ପ' କୁହାଯାଉଥିଲା ବୋଲି ଇତିହାସରୁ ଜଣାପଡେ । କଳିଙ୍ଗ ସାଗରରେ ଓଡିଆ ବଣିକମାନଙ୍କର ଅଗାଧ ପ୍ରବେଶ ଏବଂ ଆଧିପତ୍ୟର ସ୍ୱାଭାବିକତା ନଷ୍ଟ କରି ଏହାର ପୋତାଶ୍ରୟମାନଙ୍କୁ କରାୟତ କରି ମଗଧର ସାମୁଦ୍ରିକ ବାଣିଜ୍ୟକୁ ବୃଦ୍ଧି କରିବା ପାଇଁ ଅଶୋକ କଳିଙ୍ଗ ଆକ୍ରମଣ କରିଥିଲେ ବୋଲି କେତେକ ଐତିହାସିକ ମତପୋଷଣ କରିଛନ୍ତି ।

ଗ୍ରୀକ୍ ଜ୍ୟୋତିର୍ବିଜ୍ଞାନୀ ଟଲେମୀ ବିଶ୍ୱ ଭୂଗୋଳ ଲେଖିବାକୁ ଯାଇ କଳିଙ୍ଗ ଦେଶର ବନ୍ଦରମାନଙ୍କ ତାଲିକା ପ୍ରସ୍ତୁତ କରିଥିଲେ । ସେଥିମଧ୍ୟରେ ମନ୍ନଦ, ପାଲୁର, ନୈନାରେନା, କଟିକଦମ, କନାନ୍ତର ଏବଂ ମାବୈର ନଦୀମୁହାଣ ଆଦି ପ୍ରଧାନ ଥିଲା ବୋଲି ଜଣାପଡେ । ଏତଦ୍‌ବ୍ୟତୀତ ଗଙ୍ଗା ନଦୀର ମୁହାଣଠାରୁ ଗୋଦାବରୀ ନଦୀ ମୁହାଣ ପର୍ଯ୍ୟନ୍ତ କଳିଙ୍ଗ ସାମ୍ରାଜ୍ୟର କଳିଙ୍ଗ ସାଗରରେ

ବହୁ ପ୍ରାକୃତିକ ବନ୍ଦର ରହିଥିଲା । ସେହିସବୁ ବନ୍ଦରମାନଙ୍କ ମଧ୍ୟରେ ତାମ୍ରଲିପ୍ତ, ଅଜିତା, ପିପିଲି, ଦଶାର୍ଣ୍ଣ, ଚେଲିତୋଳ, ଦନ୍ତପୁର, ମାଣିକପାଟଣା ପାଲୁର, କୋଣାଗାର, ଆଫିତେରିଆନ, ଗଞ୍ଜାମ ପ୍ରଭୃତି ତତ୍କାଳୀନ କଳିଙ୍ଗ ସାମ୍ରାଜ୍ୟର ଅନ୍ତବାଣିଜ୍ୟ ଓ ବହିଃବାଣିଜ୍ୟ ପାଇଁ ଖ୍ୟାତିଲାଭ କରିଥିଲା । କୋଶଳ ଅଞ୍ଚଳରୁ ନଦୀ ପଥରେ ଅନ୍ତଃବାଣିଜ୍ୟ ଦ୍ୱାରା ବିଭିନ୍ନ ଦ୍ରବ୍ୟସବୁ ସଂଗୃହିତ ହେଉଥିଲା । ତାମ୍ରଲିପ୍ତଠାରୁ ଦାମୋଦର, ରୁପନାରାୟଣ ଓ ଗଙ୍ଗାନଦୀ ଦେଇ ନୌକା ସାହାଯ୍ୟରେ ହସ୍ତିନାପୁର ପର୍ଯ୍ୟନ୍ତ ବାଣିଜ୍ୟିକ କାରବାର ହେଉଥିଲା । ଦିନେ ସଂସ୍କୃତ ସାହିତ୍ୟରେ ପରିକଳ୍ପିତ ନବଦ୍ୱୀପମାନଙ୍କ ବ୍ୟତୀତ ସିଂହଳ, ବ୍ରହ୍ମଦେଶ, ଜାଭା, ବାଲି, ସୁମାତ୍ରା, ବୋର୍ଣ୍ଣିଓ, ମାଳୟ, ଚୀନ, ରୋମ ଓ ପାରସ୍ୟ ସହିତ ବାଣିଜ୍ୟ କାରବାର କରି ନିଜର କଳା ସଂସ୍କୃତି, ସ୍ଥାପତ୍ୟ ଓ ବାଣିଜ୍ୟିକ ଉପନିବେଶ ସ୍ଥାପନ କରି ପ୍ରାଚୀନ ଭାରତର ସଭ୍ୟ ଜାତି ବୋଲି ପରିଗଣିତ ହେଉଥିଲେ । ସେଥିପାଇଁ ଦ୍ୱୀପାନ୍ତର ଦେଶଗୁଡ଼ିକ କଳିଙ୍ଗର ସାଧବମାନଙ୍କୁ ଦେବଦୂତର ପଦମର୍ଯ୍ୟାଦା ଦେଇଥିଲା ।

ପ୍ରାଚୀନ କାଳରୁ ଦେଖାଯାଏ ଯେଉଁ ଦେଶ ସମୁଦ୍ର ବାଣିଜ୍ୟରେ ଯେତେ ଉନ୍ନତ ସେହି ଦେଶ ସେତେ ସମୃଦ୍ଧ । ପ୍ରାଚୀନ ଶାସ୍ତ୍ରପୁରାଣ, ରାମାୟଣ, ମହାଭାରତ, ବୌଦ୍ଧଗ୍ରନ୍ଥ ଓ ଶିଳାଲିପିଗୁଡ଼ିକରୁ ଜଣାଯାଏ କଳିଙ୍ଗର ସୀମା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସମୟାନୁକ୍ରମେ ଏହା ବଢ଼ିବା କମିବା ହୋଇ ବର୍ତ୍ତମାନ ଏହାର ସାମୁଦ୍ରିକ ସୀମା ମାତ୍ର ୪୮୦ କଲୋମିଟର ଯାହାକି ଅତୀତ ଦିନର ଏକ କ୍ଷୁଦ୍ର କଳେବର ।

ଯେଉଁ ଓଡ଼ିଆ ବଣିକମାନେ ଅତୀତରେ ଓଡ଼ିଶାର ପାଟବସ୍ତ୍ର, ସୂକ୍ଷ୍ମ ପାଟବସ୍ତ୍ର, ହାତୀ ଦାନ୍ତରେ ନିର୍ମିତ କାରୁକାର୍ଯ୍ୟପୂର୍ଣ୍ଣ ବିଭିନ୍ନ ଦ୍ରବ୍ୟ, ପାଷାଣ ମୂର୍ତ୍ତି, ପାନମସଲା, ସୂକ୍ଷ୍ମ ରେଶମପାଟ, ସୌଖୀନ ଶାଢ଼ୀ, ସୁଗନ୍ଧ ଦ୍ରବ୍ୟ, ଧାନ ଚାଉଳ, ପାନ, ଗୁଆ, ନଡ଼ିଆ, ହଳଦୀ, ଗୁଡ଼, ଲୁଣ, ତୈଳ, ଶଙ୍ଖ, ଚାନ୍ଦୁଆ ଇତ୍ୟାଦି ଦ୍ରବ୍ୟମାନ ବୋଇତରେ ନେଇ ବିଦେଶରେ ବାଣିଜ୍ୟ କରିବା ସହିତ ନିଜ ଦେଶକୁ ମଣି, ମାଣିକ୍ୟ, ସୁନାରୁପା, ହୀରା, ନୀଳା, ଚନ୍ଦନକାଠ, ଅଗରୁ, କସ୍ତୁରୀ, କର୍ପୂର, ସିନ୍ଦୂର, ଲବଙ୍ଗ, ଅଳେଇଚ, ସୈନ୍ଧବ ଲବଣ, ହାତୀଦାନ୍ତ, ବାଘନଖ, ହରିଣପୁଚ୍ଛ ନିର୍ମିତ ଚାମକର, ଶାଳଗ୍ରାମ ଶିଳା, ଦୁର୍ମୂଲ୍ୟ ପଥର ଇତ୍ୟାଦି ଅଶେଷ ଧନରତ୍ନ ଆଣି ଓଡ଼ିଶାର ଅର୍ଥନୈତିକ ମାନଦଣ୍ଡକୁ ବୃଦ୍ଧି କରିବାରେ ସମର୍ଥ ହୋଇଥିଲେ । ଏଥିସହିତ କଳିଙ୍ଗର ଅଧିବାସୀମାନେ ଏକ ସୁ–ନୌବାହି ଜାତି ଭାବେ ସାମୁଦ୍ରିକ ବାଣିଜ୍ୟ ଓ ସମୁଦ୍ର ଯାତ୍ରା କ୍ଷେତ୍ରରେ ଯେଉଁ ପାରଦର୍ଶିତା ଲାଭ କରିଥିଲେ ତାହା ଭାରତ ଇତିହାସରେ ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ ସୃଷ୍ଟି କରିବାରେ ସମର୍ଥ ହୋଇଥିଲା ।

ଯାହାକୁ ପାଥେୟ କରି କଳିଙ୍ଗର ଇତିହାସ, ସାଂସ୍କୃତିକ, ଅର୍ଥନୈତିକ, ବାଣିଜ୍ୟିକ ସମ୍ପର୍କ ପ୍ଲିନୀଙ୍କ ନ୍ୟାଚୁରାଲ ହିଷ୍ଟ୍ରି, ଟଲେମୀଙ୍କ ଭୂଗୋଳ ପେରିପ୍ଲସ, ବୌଦ୍ଧଗ୍ରନ୍ଥ ଦାଠା ଧାତୁବଂଶ, ଲଳିତବିସ୍ତାର, ଜାତକ କଥା, ଚୀନ ପରିବ୍ରାଜକ ହୁଏନସାଂଙ୍କ ବିବରଣୀ, କୌଟିଲ୍ୟଙ୍କ ଅର୍ଥାତ୍ କାଳିଦାସଙ୍କ ରଘୁବଂଶ, ବୃହତ୍‌କଥା, ଶୁକ୍ରନୀତି, ମୌତାବରୁଣୀ, କଠୋସଂହିତା, ବୃକ୍ଷ ଆୟୁର୍ବେଦ ସଂସ୍କୃତ ନାଟକ କୌମୁଦୀ ମହୋତ୍ସବ ବହୁ ଲୋକକଥା, ଲୋକଗୀତ, ଲୋକକଳାରେ ସଦା ଜୀବନ୍ତ ସେହି ପ୍ରାଚୀନ କଳିଙ୍ଗର ପୋତଗୁଡ଼ିକ ବିଷୟରେ ଜାଣିବାକୁ ପ୍ରତ୍ୟେକଟି ଅନୁସନ୍ଧିତ୍ସୁ ମଣିଷର ମନରେ ଓତପ୍ରୋତ ଭାବେ ଇଚ୍ଛାଟିଏ ଜନ୍ମ ହୁଏ । ମନ ରାଇଜର କେଉଁ ଏକ ଅଦୃଶ୍ୟ କୋଣରେ ବୋଇତଟିରେ କଳ୍ପନା ଉଙ୍କିମାରେ ଅହରହ ।

ପୃଥିବୀର ତିନିଭାଗ ଜଳ ଏବଂ ନଦୀ ଜଳଚକ୍ରର ଏକ ଅଂଶ । ନଦୀ ହେଉଛି ଏକ ସ୍ୱତଃ ପ୍ରବାହିତ ଜଳବାହକ । ନଦୀ ମାନବ ସଭ୍ୟତାର ଜନ୍ମଦାତ୍ରୀ ହେବା ସଙ୍ଗେ ସଙ୍ଗେ ତା'ର ଗମନାଗମନର ଏକ ପ୍ରମୁଖ ମାଧ୍ୟମ ଅଟେ । ପ୍ରାଚୀନ କାଳରେ ସହଜ ଓ ସରଳ ଉପାୟରେ ନାଳ, ନଦୀ ପାର ହେବାର ମାଧ୍ୟମ ଥିଲା ଭାସମାନ ହାଲୁକା କାଠ ଗଣ୍ଡିଟିଏ । ଯା'ର ଉପରେ ଆଶ୍ରା କରି ମଣିଷ ଏ କୂଳରୁ ସେ କୂଳକୁ ସହଜରେ ପାରି ହେଉଥିଲା । ପରେ କିନ୍ତୁ ଏଥିରେ ଉନ୍ନତି ପରିଲକ୍ଷିତ ହୋଇ କାଠୁଆ, ପଟୁଆ, ଭେଳା, ତରୀ, ବୋଇତ, ପୋତ ରୂପରେ ଏବଂ ପରବର୍ତ୍ତୀ

କାଳରେ ଦୂର ଜଳଯାତ୍ରା ଓ ଅଧିକ ଯାତ୍ରୀ ପରିବହନ କରିବା ସଙ୍ଗେ ସଙ୍ଗେ ପଣ୍ୟଦ୍ରବ୍ୟ ବହନ କରି ପାରୁଥିବା ବଡ ବଡ ପୋତ ନିର୍ମାଣ କରାଗଲା ଏବଂ ଏହାଦ୍ୱାରା ମାନବ ଜୀବନକୁ ଅଧିକ ସ୍ୱଚ୍ଛନ୍ଦ କରିବାର ମାର୍ଗ ପ୍ରସ୍ତୁତ ହେଲା ।

କ୍ରମଶଃ ଏହା ଆଉ ଜନଜୀବନରେ ସୀମିତ ନ ହୋଇ କାବ୍ୟକବିତା ବିଭିନ୍ନ ଶାସ୍ତ୍ରମାନଙ୍କରେ ନୌକା ଓ ଏହାର ନିର୍ମାଣ କୌଶଳ ସମ୍ପର୍କରେ ବିସ୍ତୃତ ଆଲୋଚନା କରାଗଲା । ଭାରତୀୟ ପ୍ରାଚୀନ ସାହିତ୍ୟ ଯଥା– ରାମାୟଣ, ମହାଭାରତ, ବରାହପୁରାଣ, ଆଚାର୍ଯ୍ୟ ଦଣ୍ଡୀଙ୍କ 'ଦଶକୁମାର ଚରିତ', କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର, ସୋମଦେବଙ୍କ 'କଥା ସରିତ ସାଗର', ଧନପାଳଙ୍କ 'ତିକଳ ମଞ୍ଜରୀ' ଆଦି ଗ୍ରନ୍ଥରେ ମହାମନୀଷୀମାନେ ନୌକା ଓ ଏହାର ନିର୍ମାଣ କଳାକୌଶଳ ଉପରେ ବିସ୍ତୃତ ଆଲୋଚନା କରିଛନ୍ତି ।

ପ୍ରାଚୀନ କଳିଙ୍ଗ ସାମ୍ରାଜ୍ୟର ଏକ ଦିଗନ୍ତ ବିସ୍ତାରୀ ବିସ୍ତୀର୍ଣ୍ଣ ସମୁଦ୍ର ଉପକୂଳ ଥିଲା । କଳିଙ୍ଗର ଅଧିବାସୀମାନେ ସେମାନଙ୍କ ଅସୀମ ଶକ୍ତି, ସାହସ, ସାମର୍ଥ୍ୟ ଓ ବିଶାଳ ପୋତ ନିର୍ମାଣ ଯୋଗୁଁ ଅକାତକାତ ଜଳରାଶି ବକ୍ଷରେ ସେମାନଙ୍କ ନୌଚାଳନାର ଦକ୍ଷତା ଓ ପରାକ୍ରମ ଭାରତର ଅନ୍ୟ ରାଜ୍ୟର ବଣିକମାନଙ୍କ ପାଖରେ ଦେଖିବାକୁ ମିଳି ନଥିଲା । କଳିଙ୍ଗର ବଣିକମାନେ ବ୍ୟବହାର କରୁଥିବା ବୋଇତମାନଙ୍କର ରୂପ ଓ ଆକାର କିପରି ଥିଲା, ତାହା ଭୋଜ ମହାରାଜଙ୍କ ଦ୍ୱାରା ଲିଖିତ ସଂସ୍କୃତ ଗ୍ରନ୍ଥ 'ଯୁକ୍ତି କଳ୍ପତରୁ'ରୁ ଜଣାଯାଏ । ଉକ୍ତ ଗ୍ରନ୍ଥରେ କଳିଙ୍ଗର ପୋତଗୁଡିକର ଆକାର, ପ୍ରକାର, ଲମ୍ବା, ଚଉଡା, ଗଭୀରତା ଓ ଉଚ୍ଚତାର ବିଶଦ ବିବରଣୀ ପ୍ରଦାନ କରାଯାଇଛି ।

ନୌକାକୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରାଯାଇଛି, ଯଥା– ସାମାନ୍ୟ ଓ ବିଶେଷ । ସାମାନ୍ୟ ଶ୍ରେଣୀୟ ନୌକାକୁ ପୁନଶ୍ଚ ଦଶ ଭାଗରେ ବିଭକ୍ତ କରାଯାଇଛି, ଯଥା –

କ୍ଷୁଦ୍ରାର୍ଥ ମଧ୍ୟମା ଭୀମା ଚପଳା ପଟଳା ଭୟା
ଦୀର୍ଘା ପତ୍ରପୁଟା ଚୈବ ଗର୍ଭୀ ମଧ୍ୟମା ତଥା ।

ସାମାନ୍ୟ ଶ୍ରେଣୀୟ ନୌକାଗୁଡିକୁ ମୁଖ୍ୟତଃ ନଦୀମାର୍ଗମାନଙ୍କରେ ଅନ୍ତଃବାଣିଜ୍ୟ କରିବା ପାଇଁ ବ୍ୟବହାର କରାଯାଏ ।

ଠିକ୍ ସେହିପରି 'ବିଶେଷ' ଶ୍ରେଣୀର ନୌକାକୁ ଦୁଇ ଭାଗରେ ବିଭକ୍ତ କରାଯାଇଛି । ଯଥା (କ) ଦୀର୍ଘା ଓ (ଖ) ଉନ୍ନତ ଭାଗରେ ବିଭକ୍ତ କରି ପୁଣି ଦୀର୍ଘାକୁ ଏଗାର ଭାଗରେ ଏବଂ ଉନ୍ନତକୁ ପାଞ୍ଚ ଭାଗରେ ବିଭକ୍ତ କରାଯାଇଛି ।

ଉନ୍ନତ ଶ୍ରେଣୀୟ ନାବଗୁଡିକ ବହିଃବାଣିଜ୍ୟ ପାଇଁ ଅଭିପ୍ରେତ ଥିଲା ବୋଲି ଜଣାଯାଏ । ସେହିପରି ଜାହାଜଗୁଡିକୁ ଏକରୁ ଚାରି ମାସ୍ତୁଲ ଯୁକ୍ତ ଥିଲା । ଏକ ମାସ୍ତୁଲ ଥିବା ବୋଇତକୁ ନୀଳରଙ୍ଗ, ଦୁଇ ମାସ୍ତୁଲ ଥିବା ବୋଇତକୁ ହଳଦିଆ ରଙ୍ଗ, ତିନି ମାସ୍ତୁଲ ଯୁକ୍ତ ବୋଇତକୁ ଲାଲ ରଙ୍ଗ ଏବଂ ଚାରି ମାସ୍ତୁଲ ଥିବା ବୋଇତକୁ ଧଳାରଙ୍ଗରେ ରଙ୍ଗାଇବା ପାଇଁ ଶାସ୍ତ୍ର ନିର୍ଦ୍ଦେଶ ଥିଲା । ବୋଇତର ଅଗ୍ରଭାଗ (ମଙ୍ଗ)କୁ ସିଂହମୁଖ, ବ୍ୟାଘ୍ରମୁଖ, ମହିଷମୁଖ, ହସ୍ତୀମୁଖ, ପକ୍ଷୀମୁଖ, ବେଙ୍ଗମୁଖ, ନାଗମୁଖ ଓ ମନୁଷ୍ୟ ମୁଖାକୃତି କରାଯାଉଥିଲା । କକ୍ଷ ନିର୍ମାଣ ଦୃଷ୍ଟିରୁ ସର୍ବମନ୍ଦିରା, ମଧ୍ୟମନ୍ଦିରା ଓ ଅଗ୍ରମନ୍ଦିରା ରୂପରେ ବୋଇତରେ କକ୍ଷଗୁଡିକର ଶ୍ରେଣୀ ବିଭାଜନ କରାଯାଇଥିଲା । ସର୍ବମନ୍ଦିରାରେ ରାଜାଙ୍କର କୋଷ, ଅଶ୍ୱ, ରାଣୀ ଏବଂ ରାଜକୀୟ କର୍ମଚାରୀମାନେ ରହୁଥିଲେ । ମଧ୍ୟମନ୍ଦିରାରେ ବୋଇତର କପ୍ତାନ ଏବଂ ଏହା ରାଜାଙ୍କର ବର୍ଷା ବିଳାସ ପାଇଁ ଉଦ୍ଦିଷ୍ଟ ଥିଲା । ଅଗ୍ର ମନ୍ଦିରାଟି ସୈନ୍ୟରହଣି, କ୍ଷୁଦାସ୍ତ୍ର ଏବଂ ରାଜାଙ୍କର ଗ୍ରୀଷ୍ମ ଓ ଶୀତ ଋତୁରେ ରହିବା ପାଇଁ ଉଦ୍ଦିଷ୍ଟ ଥିଲା ।

'ବୃକ୍ଷ ଆୟୁର୍ବେଦ' ଗ୍ରନ୍ଥରେ ନୌକା ନିର୍ମାଣ ପାଇଁ ବ୍ୟବହୃତ ବିଭିନ୍ନ ବୃକ୍ଷର କାଠର ଜାତି ନିରୂପଣ କରାଯାଇ ଏହାକୁ ବ୍ରାହ୍ମଣ, କ୍ଷତ୍ରୀୟ, ବୈଶ୍ୟ ଓ ଶୂଦ୍ରରେ ବିଭକ୍ତ କରାଯାଇଛି । ଯେଉଁ ବୃକ୍ଷର କାଠ ହାଲୁକା ଓ କୋମଳ

ତାହା ବ୍ରାହ୍ମଣ ଜାତିର କାଠ ବୋଲି ଆଖ୍ୟା ଦିଆଯାଇଛି । ସେମିତି ହାଲୁକା ଓ କଠିନ କାଠ କ୍ଷତ୍ରୀୟ ଜାତିର । ଏଥିରେ ନିର୍ମିତ ନୌକା ସୁଖ ସମ୍ପଦକୁ ବୃଦ୍ଧିକାରୀ ବୋଲି କୁହାଯାଇଛି । ସେହିପରି ବୈଶ୍ୟ ଜାତିର କାଠ କୋମଳ ଓ ଓଜନିଆ, ଶୁଦ୍ର ଜାତିର କାଠ ଓଜନିଆ ଓ ଚେମେଡା । ବୋଇତ ନିର୍ମାଣରେ କାଠପଟାକୁ ଯୋଖିବା କାର୍ଯ୍ୟରେ ଲୁହାକଣ୍ଟାର ବ୍ୟବହାରକୁ ସମ୍ପୂର୍ଣ୍ଣ ମନା କରାଯାଇଛି । କାରଣ ସମୁଦ୍ରରେ ବୁଡି ରହିଥିବା ପାହାଡ ପଥରରେ ଯଦି ଚୁମ୍ବକୀୟ ଶକ୍ତି ଥିବ ତା'ହେଲେ ନୌକାର ଗମନାଗମନରେ ତାହା ବାଧକ ହୋଇ ବିପଦ ସୃଷ୍ଟି କରିବ ବୋଲି ଉକ୍ତ ଗ୍ରନ୍ଥରେ ସ୍ପଷ୍ଟ ରୂପେ ଦର୍ଶାଯାଇଛି ।

ପ୍ରାଚୀନ ଓ ମଧ୍ୟଯୁଗରେ କଳିଙ୍ଗରେ ବ୍ୟବହୃତ ପୋତଗୁଡିକର ଆକାର ଆଜିକାର ବୈଷୟିକ କୌଶଳରେ ନିର୍ମିତ ବୃହଦାକାୟ ଜାହାଜଠାରୁ କୌଣସି ଗୁଣରେ କମ୍ ନଥିଲା ବୋଲି ଐତିହାସିକ ଓ ନୌବିଶେଷଜ୍ଞମାନେ ମତ ଦିଅନ୍ତି । ଯେଉଁ କେତେଖଣ୍ଡ ନୌଶାସ୍ତ୍ର ପ୍ରାଚୀନ ଓଡିଶାର ନୌକା ନିର୍ମାଣ କଳା ଉପରେ ବିସ୍ତୃତ ଆଲୋଚନା କରିଛନ୍ତି, ସେମାନଙ୍କ ମଧ୍ୟରୁ ଅର୍ଣ୍ଣବ ବିହାର ଏବଂ ରତ୍ନାକର ବିହାର ଅଗ୍ରଗଣ୍ୟ ଅଟନ୍ତି । ଏତଦ୍‌ବ୍ୟତୀତ ଭୁବନେଶ୍ୱରରୁ ପ୍ରାପ୍ତ ବ୍ରହ୍ମାଣ୍ଡ ପୁରାଣ ନାମକ ତାଳପତ୍ର ପୋଥିରେ ପ୍ରାଚୀନ ଉତ୍କଳରେ ନିର୍ମିତ ଜଳଯାତ୍ରା ଓ ନୌପରିବହନ ପାଇଁ ବ୍ୟବହୃତ ପୋତଗୁଡିକର ମନୋଜ୍ଞ ବର୍ଣ୍ଣନା ରହିଛି ।

ଏଥିରେ ନୌକାର ପ୍ରକାରଭେଦ, ଗତିଶୀଳତା, ଗଠନକଳା ଦେଶାନ୍ତର ଗମନ ପାଇଁ ଏହାର ସାମର୍ଥ୍ୟ ସମ୍ବନ୍ଧରେ ଉଲ୍ଲେଖ ଅଛି । ଏତଦ୍‌ବ୍ୟତୀତ ଖୋର୍ଦ୍ଧାରାଜା ନରସିଂହଦେବଙ୍କ ରାଜକବି କହ୍ନାଇ ଚମ୍ପତିରାୟ ଚୁଡାମଣିଙ୍କ ପାଇକଖେଦା ଓଡିଶାର ନୌବାଣିଜ୍ୟ ଚିତ୍ର ସମ୍ପର୍କରେ ସ୍ୱତଃ ଧ୍ୟାନ ଆକର୍ଷଣ କରେ । ଏହି ପୋଥି ପଦ୍ୟରେ ରଚିତ ଓ ସ୍ୱର୍ଗତଃ ପଣ୍ଡିତ ସଦାଶିବ ରଥଶର୍ମାଙ୍କ ସମ୍ପାଦନାରେ ଜଗନ୍ନାଥ ଗବେଷଣା ସମିତି ଦ୍ୱାରା ପ୍ରକାଶିତ । ଏହି ପୋଥିରେ କବି ପ୍ରାଚୀନ ଓଡିଶାର ବିଭିନ୍ନ ପୋତମାନଙ୍କର ବର୍ଣ୍ଣନା ଦେଇଛନ୍ତି ।

ବହିତର, ପାଣ୍ଡିଆ, ଚୋଟମୁଖୀ
ବଣିଜରେ ଏହା ସାର ପରଖି
ସମରେ ନହୋଇ
ସମରେ ଅଟେ ସୁର ଚାତୁରୀ ।
ପୁଣ କୁଶ ରାଜପୁର, ଲାଞ୍ଜୁଆ
ଖାରଜଙ୍ଗା, ଗଙ୍ଗା ପ୍ରସାଦ ଠିଆ ।
ନଦିଆ ଖୁଡୁପ ଗୁରୁ ଏ ମାନ
ଶୁଣ କହିବା ଗୁଣ ସାବଧାନ ।
ଲାଞ୍ଜୁଆ ଯେ ଚାରୁ
ଦୂରୁ ଦିଶଇ ଯେହ୍ନେ ମହାମେରୁ ।

ସେ ଉତ୍କଳୀୟ ପୋତକୁ ବିଭାଗୀକରଣ କରି ସମସ୍ତ ପୋତକୁ ଯୁଦ୍ଧ ନିମିତ୍ତ ଓ ବାଣିଜ୍ୟ ନିମିତ୍ତ ଦୁଇ ପ୍ରମୁଖ ଭାଗରେ ବିଭକ୍ତ କରିଛନ୍ତି । ଯୁଦ୍ଧ ଜାହାଜ ମଧ୍ୟରେ (୧) ରାଜାସୁର, (୨) ଲାଞ୍ଜୁଆ, (୩) ଖାଇଜଗା, (୪) ଗଙ୍ଗାପ୍ରସାଦ, (୫) ନନ୍ଦିଆ, (୬) ଖଡୁପ, (୭) ଚାତୁରୀ ଆଦି ପ୍ରମୁଖ ଅଟନ୍ତି । ସେହିପରି ବାଣିଜ୍ୟତରୀ ମଧ୍ୟରେ (୧) ବହିତର (ବୋଇତ), (୨) ଗାଣ୍ଡିଆ, (୩) ଚୋଟମୁଖୀ ଆଦି ପ୍ରମୁଖ ଅଟନ୍ତି । ଏହାଛଡା ଉତ୍କଳୀୟ ପୋତର ବିଭିନ୍ନ ଅବୟବ ଯଥା– ମାସ୍ତୁଲ, ମଙ୍ଗଳ ପତାକା ସ୍ତମ୍ଭ ସମ୍ବନ୍ଧରେ ବିଶେଷ ଆଲୋଚନା କରାଯାଇଛି ।

କବି ଦୀନକୃଷ୍ଣ ଦାସଙ୍କ 'ପ୍ରସ୍ତାବସିନ୍ଧୁ', କବି ବଂଶୀଦାସଙ୍କ 'ମନସା ମଙ୍ଗଳ', ବଳରାମ ଦାସଙ୍କ 'ଜଗମୋହନ ରାମାୟଣ'ରେ ନୌକାର ବିଭିନ୍ନ ନାମ, ଯୁଦ୍ଧ ନୌକାର ବର୍ଣ୍ଣନା ଏବଂ ତତ୍କାଳୀନ ଉତ୍କଳର ବୋଇତ ନିର୍ମାଣ ଶୈଳୀ ସମ୍ପର୍କରେ ବିସ୍ତୃତ ବିବରଣୀ ମିଳେ । ଏହାଛଡା 'ସମରତରଙ୍ଗ' ଷୋଡଶ ଶତାବ୍ଦୀର ପ୍ରତାପରୁଦ୍ର ଦେବଙ୍କ ରାଜସଭା ପଣ୍ଡିତଙ୍କ 'ହରିହର ଚତୁରଙ୍ଗ' ମଧ୍ୟଯୁଗୀୟ ଓଡିଶାର ନୌକା ନିର୍ମାଣ କଳା ସମ୍ପର୍କରେ ବର୍ଣ୍ଣାଢ୍ୟ ବର୍ଣ୍ଣନା ମିଳେ ।

ଓଡିଶାର ସୂର୍ଯ୍ୟବଂଶର ଗଜପତିମାନଙ୍କ ଶାସନ ପରେ ରାଜନୈତିକ ସ୍ଥିତାବସ୍ଥା ସୁଦୃଢ ନଥିଲା । ଏହାର

ସୁଯୋଗ ନେଇ ଓଡିଶାକୁ ତୁର୍କ, ଆଫଗାନ ଏବଂ ମୋଗଲମାନଙ୍କର ଘନ ଘନ ଆକ୍ରମଣ ଯୋଗୁଁ ଓଡିଶାର ନୌବାଣିଜ୍ୟ ପତ୍ତନାଭିମୁଖୀ ହେବାର ପ୍ରମୁଖ କାରଣ ପାଲଟି ଥିଲା । ଏହାଛଡା ସମୁଦ୍ର ମୁହାଣ ପୋତି ହୋଇ ଅଗଭୀର ହେବାରୁ ନଦୀ ତା'ର ଜଳପଥ ପରିବର୍ତ୍ତନ କଲା ଏବଂ ଏହାଫଳରେ ବଡ ବଡ ବୋଇତଗୁଡିକ ଚଳାଚଳ ପାଇଁ ଅନୁପଯୋଗୀ ହେଲା । ସମୁଦ୍ର ବକ୍ଷରେ ଜଳଦସ୍ୟୁମାନଙ୍କ ଲୁଣ୍ଠନ ଆଉ ରାଜଶକ୍ତିମାନଙ୍କର ପ୍ରୋତ୍ସାହନ ନ ପାଇ ଏବଂ ଶେଷରେ ମରାଠା, ମୋଗଲ, ଇଂରେଜମାନଙ୍କ ମଧ୍ୟରେ ସଙ୍ଘର୍ଷ ଏବଂ ଓଡିଆମାନଙ୍କ ପ୍ରତି ଅତ୍ୟାଚାର ଅହେତୁକ ଟିକସ ବୃଦ୍ଧି ଯୋଗୁଁ ଓଡିଶାର ଗୌରବପୂର୍ଣ୍ଣ ନୈବାଣିଜ୍ୟ ସଲିଳ ସମାଧି ଲାଭ କଲା ।

ଆଜି ମଧ୍ୟ ଜୟଗାନ କରି ନୌବାଣିଜ୍ୟର ସ୍ମୃତି ସ୍ୱରୂପ ଓଡିଶାର ନଦୀ ଓ ସମୁଦ୍ରରେ ପଟେଇ, କୋଶଲୀ, ପଢଭ, ଜାଲିଆ ଆଦି ଡଙ୍ଗାଗୁଡିକ ଦେଖିବାକୁ ମିଳେ ଏବଂ ଓଡିଶାର ଉପକୂଳ ଅଞ୍ଚଳରେ ସାହୁ, ମଙ୍ଗରାଜ, ବୋଇତାଳ, ମହାନାୟକ, ମଲ, ପଟ୍ଟନାୟକ ଆଦି ସଂଜ୍ଞାଧାରୀ ଲୋକମାନେ ବସବାସ କରନ୍ତି । ଏହାଛଡା ସମୁଦ୍ର ଉପକୂଳସ୍ଥ ସ୍ଥାନଗୁଡିକରେ ବିଶେଷକରି ପ୍ରାଚୀ ଉପତ୍ୟକାରେ ବୋଇତକୁଦ, ବୋଇତଡିଅ, ବୋଇତଭଙ୍ଗା ତୁଠ, ବୋଇତ ଖଟି ଇତ୍ୟାଦି ନାମିତ ହୋଇଥିବାର ଦେଖାଯାଏ ।

ଅତୀତର ସେଇ ଗୌରବମୟ ପରମ୍ପରା ବିଲୁପ୍ତ ସତ କିନ୍ତୁ ଆଜି ବି ଓଡିଆଣୀ ସାଧବପୁଅର ମଙ୍ଗଳମନାସୀ କାର୍ତ୍ତିକ ପୂର୍ଣ୍ଣମୀର ପ୍ରାତଃକାଳରେ କଦଳୀ ବାସୁଙ୍ଗା ତିଆରି ଡଙ୍ଗାରେ ଦ୍ୱୀପଟିଏ ଥୋଇ ମଥାରେ ଓଢଣା ତୁଣ୍ଡରେ ଆ-କା-ମା-ବୈ ଉଚ୍ଚାରଣ ପୂର୍ବକ ହୁଳହୁଳି ଦେଇ ଅତୀତର ନୌବାଣିଜ୍ୟର ସ୍ମୃତିକୁ ମନେ ପକାଏ ।

କବିଙ୍କ ଭାଷାରେ –

''ସ୍ମୃତିକୁ ସୁମରି ଓଡିଆଣୀ ଏବେ
ବୋଇତ ବନ୍ଦାଇଥାଏ
ଅତୀତର ଉତ୍କଳ ଗଉରବ ଗାଥା
ଇତିହାସ ସିନା ଗାଏ ।''

**ସହାୟକ ଗ୍ରନ୍ଥସୂଚୀ**


୧. ଓଡିଆ ଜାତିର ଇତିହାସ : ନବୀନ କୁମାର ସାହୁ ।

୨. ପ୍ରାଚୀନ ଉତ୍କଳ : ଜଗବନ୍ଧୁ ସିଂ, ୧୯୬୪ ।

୩. Orissa Past and Present, Commemoriation Volume on the occasion of the First Vishwa Oriya Sammilani, 1992 .

୪. କଳିଙ୍ଗ ପୋତ ପୋତାଶ୍ରୟ ଓ ପୋତନିର୍ମାଣ କଳା : ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ (ଉତ୍କଳ ପ୍ରସଙ୍ଗ ୧୧/୨୦୦୫) ।

୫. ପାଇକଖେଦା : କହ୍ନାଇ ଚମ୍ପତିରାୟ : ଜଗନ୍ନାଥ ଗବେଷଣା ସମିତି, ଏମାର ମଠ, ପୁରୀ ।

୬. ଓଡିଆ ଜାତିର ଜୀବନଗାଥା : ହେମନ୍ତ କୁମାର ମହାପାତ୍ର, ଫେଣ୍ଡ୍ସ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ, ୨୦୧୫ ।

୭. ଓଡିଆ ଜାତିର ଇତିହାସ ଓ ସଂସ୍କୃତି : ପ୍ରବୋଧ କୁମାର ମିଶ୍ର, ବିଦ୍ୟାପୁରୀ, କଟକ ।

୮. ଉତ୍କଳର ନୌ-ବାଣିଜ୍ୟ : ବିରୁପାକ୍ଷ କର, କଟକ ମାଧ୍ୟମିକ ଶିକ୍ଷାବୋର୍ଡ ।

୯. ଭାରତୀୟ ଧର୍ମ ଓ ସଂସ୍କୃତି : ଅନ୍ତର୍ଯ୍ୟାମୀ ମିଶ୍ର ।

୧୦. ଓଡିଶାର ଗୌରବୋଜ୍ଜ୍ୱଳ ନୌବାଣିଜ୍ୟ : ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର (ଉତ୍କଳ ପ୍ରସଙ୍ଗ ୧୧/୨୦୧୩) ।

୧୧. କାର୍ତ୍ତିକ ପୂର୍ଣ୍ଣିମା ଓ ଉତ୍କଳୀୟ ନୌ-ବାଣିଜ୍ୟ : ରବୀନ୍ଦ୍ର କୁମାର ବେହୁରିଆ (ଉତ୍କଳ ପ୍ରସଙ୍ଗ ୧୧/୨୦୧୨) ।

୧୨. ଓଡିଶାର ଗୌରବୋଜ୍ଜ୍ୱଳ ନୌବାଣିଜ୍ୟ : ଅଜିତ କୁମାର ଦାସ (ଉତ୍କଳ ପ୍ରସଙ୍ଗ ୧୧/୨୦୧୨)।



ସହକାରୀ ସଂଗ୍ରାହକ
ଓଡ଼ିଶା ରାଜ୍ୟ ନୌବାଣିଜ୍ୟ ସଂଗ୍ରହାଳୟ
ଯୋବ୍ରା, କଟକ-୭୫୩୦୦୩